**ବିଦେଶିନୀ**
**ସୁସ୍ମିତା ବାଗ୍‌ଚୀ**

ପ୍ରକାଶକ: ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, ମନ୍ଦିରଲେନ୍

ମୁଦ୍ରଣ : ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍
'ଶ୍ରୀନିବାସ', ସୂତାହାଟ, କଟକ-୭୫୩ ୦୦୧

ପ୍ରଚ୍ଛଦ:
ବିନୟ ଦୀକ୍ଷିତ

ପ୍ରଥମ ପ୍ରକାଶନ: ୨୦୧୫
(୭୦୦)

ମୂଲ୍ୟ : ଟ. ୧୬୦/-

**Bideshini**
**Susmita Bagchi**
Published by:
Manoj Kumar Mohapatra
**Grantha Mandir,**
Binodbehari, Mandirlane
Printed at :
**Optima Offset Print,** Sutahat,
Ctc-1
Coverdesign by :
Vinay Dixit
Fist Edition: 2015
Price : 160/-
*(Rupees one hundred sixty only)*

# ବିଷୟସୂଚୀ



—

# ବିଦେଶିନୀ

ଚମକି ବିଛଣାରେ ଉଠିବସିଲା ଶବ୍‌ନମ୍ । ଏବେ ବି ଛାତି ଧଡ୍ ଧଡ୍ ହେଉଛି । ଜୋର୍‌ରେ ନିଶ୍ୱାସ ଚାଲିଛି ।

' ଏ କି ଅଜବ ସ୍ୱପ୍ନ !

ସ୍ୱପ୍ନରେ ତରବର ହୋଇ ସେ ବସ୍‌ରେ ଉଠୁଛି ଅଫିସ୍ ଯିବ ବୋଲି । ପର୍ସ୍‌ରୁ ପଚାଶ ଟଙ୍କା କାଢି ଟିକେଟ୍ ପାଇଁ ବଢେଇ ଦେଲା କଣ୍ଡକ୍ଟର୍ ହାତକୁ । କଣ୍ଡକ୍ଟର୍ ଟଙ୍କା ନେଇ ତା' ବ୍ୟାଗ୍‌ରେ ରଖିଲା, କିନ୍ତୁ ଟିକେଟ୍ ନ ଦେଇ ଅନ୍ୟ କାହା ସାଙ୍ଗରେ ଗପ ଜମାଇଲା ।

'କ'ଣ ହେଲା, ଟିକେଟ୍ କାହିଁ ?' -- ଶବ୍‌ନମ୍ ପଚାରିଲା ।

'ଟଙ୍କା ଦିଅନ୍ତୁ ।'

'ଆରେ'-- ଆଶ୍ଚର୍ଯ୍ୟରେ ଶବ୍‌ନମ୍ କହିଲା, 'ଏବେ ପରା ଦେଲି ପଚାଶଟଙ୍କା । ପୁଣି କ'ଣ ?'

କଣ୍ଡକ୍ଟର୍ ଅଦ୍ଭୁତ ଭାବରେ ହସୁଛି । 'ଆପଣଙ୍କ ପାଇଁ ଅଲଗା ନିୟମ, ଦିଦି । ଆପଣଙ୍କୁ ଆଉ ଥରେ ଟଙ୍କା ଦେବାକୁ ହେବ ।'

କ'ଣ କଲା ଶବ୍‌ନମ୍ ? ଆଉ ଥରେ ଟଙ୍କା ଦେଲା କି ? ମନେପଡୁନି ତା'ର । ନିଶ୍ଚୟ ଦେଇଥିବ । ନହେଲେ କ'ଣ ବସ୍‌ରେ ବସିବାକୁ ଦେଇଥାଆନ୍ତା ତାକୁ କଣ୍ଡକ୍ଟର୍ ? କିନ୍ତୁ କେମିତି କେଜାଣି ସ୍ୱପ୍ନରେ ସେ ଅଫିସ୍‌ରୁ ଫେରିଆସୁଛି ଶୀଘ୍ର । ମନ ଯେମିତି ଭଲ ନାହିଁ । ଘରେ ପହଞ୍ଚି ତାଲା ଖୋଲିବାକୁ ଯାଇ ସେ ଦେଖିଲା ଯେ ତାଲା ନାହିଁ, କବାଟ ଭିତରୁ ବନ୍ଦ । ପ୍ରତାପ ବି କ'ଣ ଆଜି ଶୀଘ୍ର ଅଫିସ୍‌ରୁ ଫେରିଆସିଛି କି ? କଲିଙ୍ଗ୍ ବେଲ୍‌ରେ ହାତ ଦେଉ ଦେଉ କବାଟ ଖୋଲିଗଲା । ପ୍ରତାପ କାହିଁ ? ଏ ତ ଘର ମାଲିକ ରାଜା ଚକ୍ରବର୍ତ୍ତୀ ।

'ଆପଣ ଏଠି ?'

'ଘର ଛାଡିବାକୁ ହେବ । ଆପଣଙ୍କ ଭଳି ଫରେନର୍‌କୁ ମୁଁ ଘର ଭଡା ଦେଇପାରିବିନି ।'

ଫରେନର୍ ! ବିଦେଶିନୀ ? ସେ ପୁଣି କି ବିଦେଶିନୀ ? ଯଦି ସରକାରୀ କାଗଜପତ୍ର ତାକୁ ବିଦେଶିନୀ ବୋଲି ପ୍ରମାଣ କରିଦିଏ, ତା'ହେଲେ ବା କ'ଣ ? ଏ ଭଡାଘର ତ ପ୍ରତାପ ନାଁ ରେ ! ପ୍ରତାପର କମ୍ପାନୀ ଲିଜ୍‌ରେ । ଶବ୍‌ନମ୍ ଦାନ୍ତଚିପି ଯୁକ୍ତି କରିବାକୁ ଆରମ୍ଭ କରୁକରୁ ତା' ମୁହଁ ଉପରେ କବାଟଟା ଧଡ୍ କରି ବନ୍ଦ ହେଇଗଲା ।

ଆଉ ପରମୁହୂର୍ତ୍ତରେ ହିଁ ଚମକି ବିଛଣାରେ ଉଠିବସିଲା ସେ ।

'ଏତେ ଶୀଘ୍ର ଉଠିଗଲ ? କେତେଟା ବାଜିଛି କି ?' ନିଦୁଆ ସ୍ୱରରେ ପ୍ରତାପ ପଚାରିଲା ।

'ଜାଣିନି ।'

ଶବ୍‌ନମ୍‌ର 'ଜାଣିନି' ଶବ୍ଦରେ କ'ଣ ଥିଲା କେଜାଣି, ଆଖି ଖୋଲି ଉଠି ବସିଲା ପ୍ରତାପ । ଦୁଇହାତରେ ସ୍ତ୍ରୀକୁ ଜାବୁଡିଧରି ନରମସ୍ୱରରେ ପଚାରିଲା, 'କ'ଣ ହେଲା ଶବ୍‌ନମ୍ ? ଆଜେବାଜେ ସ୍ୱପ୍ନ ଦେଖିଲ ?'

ଏପର୍ଯ୍ୟନ୍ତ ଫର୍ଚ୍ଚା ହେଇନି । କିନ୍ତୁ ରାସ୍ତା ଆଲୁଅ ଝର୍କା ଦେଇ ଶୋଇବା ଘର ଭିତରକୁ ପଶିଆସିଛି । ସେଇ ଆଲୁଅରେ ଶବ୍‌ନମ୍‌ର ଲୁହବୋଳା ମୁହଁ ଦେଖିବାରେ ପ୍ରତାପର ଆଦୌ ଅସୁବିଧା ହେଲାନି ।

'କ'ଣ ହେଲା ?' ସେ ଆଉ ଥରେ ପଚାରିଲା ।

ତଥାପି କିଛି କହିଲା ନାହିଁ ଶବ୍‌ନମ୍ । ପ୍ରତାପ ଛାତିରେ ମୁହଁ ମାଡିଦେଲା କେବଳ । ଆଉ ଅଧିକ କିଛି କହିବାର ଆବଶ୍ୟକତା ନାହିଁ । ସବୁ ବୁଝିଗଲା ପ୍ରତାପ । କୁନି ଝିଅଟିଏକୁ ବୁଝେଇବା ଭଳି ଧୀରେ ଧୀରେ ଆଉଁଶି ଦେଲା ତା' ସ୍ତ୍ରୀକୁ । 'ଶୋଇ ପଡ, ଜାନ୍ । ଦେଖିବ, ଶୀଘ୍ର ସବୁ ଠିକ୍ ହୋଇଯିବ ।'

ଶବ୍‌ନମ୍ ସତକୁ ସତ ଶୋଇପଡିଲା । କିନ୍ତୁ ତଥାପି ରହି ରହି ଅଜଣା ଭୟରେ ଦେହ ଥରିଉଠୁଥିଲା ତା'ର । ନିଦରେ କୋହ ଉଠୁଥିଲା ମଝିରେ ମଝିରେ ।

ପ୍ରତାପର ମନ ଖରାପ ହୋଇଗଲା । ଅଣତିରିଶ ବର୍ଷର ସ୍ୱପ୍ନ ବିଳାସୀ ଶବ୍‌ନମ୍, ସ୍ୱପ୍ନର ଦୁନିଆରେ ବିରାଜୁ ଥିଲା । ଆଉ ତା'ର ସବୁ ସ୍ୱପ୍ନକୁ ସୁନ୍ଦର ଭାବରେ ସଜେଇ ଦେବାର ପ୍ରତିଶ୍ରୁତି ଦେଇଥିଲା ପ୍ରତାପ । କେମିତି ତା' ସ୍ୱପ୍ନର ପୃଥିବୀ ବଦଳିଗଲା ! ଆଜିକାଲି ଆଖି ବୁଜିଲେ ଦୁଃସ୍ୱପ୍ନର ଅତ୍ୟାଚାରରେ ତାକୁ ମ୍ରିୟମାଣ ହୋଇଯିବାକୁ ହେଉଛି ।

ଏଇମିତି କିଛି ହେଉ ବୋଲି ପ୍ରତାପ କ'ଣ କେବେହେଲେ ଚାହିଁଥିଲା !

ନା, ବହୁତ ବଡ ଭୁଲ୍ ହୋଇଗଲା । ଏଇମିତି କିଛି ହେବ ବୋଲି ଯଦି ସେ ଜାଣିଥାଆନ୍ତା, ତେବେ ଶବ୍‌ନମ୍‌ର ସ୍ୱପ୍ନ ଦୁନିଆରୁ ସେ ଦୂରେଇ ଯାଇଥାଆନ୍ତା । ତାକୁ ବାହା ହେବାର ନିଷ୍ପତ୍ତି ପ୍ରଥମରୁ ଆଡେଇ ଦେଇଥାଆନ୍ତା ସେ ।

କିନ୍ତୁ. . . କିନ୍ତୁ କେମିତି ସେ ଶବ୍‌ନମ୍‌କୁ ଛାଡି ଦେଇଥାଆନ୍ତା !

ଏଗାରବର୍ଷ ତଳେ ଆଇ.ଆଇ.ଟି. ଖଡଗ୍‌ପୁରର ସମ୍ପୂର୍ଣ୍ଣ ନୂତନ, ଅପରିଚିତ ବାତାବରଣରେ ପ୍ରତାପ ଯେତେବେଳେ ପାଦ ରଖିଲା, ସେତେବେଳେ ପ୍ରଥମଦିନର ପ୍ରଥମ କ୍ଲାସ୍‌ରେ ତା'ର ଶବ୍‌ନମ୍ ସାଙ୍ଗରେ ପରିଚୟ ହେଇଥିଲା । ସେଇ ପ୍ରଥମ ପରିଚୟରେ ଦୁଇଜଣଙ୍କ ଭିତରେ କିଭଳି ଏକ ସୂକ୍ଷ୍ମ ଯୋଗାଯୋଗ ହୋଇଯାଇଥିଲା । ପତଳା, ପାଞ୍ଚ ଫୁଟ୍ ଏକ ଇଞ୍ଚ୍ ଉଚ୍ଚତାର ଶ୍ୟାମଳୀ ଝିଅଟି ଭିତରେ କ'ଣ ଥିଲା କେଜାଣି ପ୍ରତାପ ଟାଣିହୋଇଯାଇଥିଲା ତା' ଆଡକୁ । କିଛି ଦିନର ବନ୍ଧୁତ୍ୱ ଭିତରେ ସେ ଜାଣିଯାଇଥିଲା ଯେ ଶବ୍‌ନମ୍ କେବଳ ବୁଦ୍ଧିମତୀ ନୁହଁ, ଭଲ ଗୀତ ଗାଇପାରେ, ଭଲ ଆଙ୍କିପାରେ । ପ୍ରତାପ ସେତେବେଳେ ନୂଆ ନୂଆ କବିତା ଲେଖା ଆରମ୍ଭ କରିଛି । କଳା, ସାହିତ୍ୟ ନେଇ ତା'ର କେତେ ଯେ ଆଲୋଚନା ହୁଏ ଶବ୍‌ନମ୍ ସାଙ୍ଗରେ ! କେତେ ପୁଣି ଯୁକ୍ତିତର୍କ !

ହଠାତ୍ ସେ ଆବିଷ୍କାର କଲା ଯେ ପ୍ରଥମଦିନର ଭଲ ଲାଗିବା ଗଭୀର ଭଲ ପାଇବାରେ ପରିଣତ ହୋଇସାରିଛି ମାତ୍ର କେତୋଟି ସପ୍ତାହରେ । ପ୍ରତାପ ଦିନେ ନିଜ ମନ ଖୋଲି ଦେଲା ଶବ୍‌ନମ୍ ସାମ୍ନାରେ ।

ଶବ୍‌ନମ୍ ମୁହଁରେ ପ୍ରତାପ ହୃଦୟର ପ୍ରତିବିମ୍ବ । କିନ୍ତୁ ଭାସିଗଲା ନାହିଁ ସେ । ଧୀର ସ୍ୱରରେ କହିଥିଲା, 'ଭାବି ଦେଖ, ପ୍ରତାପ । ଏ ସମ୍ପର୍କର କୌଣସି ଭବିଷ୍ୟତ ନାହିଁ । ଆଉ କେବଳ ବର୍ତ୍ତମାନକୁ ନେଇ ମୁଁ ରହିପାରିବିନି ।'

'କିଏ କହିଲା ସମ୍ପର୍କର ଭବିଷ୍ୟତ ନାହିଁ ?' ପ୍ରତାପ ଯୁକ୍ତି କରିଥିଲା, 'ଆମେ ଚାହିଁଲେ ସବୁ ହେବ । ...ପରିବାର, ବାପା ମା'ଙ୍କ କଥା ଭାବୁଛ ?'

ପରିବାର କଥା ଯେ ଶବ୍‌ନମ୍ ମନକୁ ଆସିନଥିଲା ତା' ନୁହଁ । ସେ ଜାଣିଥିଲା ଦୁଇଜଣଙ୍କର ସମ୍ପର୍କ କଥା ଜଣାଜଣି ହୋଇଗଲେ ଉଭୟପକ୍ଷର ରକ୍ଷଣଶୀଳ ବିପରୀତ ଧର୍ମାବଲମ୍ବୀ ପରିବାର ଅସନ୍ତୋଷର ନିଆଁ ଜଳେଇ ଦେବେ । କିନ୍ତୁ ସେ ନିଆଁ ଭିତର ଦେଇ ଚାଲିଯିବାର ସାହସ ପ୍ରତାପ ଭଳି ତା'ର ଥିଲା । ହେଲେ ବାଧା ତ କେବଳ ସେତିକିରେ ସୀମିତ ନୁହଁ । ଆଉ ଗୋଟିଏ ବିରାଟ ପାଚିରି ଯେ ଠିଆ-ହୋଇଥିଲା ସେମାନଙ୍କ ସାମ୍ନାରେ । ସେ ପାଚିରି କ'ଣ ସତରେ ସେମାନେ ଅତିକ୍ରମ କରିପାରିବେ ?

ପ୍ରତାପକୁ ବୁଝେଇବା ସ୍ୱରରେ ସେ କହିଥିଲା, 'ତୁମେ ତ ଜାଣ ପ୍ରତାପ, ମୁଁ ଭାରତୀୟ ନୁହଁ ।'

ଜାଣେ । ସେ ପରିଚୟର କେଇଟିଦିନ ଭିତରେ ସେ ଜାଣିଯାଇଥିଲା ଯେ ତା' ସାଙ୍ଗରେ ପାଠ ପଢୁଥିବା ଶବ୍‌ନମ୍ ଆଲମ୍ କେବଳ ମୁସଲ୍‌ମାନ ନୁହଁ, ବାଙ୍ଗଲାଦେଶ୍‌ର ଝିଅ । ଉଚ୍ଚ ଶିକ୍ଷା ପାଇଁ ଭାରତ ଆସିଛି ।

'କ'ଣ ହେଇଗଲା ସେଇଠୁ, ଶବ୍‌ନମ୍ ?' ସ୍ୱରରେ ଜୋର୍ ଆଣି ସେ କହିଥିଲା । 'ଏକବିଂଶ ଶତାବ୍ଦୀ ଏଇ ହେଲା ଜାଣ । ଦୁଇ ଭିନ୍ନଭିନ୍ନ ଦେଶର ପୁରୁଷ ନାରୀଙ୍କ ମଧ୍ୟରେ କ'ଣ ବାହାଘର ଦୃଷ୍ଟାନ୍ତ ବିରଳ ? ତା'ଛଡା ବାଙ୍ଗଲାଦେଶ ସାଙ୍ଗରେ ଭାରତର ସମ୍ପର୍କ ଖରାପ ନୁହଁ । ଧର୍ମକୁ ବାଦ୍‌ଦେଲେ ମଣିଷମାନଙ୍କର ଚେହେରା, ଚଳଣି, ସଂସ୍କୃତି ଭିତରେ ତଫାତ୍ ବି ବିଶେଷ ନାହିଁ । ସମସ୍ୟା କାହିଁକି ହେବ ?'

ଶବ୍‌ନମ୍ ଭାବିହେଇଥିଲା । ତା' ନିଜ ଚାଚାଙ୍କ ଝିଅ ଆମେରିକାନ୍ ପୁଅଟିଏ ବାହା ହେଇଛି । ପୁଣି ସେମାନଙ୍କ ପଡିଶା ଘରେ ରହୁଥିବା ୟାସ୍‌ମିନ୍ ଦିଦିଙ୍କ ଭାଇ ସାଉଥ୍ ଆଫ୍ରିକାର ଝିଅଟିଏକୁ ବାହାହେଇ ସେଇ ଡାକାରେ ହିଁ ଅଛନ୍ତି । ହୁଏତ ବାହାଘର ନେଇ ଆଇନତଃ ସମସ୍ୟା ହେବ ନାହିଁ ।

ହେଲା ନାହିଁ ବି ।

ଦୁଇଜଣଙ୍କର ପାଠ ଶେଷ ହୋଇଗଲା । ଇଞ୍ଜିନିଅରିଂର ଶେଷବର୍ଷରେ ହିଁ କ୍ୟାମ୍ପସ୍ ରିକ୍ରୁଟ୍‌ମେଣ୍ଟ୍‌ରେ ଦୁଇଜଣଙ୍କୁ କଲିକତାର ଦୁଇ ଭିନ୍ନଭିନ୍ନ କମ୍ପାନୀରେ ଚାକିରି ମିଳିଗଲା । ଏହାପରେ ଆଉ ଅପେକ୍ଷା କରିବାର କୌଣସି ମାନେ ହୁଏନାହିଁ । ଦୁଇଜଣ ସ୍ଥିରକଲେ, ପରୀକ୍ଷା ଶେଷ ହେବା ପରେ ପରେ ହିଁ ବାହା ହୋଇଯିବେ । ତା'ପରେ ଦୁଇଜଣ କଲିକତା ଯାଇ ଏକାଠି ଜୀବନ ଆରମ୍ଭ କରିପାରିବେ ।

ଏ ନିଷ୍ପତ୍ତିରେ ପ୍ରତାପର ଓଡିଆ ଶାସନୀ ବ୍ରାହ୍ମଣ ପରିବାରରୁ ଯେତିକି ଆପତ୍ତି ଉଠିଥିଲା, ଶବ୍‌ନମ୍‌ର ନୈଷ୍ଠିକ ମୁସଲ୍‌ମାନ୍ ପରିବାରରୁ ବି ପ୍ରାୟ ସେତିକି ଆପତ୍ତି । କିନ୍ତୁ ଦୁଇଜଣ ନିଜ ନିଜ ପରିବାରକୁ ଜଣେଇଦେଲେ – ବାହା ସେମାନେ ହେବେ ନିଶ୍ଚିତ ଭାବରେ । ଦୁଇ ଭିନ୍ନଦେଶର ନାଗରିକଙ୍କ ମଧ୍ୟରେ ରେଜେଷ୍ଟ୍ରି ବିବାହରେ କୌଣସି ଆଇନଗତଃ ସମସ୍ୟା ନାହିଁ । ସେମାନେ ବୁଝାବୁଝି କରି ନେଇଛନ୍ତି । ପ୍ରତାପ ଇସ୍‌ଲାମ୍ ଧର୍ମ ଗ୍ରହଣ କରିବନି କି ଶବ୍‌ନମ୍ ଆର୍ଯ୍ୟ ସମାଜକୁ ଯାଇ ହିନ୍ଦୁ ଧର୍ମରେ ଦୀକ୍ଷିତ ହେବନାହିଁ । ଏ ବିବାହରେ ଦୁଇଜଣଙ୍କ ପରିବାରର ସଦସ୍ୟମାନେ ଯୋଗଦେଲେ ସେମାନେ ଖୁସୀହେବେ । ନହେଲେ ବି ବାହାଘର ମେ ମାସରେ ହେବ ।

ଘୋର ଅନିଚ୍ଛା ସତ୍ତ୍ୱେ ଶବ୍‌ନମ୍‌ର ବାପା ସାନ ଝିଅକୁ ଧରି ଖଡଗ୍‌ପୁର

ଆସିଲେ । ଶବ୍‌ନମ୍ ମା'ଙ୍କର ଆଣ୍ଠୁ ସେତେବେଳେ ଏମିତି ଫୁଲିଥିଲା ଯେ ଚଲାବୁଲା କରିବା ଅସମ୍ଭବ । ତାଙ୍କ ପକ୍ଷରେ ଏତେ ବାଟ ଆସିବା ସମ୍ଭବ ହେଲା ନାହିଁ । ପ୍ରତାପ ଘରୁ ଆସିଲେ ତା' ବାପା ମା' । ମନ ଭିତରେ ଅଶାନ୍ତି ସତ୍ତ୍ୱେ ଏକ୍‌ମାତ୍ର ସନ୍ତାନର ବାହାଘରରେ ଯୋଗ ଦେବେ ନାହିଁ – ତା' କେମିତି ହେବ ? ଖଡଗ୍‌ପୁରରେ ସାଙ୍ଗ ସାଥୀଙ୍କ ଗହଣରେ ଆଗ ରେଜେଷ୍ଟ୍ରି ବିବାହ ହୋଇଗଲା । ତା'ପରେ ଛୋଟ ଚାହା ଭୋଜିଟିଏ ।

ବାହାଘରର କେଇଦିନ ପରେ କଲିକତା ଚାଲିଗଲେ ପ୍ରତାପ ଓ ଶବ୍‌ନମ୍ । ଆରମ୍ଭ କଲେ ବହୁ ପ୍ରତୀକ୍ଷିତ ନିଶ୍ଚିନ୍ତ ସୁଖୀ ସଂସାର ।

ବାହାଘରର କିଛିମାସ ପର କଥା । ସେଦିନ ପ୍ରତାପ, ଶବ୍‌ନମ୍‌ଙ୍କର ଆଇଆଇଟି କ୍ଲାସ୍‌ମେଟ୍ ଅରିନ୍ଦମ୍ ଘରେ ଫେଆର୍‌ୱେଲ୍ ଡିନାର୍ ଥାଏ । ବିଦେଶ ଯିବାପାଇଁ ଇଞ୍ଜିନିଅରିଂର ଶେଷବର୍ଷରୁ ଚେଷ୍ଟା ଚଳେଇ ଯାଉଥିଲା ଅରିନ୍ଦମ୍ । ଏତେ ଦିନକେ ସଫଳ ହୋଇଛି । ଖୁସିରେ ଝଲମଲ କରୁଥିଲା ତା' ମୁହଁ । ପାଟିରୁ ଅନବରତ କଥା ଆଉ ହସ ଝରୁଥିଲା ।

'ଥ୍ୟାଙ୍କ୍ ଗଡ୍, ହେଇଗଲା । ମୁଁ ତ ଆଶା ଛାଡ଼ି ଦେଇଥିଲି ।'

'ବିଦେଶ ଯିବା ପାଇଁ ଏତେ ଲାଳସା କାହିଁକି ? ଦେଶ କଣ ଖାଇ ଗୋଡାଉଛି ?' – ପଚାରିଥିଲା କିଏ ଜଣେ ।

'କ'ଣ ଯେ ତୁମେ କୁହ ! ଆମ ଦେଶ ସାଙ୍ଗରେ ପାଶ୍ଚାତ୍ୟ ଦେଶମାନଙ୍କର ତୁଳନା ହୁଏ ? ସେଠିକା ଲାଇଫ୍ ଅନ୍ୟରକମ, ଲାଇଫ୍ ଷ୍ଟାଇଲ୍ ଅନ୍ୟରକମ ।. . . ସମସ୍ତେ ତ ଆଉ ଆମ ପ୍ରତାପ, ଶବ୍‌ନମ୍ ଭଳି ନୁହନ୍ତି । ସାମ୍ନାରେ ରୁପା ଥାଳିଆରେ ସଜା ହୋଇ ରହିଥିବା ବିଦେଶୀ ଚାକିରିକୁ ପାଦରେ ଆଡେଇ ଦେବେ !'

ପ୍ରତାପ ନିଜ ଆଲୋଚନା ବନ୍ଦ କରି ଦେବାପାଇଁ ପଚାରିଥିଲା, 'କେବେ ଯାଉଛୁ ତୁ ଜର୍ମାନୀ ?'

'ସାତ ତାରିଖ । ଗତ ମାସ ଶେଷରେ ଯାଇ ପହିଲାରେ ଜଏନ୍ କରିବାର ଥିଲା । ହେଲେ ଭିସା ପାଇଁ ନାକେଦମ୍ କରି ଦେଲେ ଜର୍ମାନୀ ଏମ୍‌ବାସି । ଭାଗ୍ୟ ଭଲ ଶେଷମୁହୂର୍ତ୍ତରେ ଦେଇ ଦେଲେ, ନହେଲେ ଏତେ ବଡ ଚାନ୍‌ସ୍‌ଟିଏ ହାତରୁ ଖସି ଯାଇଥାଆନ୍ତା ।'

ଭିସା ! ହଠାତ୍ ଚମକି ଠିଆ ହେଲା ଶବ୍‌ନମ୍ । 'ମତେ ଘରକୁ ଯିବାକୁ ହେବ । – ଯିବା ପ୍ରତାପ ?'

ପ୍ରତାପର ଏତେ ଶୀଘ୍ର ଘରକୁ ଯିବାକୁ ଇଚ୍ଛା ନ ଥିଲା । କିନ୍ତୁ ଶବ୍‌ନମ୍ ମୁହଁ ଦେଖି ସେ ବୁଝିଗଲା ଯେ କିଛି ଗୋଟାଏ ହୋଇଛି । ଆବଶ୍ୟକୀୟ 'ଶୁଭରାତ୍ରି'ର ଆଦାନପ୍ରଦାନ ପରେ ପରେ ସେ ବି ସ୍ତ୍ରୀ ପଛେ ପଛେ ବାହାରି ଆସିଲା ।

ମଟର୍ ସାଇକେଲ୍ ଷ୍ଟାର୍ଟ କରୁ କରୁ ପଚାରିଲା, 'କ'ଣ ହେଇଛି, ଜାନ୍ ? ଦେହ ଭଲ ଲାଗୁନି ?'

'ଦେହ ଠିକ୍ ଅଛି । ହେଲେ ପ୍ରତାପ, ... ମୋ ଭିସା !'

ଭିସା !!

ସତରେ ତ ! ଏଇଭଳି ଗୋଟିଏ ଜରୁରୀ କଥା କେମିତି ଦୁଇଜଣଙ୍କର ମନରୁ ଖସିଯାଇଥିଲା । ଭାଗ୍ୟକୁ ସଂଧ୍ୟାରେ ଅରିନ୍ଦମ୍ ଭିସା କଥା ଉଠେଇଲା । ନହେଲେ...

ଘରେ ପାଦ ଦେଉ ଦେଉ ଶବ୍‌ନମ୍ ଧାଇଁ ଯାଇ ନିଜ ଆଲମାରି ଡ୍ରୟର୍ ଖୋଲି ପକେଇଲା । ଭିତରୁ ପାସ୍‌ପୋର୍ଟ କାଢି ତରବର ହୋଇ ଦେଖିନେଲା ସେ ।

ବଞ୍ଚିଗଲା ମଣିଷ ! ଭିସାର ସମୟ ପାର ହୋଇନି । ଅଛି ଆହୁରି ମାସେ ।

ଆଇଆଇଟିରେ ପଢିବା ବେଳେ ଷ୍ଟୁଡେଣ୍ଟ ଭିସା ନେବାକୁ ହେଉଥିଲା ତାକୁ । ପ୍ରତି ବର୍ଷକୁ ବର୍ଷ ଭିସା ଏକ୍ସ୍‌ଟେନ୍‌ସନ୍ ବି କରିବାକୁ ହେଉଥିଲା । ଭାଗ୍ୟକୁ ଗତଥର ବାରମାସ ବଦଳରେ ସତରମାସର ଭିସା ମିଳି ଯାଇଥିଲା ଭାରତୀୟ ଏମ୍‌ବାସିରୁ । ନହେଲେ କ'ଣ ଯେ ହୋଇଥାଆନ୍ତା !

ପରଦିନ ହିଁ ଭିସା ଏକ୍ସ୍‌ଟେନ୍‌ସନ୍‌ର ବ୍ୟବସ୍ଥା କରିଦେଲା ଶବ୍‌ନମ୍ ।

ପୁଣି ବର୍ଷକ ପାଇଁ ଭାରତରେ ରହିବାର ଅନୁମତି ମିଳିଯାଇଥିଲା ।

ଆଗାମୀ ବର୍ଷ କିନ୍ତୁ ସେ ଭିସା କଥା ଭୁଲିଲା ନାହିଁ । ଠିକ୍ ସମୟ ଅନୁସାରେ ଏକ୍ସ୍‌ଟେନ୍‌ସନ୍ ବ୍ୟବସ୍ଥା କରିଦେଲା ।

'ଧେତ୍ – ଭଲ ଲାଗୁନି ।' ସେଦିନ ଅଫିସ୍‌ରୁ ଫେରି ବିରକ୍ତିରେ ଶବ୍‌ନମ୍ କହିଲା ।

'କୋଉ କଥା ?' – ଜୋତା ଖୋଲୁ ଖୋଲୁ ପ୍ରତାପ ପଚାରିଲା ।

'ଏ ଥରକ ପାଞ୍ଚ ବର୍ଷର ଭିସା ପାଇଁ ମୁଁ ଦରଖାସ୍ତ କରିଥିଲି, କିନ୍ତୁ ମିଳିଛି ସେଇ ବର୍ଷକ ପାଇଁ । ସେଇ ସିଙ୍ଗଲ୍ ଏନ୍‌ଟ୍ରି । ଏଇମିତି କ'ଣ ସାରା ଜୀବନ କରି ଚାଲିବି ? ହଠାତ୍ ଯଦି କୌଣସି କାରଣରୁ ଗୋଟିଏ ବର୍ଷ ଭିସା ନ ମିଳେ... ଯଦି ବାଙ୍ଗଲା ଦେଶ୍ ସାଙ୍ଗରେ କୌଣସି କାରଣରୁ ଭାରତର ସମ୍ପର୍କ ଖରାପ ହୋଇଯାଏ... ତା'ହେଲେ ମତେ ତ ଏ ଦେଶରୁ ତଡିଦେବେ ! ତା'ପରେ... ତା'ପରେ କ'ଣ ହେବ ଆମ ଦୁଇଜଣଙ୍କର ?'

'ହୁଁ ।' ପ୍ରତାପ ଚାହା କରିବାକୁ ଉଠିଯାଇଥିଲା । ଗ୍ୟାସ୍‌ରେ ପାଣି ବସାଉ ବସାଉ ଭାବୁଥିଲା ଯୋଉ କଥାଟି କେଇ ମାସ ଧରି ତା' ମନ ଭିତରେ ଘୂରି ବୁଲୁଥିଲା, କେମିତି ସେଇ କଥାର ଅବତାରଣା କରିବ ଶବ୍‌ନମ୍ ସାମ୍ନାରେ । ସେ ଏତେ ଦିନ ଯଥାର୍ଥ ସମୟ ପାଇଁ ଅପେକ୍ଷା କରି ରହିଥିଲା । ଆଜି ସେଇ ଯଥାର୍ଥ ସମୟ କି ?

ଶବ୍‌ନମ୍ ସାମ୍ନାରେ କପେ ଚାହା ରଖିଦେଇ ନିଜ ଚାହା କପ୍ ଧରି ପାଖ ସୋଫାରେ ବସି ଯାଇଥିଲା ପ୍ରତାପ । ରହି ରହି କହି ଥିଲା, 'ଉପାୟଟିଏ ଅଛି, ଜାନ୍... ଭାବି ଦେଖି ପାର ।'

ଶବ୍‌ନମ୍ ଜିଜ୍ଞାସୁ ଦୃଷ୍ଟିରେ ଚାହିଁ ରହିଥିଲା ।

'ଦେଖ, ଯେତେ ଯାହା ହେଲେ ବି ଭିସା ଜିନିଷଟି ଅସ୍ଥାୟୀ । କିନ୍ତୁ ଏବେ ମୋ' ସାଙ୍ଗରେ ତୁମର ଯେତେବେଳେ ସ୍ଥାୟୀ ସମ୍ପର୍କ ହୋଇଯାଇଛି, ଭାରତର ସିଟିଜେନ୍‌ଶିପ୍ ନେବା ବିଷୟରେ ତୁମର ମତ କ'ଣ ? ତୁମର ତ ଭାରତରେ ରହିବାର ଛଅ ବର୍ଷ ହୋଇ ସାରିଛି ।'

ସିଟିଜେନ୍‌ଶିପ୍ ! ଭାରତର ନାଗରିକତ୍ୱ !! ଶବ୍‌ନମ୍ ପାଟିରୁ କଥା ହଜି-ଯାଇଥିଲା ।

ପ୍ରତାପ ମନରେ ଆଲୋଡନ ସେତେବେଳେ । ସେ କ'ଣ ଭୁଲ୍ କରି ଦେଲା କି ? ଶବ୍‌ନମ୍ ଭଳି ସ୍ୱାଧୀନଚେତା ଝିଅକୁ ନିଜର ନାଗରିକତ୍ୱ ତ୍ୟାଗ କରିବା ଭଳି ଘଟଣା ଜଣେଇବା କ'ଣ ଧର୍ମତ୍ୟାଗ ଭଳି ଘଟଣା ହୋଇଗଲା କି ? ଅଥଚ ଆଶ୍ଚର୍ଯ୍ୟ, ସାଙ୍ଗେ ସାଙ୍ଗେ ମନ ସ୍ଥିର କରିନେଲା ସେ । କହିଲା, 'ତୁମେ ଠିକ୍ କହିଛ, ପ୍ରତାପ । ଏବେ ତୁମ ସାଙ୍ଗରେ ମୋର ସ୍ଥାୟୀ ସମ୍ପର୍କ । ମାନେ ଭାରତ ସାଙ୍ଗରେ ସମ୍ପର୍କ ବି ସ୍ଥାୟୀ । ତା'ଛଡା ମୁଁ ଭାରତକୁ ଭଲ ପାଏ । ରବୀନ୍ଦ୍ରନାଥ, ଆଶାପୂର୍ଣ୍ଣା, ହୁସେନ୍‌ଙ୍କ ଦେଶକୁ ଭଲ ନ ପାଇ ଉପାୟ କାହିଁ ? ... ନାଗରିକତ୍ୱ ପାଇଁ ତୁମେ ବୁଝାବୁଝି ଆରମ୍ଭ କରି ଦିଅ । ଯାହା କରିବା କଥା ମୁଁ କରିବି ।'

ଆଉ ଗୋଟିଏ ବଡ ଜରୁରୀ କଥା କହିଲା ନାହିଁ ଶବ୍‌ନମ୍ । ବାହାଘରର ତିନି ବର୍ଷ ହୋଇଗଲା । ଏବେ ପିଲାଟିଏ ପାଇଁ ଯେ ମନ ବିକଳ ହୋଇଯାଉଛି ତା'ର ! ପ୍ରତାପର ମନ କଥା ତା'ର ଅଜଣା ନାହିଁ । ବାହାଘର ପରେ ପରେ ଥରେ ସେ କହିଥିଲା, 'ବାପା ମା'ଙ୍କର ଏକମାତ୍ର ସନ୍ତାନ ମୁଁ । ବହୁତ ଏକା ଭାବରେ ବଢିଛି ।' ସେତେବେଳେ ଥଟ୍ଟାରେ ଶବ୍‌ନମ୍ କହିଥିଲା, ଭବିଷ୍ୟତ ପାଇଁ କ'ଣ ଇରାଦା ?'

'ଗୋଟିଏ କ୍ରିକେଟ୍ ଟିମ୍ ।' ପ୍ରତାପ ବି ଥଟ୍ଟା କରିଥିଲା ।

'ଇସ୍, ଆଶା ତ କିଛି କମ୍ ନୁହଁ !! ଦେଖୁଥାଅ ସ୍ୱପ୍ନ ! ... ଦୁଇରୁ ଅଧିକ ଆଦୌ ନୁହଁ, ଏବେ ଠୁଁ କହିଦେଲି ।'

ସନ୍ତାନ ସ୍ୱପ୍ନ ଏତେ ଦିନ କେବଳ ସ୍ୱପ୍ନ ହୋଇରହିଗଲା । ସେମାନଙ୍କର ଅସ୍ଥାୟୀ ଜୀବନରେ ପିଲାଟିଏକୁ ଆଣିବା କଥା ଚିନ୍ତା କରି ହୁଏନି । ଭାରତର ନାଗରିକ ହୋଇଗଲେ ଏ ସ୍ୱପ୍ନ ସାକାର ହେବ ସେମାନଙ୍କର । ପରିବାର ସମ୍ପୂର୍ଣ୍ଣ ହେବ ।

'ସିଟିଜେନ୍‌ଶିପ୍ ଦରଖାସ୍ତ ପାଇଁ କ'ଣ କରିବାକୁ ହୁଏ ?' -ଶବ୍‌ନମ୍ ଆଗ୍ରହରେ ପଚାରିଥିଲା ।

'ମୁଁ ଜାଣିନି ଠିକ୍ । କିନ୍ତୁ ମୋର ଜଣେ ଦୂର ସମ୍ପର୍କୀୟ ଭାଇନା ବୈଦେଶିକ ମନ୍ତ୍ରଣାଳୟରେ କାମ କରନ୍ତି । ସେ ସବୁ କହିପାରିବେ । ମୁଁ ଏବେ ଫୋନ୍ କରୁଛି ଦିବାକର ଭାଇନାଙ୍କୁ ।'

ଦିବାକର ଭାଇନା ଫର୍ମ୍‌ର ବ୍ୟବସ୍ଥା କରିଦେଲେ । କ'ଣ କେମିତି କରିବାକୁ ହେବ, ତା' ବି ବୁଝାଇ ଦେଲେ । ମହାଆଗ୍ରହରେ ଶବ୍‌ନମ୍ ପ୍ରତାପର ସାହାଯ୍ୟ ନେଇ ଫର୍ମ୍ ପୂରଣ କରି ଆବଶ୍ୟକୀୟ କାଗଜପତ୍ର ସହିତ ସଂପୃକ୍ତ ଅଫିସ୍‌କୁ ଦରଖାସ୍ତ ପଠେଇ ଦେଲା ।

କେଇ ସପ୍ତାହ କଟିଗଲା । ତା'ପରେ କେଇ ମାସ । ପୁଣି ବର୍ଷ । କିଛି ହେଉ ନଥିଲା । ଦିବାକର ଭାଇନାଙ୍କ ଚେଷ୍ଟା ମଧ୍ୟ ବିଫଳ ଯାଉଥିଲା । ମଝିରେ କେତେ ଭିସାର ସମୟ ପାର ହୋଇଗଲା, ଆଉ ତା'ର ହିସାବ କେହି ରଖିଲେ ନାହିଁ । ନାଗରିକତ୍ୱର ଦରଖାସ୍ତ ରାଜ୍ୟ ସରକାର ଯାଞ୍ଚ କରେଇ କେନ୍ଦ୍ରକୁ ପଠେଇବାର କଥା । ଥରେ କେନ୍ଦ୍ରସରକାରଙ୍କ ପାଖରେ ପହଞ୍ଚିଗଲେ, ଯାହା କରିବା କଥା କରିବେ ଦିବାକର ଭାଇନା । କିନ୍ତୁ ରାଜ୍ୟ ଭିତରେ କେମିତି କ'ଣ କରିବେ ପ୍ରତାପ ଆଉ ସବ୍‌ନମ୍ ?

ତଥାପି ବିଭିନ୍ନ ଲୋକଙ୍କୁ ନିଜ ସମସ୍ୟା ବିଷୟରେ କହି ସାହାଯ୍ୟ ମାଗିବା ଆରମ୍ଭ କରିଦେଲେ ସେମାନେ । କୋଉ କଲିଗ୍‌ର ଶଳା । କୋଉ ବନ୍ଧୁର ଭାଇ । ତଥାପି କିଛି ହେଉ ନ ଥିଲା ।

ଶବ୍‌ନମ୍‌ର ନାଗରିକତ୍ୱ ନେଇ ଯେତେବେଳେ ଏତେ ବେଶୀ ଅନିଶ୍ଚିତତା, ସେତିକିବେଳେ ସେମାନଙ୍କର ବ୍ୟକ୍ତିଗତ ଜୀବନରେ ପ୍ରାୟ ସ୍ଥାୟୀ ଭାବରେ ବସି-ଯାଇଥିବା କଳା ମେଘଟିଏ ହଠାତ୍ ଅପସରିଗଲା ।

ବାହାଘର ପରେ ପରେ ହିଁ ଶବ୍‌ନମ୍‌ର ପରିବାର ପ୍ରତାପକୁ ଗ୍ରହଣ କରି-ନେଇଥିଲେ । ଶବ୍‌ନମ୍ ଯେହେତୁ ବାଂଗଲାଦେଶ ଯାଇପାରୁ ନଥିଲା, ତା' ବାପା ମା' ଭଉଣୀ ନିୟମିତ ଭାବରେ ଭାରତ ଆସି ଝିଅ ଜ୍ୱାଇଁଙ୍କୁ ଦେଖି ଯାଉଥିଲେ ।

ତା'ଛଡା ପ୍ରତିବର୍ଷ ଦୁଇତିନିଜଣ ଅନ୍ୟ ଆତ୍ମୀୟଙ୍କୁ ପାଖରେ ପାଉଥିଲା ସେ । ବାହାଘର ବେଳେ ସବୁଠାରୁ ଅଧିକ ଆପତ୍ତି କରିଥିବା ମାମୁ ମଧ ଥରେ ଆସି ବୁଲିଯାଇଥିଲେ । ସନ୍ତୁଷ୍ଟ ହୋଇ ପ୍ରତାପକୁ ପ୍ରଶଂସା କରି ସେ ଢାକା ଫେରିଯାଇଥିଲେ ।

କିନ୍ତୁ ସମସ୍ୟା ହୋଇଥିଲା ପ୍ରତାପ ପକ୍ଷର । ପ୍ରତାପର ବାପା ମା'ଙ୍କ ସାଙ୍ଗରେ ପୁଅ ବୋହୂଙ୍କ ସମ୍ପର୍କ ସହଜ ହେଉନଥିଲା । ସମ୍ପର୍କ ଥିଲା, କିନ୍ତୁ ସୂତାଖିଅକରେ ଝୁଲୁଥିଲା ସେ ସମ୍ପର୍କ । ହୁଏତ କେବେଠୁଁ ଟାଣି ହୋଇ ଛିଣ୍ଡି ଯାଇଥାଆନ୍ତା, କିନ୍ତୁ ଶବ୍‌ନମ୍ ସେମିତି ହେବାକୁ ଦେଉ ନ ଥିଲା । ସବୁ ରକମର ଚେଷ୍ଟା କରି ଚାଲିଥିଲା । ହେଲେ ତା'ର ସତତ ଚେଷ୍ଟା ସତ୍ତ୍ୱେ ରାହୁଗ୍ରସ୍ତ ହୋଇ ରହିଥିଲା ଏଇ ପାରିବାରିକ ସମ୍ପର୍କ ।

ହଠାତ୍ ଦିନେ ଘୁଞ୍ଚିଗଲା କଳା ମେଘଟି । ବଦଳିଗଲା ଅସ୍ୱସ୍ତିକର ସମ୍ପର୍କର ରୂପରେଖା ।

ସେଥର ପ୍ରତାପର ଜନ୍ମଦିନ ପାଇଁ ବାପା ମା' କଲିକତା ଆସିଥିଲେ । ସବୁ ବର୍ଷ ଏଇ ସମୟରେ ଆସନ୍ତି । ଦୁଇଟା ଦିନ କୌଣସି ମତେ ରହନ୍ତି । ପୁଣି ଫେରିଯାଆନ୍ତି ବାଲେଶ୍ୱର । ପୁଅ ବୋହୂଙ୍କର ବହୁ ଅନୁରୋଧ ସତ୍ତ୍ୱେ ଅଧିକ ତ ଦୂର କଥା, ଦୁଇଦିନର ପ୍ରୋଗ୍ରାମ ତିନିଦିନ ଛୁଏଁ ନାହିଁ ।

ସେମାନଙ୍କ ରହଣିର ରୁଟିନ୍ ବି ସେଇ ଏକ । ଜନ୍ମଦିନ ସକାଳୁ ମନ୍ଦିର ଯାଆନ୍ତି ସେମାନେ । ପ୍ରତାପର ମା' ନିଜ ହାତରେ ଚାଉଳ କ୍ଷିରୀ, ଚକୁଳିପିଠା କରି ଷଠୀଙ୍କ ପାଖରେ ଭୋଗ କରାନ୍ତି । ପୁଅକୁ ଖୁଆଇ ଦିଅନ୍ତି । ସଂଧ୍ୟାବେଳେ ପୁଅବୋହୂଙ୍କୁ ନେଇ ଦୋକାନରୁ ନୂଆ ଲୁଗା କିଣାଇ ଦିଅନ୍ତି । ଆଉ ସମସ୍ତେ ହୋଟେଲ୍‌ରେ ଖିଆପିଆ କରି ଫେରନ୍ତି ଘରକୁ ।

ସେଥର ବି ସେଇମିତି ହୋଇଥିଲା । କିନ୍ତୁ ସବୁ ଭିତରେ କ'ଣ ଯେମିତି ହଜି ଯାଇଥିଲା । ବୋହୂର କୋଉଥିରେ ଆଗ୍ରହ ନାହିଁ । ଆଉ ପୁଅ ଅନ୍ୟମନସ୍କ ।

ପୁଅବୋହୂଙ୍କ ବ୍ୟକ୍ତିଗତ ଜୀବନ ନେଇ ଅନୁସନ୍ଧିତ୍ସୁ ହେବା ଭଳି ସମ୍ପର୍କ ସେମାନଙ୍କର ନଥିଲା, ତଥାପି ଘରକୁ ଫେରିବା ପରେ ଦୁଇଚାରିଟା ପ୍ରଶ୍ନ ନ ପଚାରି ସେମାନେ ରହିପାରିନଥିଲେ । କ'ଣ କହିବ କହିବ ହୋଇ ପ୍ରତାପ ରହିଯାଇଥିଲା । ଆଉ ଶବ୍‌ନମ୍ ଝର ଝର ହୋଇ କାନ୍ଦିପକେଇଥିଲା ।

ଯେଉଁ ବୋହୂକୁ ଗ୍ରହଣ କରିବାରେ ପ୍ରତାପ ବାପା ମା'ଙ୍କ ମନରେ ଏତେ ବର୍ଷ ପରେ ବି କୁଣ୍ଠା ରହିଯାଇଥିଲା, ସେଇ ବୋହୂ ଆଖିର ଲୁହ ଯେ ସେମାନଙ୍କୁ ଏଭଳି ଯନ୍ତ୍ରଣା ଦେବ, ତା' ସେମାନେ ଭାବି ପାରି ନ ଥିଲେ ।

ଧୀରେ ଧୀରେ ପ୍ରତାପ ସବୁ କଥା କହିଥିଲା ।

ନିଜ ଆଣ୍ଠୁରେ ମୁଣ୍ଡ ରଖି ଶବ୍‌ନମ୍ ଯୋଡିଥିଲା, 'ଏତେ ବର୍ଷରେ ଥରେ ବାଙ୍ଗଲା ଦେଶ ମାଟି ମାଡି ପାରିଲିନି ମୁଁ । କୌଣସି ମତେ ନିଜକୁ ବୁଝାଇ ରଖିଥିଲି । କିନ୍ତୁ ଆଉ ପାରୁନି । ... ତେଇଶ ଦିନ ପରେ ମୋ' ସାନ ଭଉଣୀ ମେହେର୍‌ର ନିର୍ବନ୍ଧ, ମା' । ଦେଖନ୍ତୁ ଏମିତି ଅବସ୍ଥା ଏଠି ଯେ ମୁଁ ଯାଇପାରୁନି ।' କୋହ ବଢିଥିଲା ।

ତା' ମୁଣ୍ଡ ଆଉଁଶି ଦେଉ ଦେଉ ପ୍ରତାପର ବାପା ମା' ନିଜନିଜ ଭିତରେ ନିରବରେ କ'ଣ ଯେମିତି ନିଷ୍ପତ୍ତି ନେଉଥିଲେ । ଗଳା ଝାଡି ପ୍ରତାପର ବାପା କହିଥିଲେ, 'ତୁ ସିନା ଯାଇପାରିବୁନି, ମା' । କିନ୍ତୁ ମେହେର୍‌ର ନିର୍ବନ୍ଧ ପାଇଁ ତୋ' ତରଫରୁ ଆମେ ଦୁଇଜଣ ଢାକା ଯିବୁ ପ୍ରତାପ ସାଙ୍ଗରେ । ମୁଁ କଥାଦେଉଛି, ଫେରି-ଆସି ସବୁ ରକମର ଚେଷ୍ଟା କରିବି । ଯେମିତି ତୋର ସିଟିଜେନ୍‌ଶିପ୍ ଶୀଘ୍ର ହୋଇଯାଏ, ସେଇଟା ଦେଖିବି । ମେହେର୍‌ର ବାହାଘର କେବେ ?... ସତର ମାସ ପରେ ? ସମୟ ତ ଅଛି ହାତରେ । ଦେଖିବୁ, ତୁ ତା' ବାହାଘରରେ ନିଶ୍ଚୟ ଯୋଗଦେବୁ ।'

ଜହ୍ନ ଆଲୁଅରେ ବର୍ଷ ବର୍ଷର ଅଭିମାନ ପୋଛି ହୋଇଯାଇଥିଲା ।

ଢାକାରୁ ଫେରିବା ପରେ ପ୍ରତାପର ବାପା ନିଜ କଥା ରଖିଥିଲେ । ପଶ୍ଚିମବଙ୍ଗ ସରକାରୀ ମହଲରେ ତାଙ୍କର କିଛି ଜଣାଶୁଣା ମଣିଷ ଥିଲେ । ସେମାନଙ୍କର ମାଧ୍ୟମରେ ସେ ଚେଷ୍ଟା ଚଳେଇଥିଲେ । ଶେଷରେ ଜଣା ପଡ଼ିଥିଲା ଯେ ପୋଲିସ୍‌ର ଯାଞ୍ଚ ପାଇଁ ଅଟକି ଯାଇଛି ନାଗରିକତ୍ୱର ଦରଖାସ୍ତ ।

ଥରେ କାରଣଟା ଜଣାପଡିଯିବା ପରେ ସେ ସେଇଟିକୁ ଲକ୍ଷ୍ୟ ରଖି ନୂତନ ଭାବରେ ନିଜ ଅଭିଯାନ ଆରମ୍ଭ କରିଥିଲେ । କିଛି ମାସ ପାଇଁ କଲିକତାକୁ ସେମାନଙ୍କର ଆସ୍ଥାନ ଉଠି ଆସିଥିଲା । ସେତିକିବେଳେ କିଏ ଜଣେ କହିଥିଲା ଯେ ପୋଲିସ୍‌ର ଜଣେ ବରିଷ୍ଠ କର୍ମଚାରୀ ତା'ର ଆତ୍ମୀୟ । ତାଙ୍କ ସାଙ୍ଗରେ କଥା କହିଲେ ନିଶ୍ଚୟ ସବୁ ଠିକ୍ ହୋଇଯିବ ।

ଦିନ ଠିକ୍ ହେଲା । ସମୟ ସ୍ଥିର ହେଲା । କାମରୁ ଛୁଟି ନେଇ ଶବ୍‌ନମ୍ ଆଉ ପ୍ରତାପ ପୋଲିସ୍ କର୍ମକର୍ତ୍ତାଙ୍କ ଅଫିସ୍‌ରେ ପହଞ୍ଚିଥିଲେ ।

ପୋଲିସ୍ ଅଫିସର୍ ଜଣକ ସବୁ ମନଦେଇ ଶୁଣିଥିଲେ । ଶେଷରେ କହିଥିଲେ, 'ହୋଇଯିବ – ଖୁବ୍ ଶୀଘ୍ର ହୋଇଯିବ ।'

ପ୍ରତାପ୍, ଶବ୍‌ନମ୍‌ଙ୍କ ମୁହଁ ଉପରୁ ଚିନ୍ତାର କାଳିମା ପୋଛି ହୋଇଯାଇଥିଲା

ଏଇ ସମ୍ଭାବନାରେ । ଥ୍ୟାଙ୍କ୍ ୟୁ – ଥ୍ୟାଙ୍କ୍ ୟୁ ସୋ ମଚ୍, ସାର୍ । ଏଥର ଆମକୁ କ'ଣ କରିବାକୁ ହେବ ?'

'କିଛି ନାହିଁ । ଯାହା କରିବାକୁ ହେବ, ତା' ପୋଲିସ୍କୁ । ... ଆପଣମାନେ ଗୋଟିଏ କାମ କରନ୍ତୁ । ପଚାଶ ହଜାର ଟଙ୍କା ଏଇଠି ଦେଇଯାଆନ୍ତୁ । ତା'ପରେ ସବୁ ହୋଇଯିବ ।'

ଲାଞ୍ଚ ! ପଚାଶ ହଜାର !

ନା, ପଚାଶ ହଜାର ଟଙ୍କା ଯୋଗାଡ କରିବାଟା ସମସ୍ୟା ନ ଥିଲା, ସମସ୍ୟା ଥିଲା ଲାଞ୍ଚ ଦେବାରେ । ଦୁଇଜଣ ଯାକ କଥା ଆଉ ନଆଗେଇ ଫେରିଆସିଥିଲେ ।

ସବୁ ସମସ୍ୟାର ଆରମ୍ଭ ସେଇଠୁ ।

ପୋଲିସ୍ ଡିପାର୍ଟ୍‌ମେଣ୍ଟଠାରୁ ଅର୍ଥ ବିନିମୟରେ ସାହାଯ୍ୟ ନେବାକୁ ସିନା ପ୍ରତାପ, ଶବ୍‌ନମ୍ ମନା କରିଦେଲେ, କିନ୍ତୁ ପୋଲିସ୍ ନିସ୍ପୃହ ହୋଇ ବସିବାକୁ ପ୍ରସ୍ତୁତ ନଥିଲା । ତନାଘନା ତଦନ୍ତ ଚାଲିଲା ।

ତା'ପରେ ଯାହା ଘଟିଲା, ସେଇଟା ଦୁଇସପ୍ତାହତଳେ ଗୋଟିଏ ସଂଧ୍ୟାର ଘଟଣା ।

ଅଫିସ୍‌ରୁ ଫେରି ଘରେ ପାଦ ରଖିଛନ୍ତି ସେମାନେ, ହଠାତ୍ କଲିଙ୍ଗ୍ ବେଲ୍ ବାଜିଲା । ବାହାରେ ଅଚିହ୍ନା ପୋଲିସ୍ ।

'କୁହନ୍ତୁ ।' ପ୍ରତାପ ପଚାରିଥିଲା ।

'ଶବ୍‌ନମ୍ ଆଲମ୍ କିଏ ?'

'ମୁଁ ଶବ୍‌ନମ୍ ।' ଶବ୍‌ନମ୍ ଆଗେଇ ଆସିଥିଲା ।

'ଆପଣ ବାଙ୍ଗଲାଦେଶ୍‌ର ନାଗରିକ ?'

'ହଁ ।'

'କାଲି ଆପଣଙ୍କୁ ପୋଲିସ୍ ଷ୍ଟେସନ୍ ଆସିବାକୁ ହେବ ।'

'ପୋଲିସ୍ ଷ୍ଟେସନ୍ ! କାହିଁକି ?'

'ଭିସା ଭେରିଫିକେସନ୍ ପାଇଁ ।'

'ଏବେ ଦେଖାଇ ଦେଉଛି ଭିସା ।'

'ନା, ମତେ ଦେଖାଇ ଲାଭ ନାହିଁ । ଆମ ଇନ୍‌ସ୍‌ପେକ୍ଟର୍‌ଙ୍କୁ ଦେଖାଇବାକୁ ହେବ ।'

ପରଦିନ ବାଧହୋଇ ସ୍ଥାନୀୟ ଥାନାକୁ ଯାଇଥିଲେ ଶବ୍‌ନମ୍ ଓ ପ୍ରତାପ । ଦେଢ ଘଣ୍ଟା ଅପେକ୍ଷା କରିବା ପରେ ଇନ୍‌ସ୍‌ପେକ୍ଟର୍‌ଙ୍କ ସାଙ୍ଗରେ ଦେଖା କରିବାର ଅନୁମତି ମିଳିଲା । ପାସ୍‌ପୋର୍ଟକୁ ତନ୍ନତନ୍ନ କରି ପରୀକ୍ଷା କରିବାପରେ ଇନ୍‌ସ୍‌ପେକ୍ଟର୍

ସେଇ ଏକା କଥା ଆଉଥରେ ପଚାରିଲେ । 'ଆପଣ ବାଙ୍ଗଲାଦେଶର ନାଗରିକ ?'

'ହଁ । କିନ୍ତୁ ମୋର ଇଣ୍ଡିଆନ୍ ଭିସା ଅଛି ।'

'ଭିସା ତ ଅଛି । ହେଲେ ଟୁରିଷ୍ଟ ଭିସା । ଆପଣ ଦେଶ ବୁଲି ଦେଖନ୍ତୁ, ଜିନିଷ କିଣାକିଣି କରନ୍ତୁ । ଚାକିରି କରିବାକୁ ଅନୁମତି କିଏ ଦେଲା ଆପଣଙ୍କୁ ?'

ଶବ୍‌ନମ୍ ଜାଣିବାରେ ଏଭଳି ଅନୁମତିର ପ୍ରୟୋଜନ ଭାରତରେ ନାହିଁ । ପୁଣି କି ନୂଆ ନିୟମ ବାହାର କରୁଛନ୍ତି ଏମାନେ ! ସେ ଚୁପ୍ ରହି ଅପେକ୍ଷା କଲା ।

'ଆପଣ ଫରେନର୍ । ଫରେନର୍ ଭଳି ରହନ୍ତୁ । ବେଆଇନ୍ କାମକଲେ ଜେଲ୍‌ରେ ଭର୍ତ୍ତି ହେବାକୁ ସମୟ ଲାଗିବନାହିଁ ।' ପୋଲିସ୍ ଇନ୍‌ସ୍ପେକ୍‌ଟର୍ ଧମକ ଦେଇଥିଲେ ।

ଉଭୟ ପ୍ରତାପ ଓ ଶବ୍‌ନମ୍ ସ୍ତବ୍ଧ ।

'ଆପଣ ଏବେ ଆସିପାରନ୍ତି ।'

ଘରକୁ ଫେରିବାବେଳେ ଦୁଇଜଣଙ୍କ ପାଟିରୁ କଥା ହଜି ଯାଇଥିଲା । କେବଳ ପ୍ରତାପର ହାତକୁ ନିଜର ଶେତା ପଡିଯାଇଥିବା ଦୁଇହାତରେ ଜାବୁଡି ଧରିଥିଲା ଶବ୍‌ନମ୍ ।

ପରଦିନ ଶବ୍‌ନମ୍ ନିଜ କମ୍ପାନୀର ଏଚ୍. ଆର୍ ହେଡ୍‌ଙ୍କ ସାଙ୍ଗରେ କଥାବାର୍ତ୍ତା କଲା । ଯଦି ସତରେ ତା' ପକ୍ଷରେ କାମ କରିବା ବେଆଇନ୍, ତା'ହେଲେ କମ୍ପାନୀ ଚାକିରି ଦେଲା କେମିତି ?

'ପୋଲିସ୍ ଭୁଲ୍ କହିନି, ଶବ୍‌ନମ୍ । ଆମର ହିଁ ଭୁଲ୍ ହୋଇଛି । ତୁମକୁ ଚାକିରି ଦେବାବେଳେ ଆମର ହିଁ ଆଉ ଟିକିଏ ଭଲ କରି ଯାଞ୍ଚ କରିବା ଉଚିତ ଥିଲା ।'

'ମୁଁ ଏବେ କ'ଣ କରିବି, ସାର୍ ?' ବିକଳରେ ଶବ୍‌ନମ୍ ପଚାରିଥିଲା ।

'ଆଇ ଆମ୍ ସୋ ସରି, ଶବ୍‌ନମ୍ । ହେଲେ ତୁମକୁ ଚାକିରି ଛାଡିବାକୁ ହେବ ।'

ଶବ୍‌ନମ୍ ଇସ୍ତଫା ଦେଇଦେଲା । କିନ୍ତୁ ମାନସିକ ଶାନ୍ତି ତା'ର ଚାଲିଯାଇଛି ସେଇ ଦିନଠୁଁ । ଅଧିକାଂଶ ରାତିରେ ଆଜେବାଜେ ସ୍ୱପ୍ନ ଦେଖି ଏଇମିତି ଚମକି ଉଠେ ସେ । ଆଜି ରାତିରେ ଯେମିତି ।

କ'ଣ କରିବ ପ୍ରତାପ ? ଶବ୍‌ନମ୍‌ର ଯନ୍ତ୍ରଣା ଯେ ସହି ପାରୁନି ସେ !

ପର ଦିନ ସକାଳ ହେଲା । ପ୍ରତାପ ଅଫିସ୍ ବାହାରିବାବେଳେ ପାଖରେ ଆସି ଠିଆ ହେଲେ ବାପା । ଗଳା ଝାଡି ସେ କହିଲେ, 'ପ୍ରତାପ, ଗୋଟିଏ କାମ କରିବାକୁ ହେବ ତତେ ।'

'କୁହ, ବାପା ।'

'ପଚାଶ ହଜାର ଟଙ୍କା ଦେଇ ଦେ ।'

ଲାଞ୍ଚ ! ବାପା କହୁଛନ୍ତି ଏ କଥା ! ଯିଏ ଲାଞ୍ଚ ଦେଲେନି କି ନେଲେନି ବୋଲି ସାରା ଜୀବନ ଚାକିରି ଜୀବନରେ ଭୋଗିଗଲେ, ସେଇ ବାପା କହୁଛନ୍ତି ଏକଥା !

'କେତେ ଆଉ ଭୋଗିବ ଆମ ଶବ୍‌ନମ୍ ! ଯଦି କୌଣସି ଦିନ ଜବରଦସ୍ତି ତାକୁ ବାଙ୍ଗ୍‌ଲାଦେଶ ଏମାନେ ପଠେଇ ଦିଅନ୍ତି, କ'ଣ ହେବ ତା' ହେଲେ ?'

ଏମିତି ଘଟଣାର ଦୃଷ୍ଟାନ୍ତ ତ କମ୍ ନାହିଁ । ସତ୍ ପଥରେ ରହିବ ବୋଲି ଏତେ ବଡ ଗୋଟାଏ ବଳିଦାନ ଦେବା ଭଳି ଦୃଢତା ପ୍ରତାପର ଅଛି କି ? ଶବ୍‌ନମ୍‌କୁ ଛାଡି ସେ ରହିପାରିବ କି ? ଆଉ ତାକୁ ଛାଡି ଶବ୍‌ନମ୍ ?

ନା, ଦୂରେଇ ରହିପାରିବେନି ସେମାନେ ।

ପ୍ରତାପ ସେଇଦିନ ହିଁ ଶବ୍‌ନମ୍‌କୁ ନେଇ ପୋଲିସ୍‌ର ବରିଷ୍ଠ ଅଫିସର୍‌ଙ୍କ ପାଖକୁ ଗଲା । କିଛି ନକହି ପଚାଶ ହଜାର ଟଙ୍କାର ଲଫାପାଟି ବଢେଇଦେଲା ତାଙ୍କ ଆଡକୁ ।

ଅଫିସର୍‌ଙ୍କ ମୁହଁରେ ଗଡ ଜିତିବା ହସ । ଯେମିତି କହୁଥିଲେ – ସେଇ କଥା କଲ ଟି, କାହିଁକି ତାହେଲେ ଅଯଥା ଗାନ୍ଧୀବାଦିତା ଦେଖାଉଥିଲ !

'ହୁଁ, ଯାଆନ୍ତୁ ଏଥର । କାମ ହେଇଯିବ ।'

ମନ ଆଉ ଦେହରେ କାଦୁଅ ବୋଲି ଦୁଇଜଣଯାକ ଫେରିଆସିଲେ । କିନ୍ତୁ ସତରେ କାମ ହୋଇଗଲା ଖୁବ୍ ଶୀଘ୍ର । ରାଜ୍ୟ ସରକାର ଶବ୍‌ନମ୍‌ର ନାଗରିକତ୍ୱ ଦରଖାସ୍ତ କେନ୍ଦ୍ରକୁ ପଠେଇ ଦେଲେ । କେନ୍ଦ୍ରରେ ଏମିତିରେ ବି ହୋଇ ଯାଇଥାଆନ୍ତା, କିନ୍ତୁ ଦିବାକର ଭାଇନା ନିଜେ ସମୟ ଦେଇ କାମଟିକୁ ଆଉ ଟିକିଏ ତ୍ୱରାନ୍ୱିତ କରିଦେଲେ ।

ଭାରତୀୟ ନାଗରିକତ୍ୱ ଯେ ଶବ୍‌ନମ୍‌କୁ ଦିଆଯିବ, ସେଇ ମର୍ମରେ ଚିଠି ଆସିଗଲା ।

'ଏଥର କ'ଣ କରିବାକୁ ହେବ ?' ଫୋନ୍‌ରେ ଦିବାକର ଭାଇନାଙ୍କୁ ପଚାରିଲା ପ୍ରତାପ ।

'ବାସ୍, ଆଉ ପୁଣି କ'ଣ ? ଶବ୍‌ନମ୍‌କୁ କହ, ବାଙ୍ଗଲାଦେଶ ଯାଇ ପୁରୁଣା ପାସ୍‌ପୋର୍ଟ୍ ଫେରାଇ ଦେବ । ପାସ୍‌ପୋର୍ଟ୍ ନେଇ ସେମାନେ ଗୋଟିଏ ଫର୍ମ୍‌ରେ ଦସ୍ତଖତ କରିଦେବେ ।'

'କି ଫର୍ମ୍ ?'

'ସାଧାରଣ ଫର୍ମଟିଏ । ସେଥିରେ ଲେଖାଥିବ ଯେ ଶବ୍‌ନମ୍ ଭାରତର ନାଗରିକ ହେଲେ କାହାର କୌଣସି ଆପତ୍ତି ନାହିଁ ।'

'ଖାଲି ଏତିକି ??' ପ୍ରତାପ ଆଶ୍ଚର୍ଯ୍ୟ । ଏତେ ବର୍ଷ ଧରି ଧକ୍କା ଖାଉଥିବା ଜୀବନର ଯେ ଏମିତି ଏତେ ସହଜରେ ଅବସାନ ଘଟିବ, ସେକଥା ଯେମିତି ବିଶ୍ବାସ କରିବାକୁ ତା'ର ଅସୁବିଧା ହେଉଥିଲା ।

'ବାସ୍ ସେତିକି । ସେ ଫର୍ମ୍‌ଟା ଏଠି ଦେଇଦେଲେ ଶବ୍‌ନମ୍‌ର ଭାରତୀୟ ପାସ୍‌ପୋର୍ଟ୍ ସାଙ୍ଗେ ସାଙ୍ଗେ ଇସ୍ୟୁ ହୋଇଯିବ ।'

ଫୋନ୍ ରଖିବାପରେ ଦୁଇହାତରେ ଶବ୍‌ନମ୍‌କୁ କୁଣ୍ଢାଇ ପକାଇଲା ପ୍ରତାପ । ଅଳ୍ପ ଦୂରରେ ହସ ହସ ମୁହଁରେ ବାପା ମା' ଠିଆହୋଇ ଯେ ସବୁ କଥାବାର୍ତ୍ତା ଶୁଣୁଛନ୍ତି, ସେକଥା ଭୁଲିଗଲା । 'ଦେଖିଲ, ଦେଖିଲ ଜାନ୍, ସବୁ ଠିକ୍ ହୋଇଗଲା । . . .ମୁଁ ଜାଣିଥିଲି ଦିନେ ନା ଦିନେ ସବୁ ଠିକ୍ ହୋଇଯିବ ।'

ସ୍ପିକର୍ ଫୋନ୍‌ରେ ଦିବାକରର ଓ ପ୍ରତାପର କଥା ଶୁଣିଥିବା ଶବ୍‌ନମ୍ ପଥର ଭଳି ବସି ରହିଲା କେବଳ । ପ୍ରତାପର ଆଲିଙ୍ଗନ ସ୍ପର୍ଶ କରି ପାରିଲା ନାହିଁ ତାକୁ । ମୁହଁ ଉପରୁ ଚିନ୍ତାର କାଳିମା ଘୁଞ୍ଚିଲା ନାହିଁ ।

'କ'ଣ ହେଲା, ଶବ୍‌ନମ୍ ? ତୁମେ ଖୁସି ନୁହଁ ?' ପ୍ରତାପ ଆଶ୍ଚର୍ଯ୍ୟରେ ପଚାରିଲା । ହଠାତ୍ କରି ସବୁ ଆନନ୍ଦ ଆଞ୍ଜୁଳିରେ ଅଜାଡି ହୋଇଗଲେ ଜଣେ ମଣିଷ ଓଠର ହସ ଓ କଥା କ'ଣ ଏଇମିତି ହଜିଯାଏ ?

'ଆଉ ଶକ୍ତି ନାହିଁ, ପ୍ରତାପ ।' ଧୀରେ ଧୀରେ କହିଥିଲା ଶବ୍‌ନମ୍ ।

ପ୍ରତାପ ଅବାକ୍ । 'ଶକ୍ତି କ'ଣ ପାଇଁ ?'

'ଗତ ସାତ ବର୍ଷ ଧରି ଆମ ଉପର ଦେଇ ଯାହା ଯାଇଛି, ସେସବୁ ପୁଣି ଥରେ ମୂଳରୁ ଆରମ୍ଭ କରିବାର ଶକ୍ତି ଆଉ ନାହିଁ ।'

'ମାନେ ?' ପ୍ରତାପ ସତରେ କିଛି ବୁଝୁ ନ ଥିଲା ।

କ୍ଷୀଣ ହସ ହସିଲା ଶବ୍‌ନମ୍ । 'ଭାରତ ପର୍ବ ଶେଷ ହେଲା । ଏବେ ଆରମ୍ଭ ହେବ ବାଙ୍ଗଲାଦେଶ ପର୍ବ । ସେଇ କରପ୍‌ସନ୍, ସେଇ ରେଡ୍ ଟେପିଜିମ୍ । ହୁଏତ ଆଉ ଟିକିଏ ଅଧିକ । ମୁଁ ଯେ ଜଣେ ହିନ୍ଦୁ ଭାରତୀୟକୁ ବାହା ହୋଇଛି ! . . . ପୁଣି ଚାଲିବ ଏ ଅଫିସ୍‌ରୁ ସେ ଅଫିସ୍‌କୁ ଦୌଡାଦୌଡି । ୟାକୁ ଅନୁରୋଧ କର । ତାକୁ କିଛି ହାତଗୁଞ୍ଜା ଦିଅ । ଅପେକ୍ଷା କର ।. . . ଭାରତରେ ସାତବର୍ଷ ଲାଗିଗଲା । ବାଙ୍ଗଲାଦେଶରେ ଯେ କେତେ ବର୍ଷ ଲାଗିଯିବ, ସେକଥା କିଏ ଜାଣେ ? ଗତ ସାତବର୍ଷ ଧରି ମୁଁ ବାଙ୍ଗଲାଦେଶ ଯାଇପାରିନି । ଏବେ ବାଙ୍ଗଲାଦେଶ ଗଲେ କେତେବର୍ଷ ପାଇଁ ଯେ ଭାରତ ଆସିପାରିବିନି, ସେକଥା କେହି କହି ପାରିବେନି ।'

ପ୍ରତାପ ମୁହଁରୁ ସବୁ ଆନନ୍ଦ ପୋଛି ହୋଇଗଲା । ଏ ସମ୍ଭାବନା କଥା ତା' ମନକୁ ଆସିନି । ଚୁପ୍ ହୋଇ ଶବ୍‌ନମ୍ ପାଖରେ ସେ ବସିଗଲା । କବାଟ ପାଖରୁ ଘୁଞ୍ଚିଗଲେ ତା' ବାପା ମା' ।

ସେ ରାତିରେ ଖିଆପିଆ ହେଲା । ଡେରିରେ ହେଉପଛକେ ଶୋଇବାକୁ ଗଲେ ସମସ୍ତେ । ଦୁଇ ବନ୍ଦ କୋଠରୀର ଚାରି କାନ୍ଥ ଭିତରେ ଚାରିଜଣ ମଣିଷଙ୍କୁ ନିଦ ହେଲା କି ନାହିଁ, ତା' ଭିନ୍ନ କଥା । କିନ୍ତୁ ରୁଟିନ୍ ବଜାୟ ରହିଥିଲା ।

ପରଦିନ ରବିବାର । ଅଫିସ୍ ନଥିବା ଦିନରେ ଟିକିଏ ଡେରିରେ ଉଠନ୍ତି ପ୍ରତାପ, ଶବ୍‌ନମ୍ । ସେଦିନ ପୁଣି ପୂର୍ବ ରାତିର ଅନିଦ୍ରାଗତ କ୍ଳାନ୍ତି ଯୋଡି ହୋଇ-ଯାଇଥିଲା । କିନ୍ତୁ ତଥାପି ଭୋର୍‌ରୁ ଭୋର୍‌ରୁ ଉଠିଗଲେ ସେମାନେ । ପ୍ରାୟ ନିସ୍ତବ୍ଧ ଭାବରେ କବାଟ ଖୋଲି ବାହାରକୁ ଆସିବା ମାତ୍ରକେ ସେମାନେ ଦେଖିଲେ ଯେ ପ୍ରତାପର ବାପା ମା' ଉଠି ସାରିଛନ୍ତି ।

'ଏତେ ସକାଳୁ ଉଠି ଯାଇଛ ! ମର୍ଣ୍ଣିଙ୍ଗ୍ ୱାକ୍‌ରେ ଯିବ ?' ପ୍ରତାପ ସ୍ୱରରେ ସ୍ୱାଭାବିକତା ଆଣି କହିଲା ।

ଏକଥାର କୌଣସି ଉତ୍ତର ନଦେଇ ପ୍ରତାପ ମା' ଶୁଖିଲା ସ୍ୱରରେ କହିଲେ, 'ତୁମେମାନେ ଏଠୁ ପଳାଅ । ଶୀଘ୍ର ପଳାଅ ।'

'ପଳେଇବୁ ! କୁଆଡେ ?' ଶବ୍‌ନମ୍ ମୁହଁକୁ ଚାହିଁଲା ପ୍ରତାପ । ବାପା ମା'ଙ୍କର କୌଣସି ବ୍ୟକ୍ତିଗତ ଆଲୋଚନାରେ ହଠାତ୍ ଆସି ପହଞ୍ଚି ଯାଇଛନ୍ତି କି ସେମାନେ ?

ଏଥରକ କଥା ପରିଷ୍କାର କଲେ ପ୍ରତାପର ବାପା । 'ଚାଲିଯାଅ, ପ୍ରତାପ । ତୁ ଆଉ ଶବ୍‌ନମ୍ ଭାରତ ଛାଡି ଚାଲିଯାଅ ।'

'କ'ଣ କହୁଛ, ବାପା !!'

'ତୁ କହୁଥିଲୁ ଯେ ଲଣ୍ଡନ୍‌ର କୋଉ ଗୋଟିଏ କମ୍ପାନୀ ତତେ ଭଲ ଚାକିରିଟିଏ ଅଫର୍ କରିଛି ।'

'ହଁ । କିନ୍ତୁ ମୁଁ ସେମାନଙ୍କୁ ମନା କରି ଦେବା କଥା ଭାବିଛି । ତୁମେ ତ ଜାଣ ଆମେ ଭାରତ ବାହାରକୁ ଯିବାକୁ ଚାହୁଁନୁ । ଯିବା କଥା ହୋଇଥିଲେ କେବେଠୁଁ ଯାଇ ସାରନ୍ତୁଣି । ତା'ଛଡା ମୁଁ ତୁମମାନଙ୍କଠୁଁ ଏତେ ଦୂରକୁ ଯିବିନି । ଏଇ କଲିକତା ଭଲ । ବାଲେଶ୍ୱର ପାଖ । ଢାକା ବି ବେଶୀ ଦୂର ନୁହଁ ।'

ପ୍ରତାପ ମା' ଅନ୍ୟମନସ୍କ ହୋଇଗଲେ । ପୁଅକୁ ସବୁଦିନେ କାନିରେ ବାନ୍ଧି ରଖିବାକୁ ଚାହିଁଥିଲେ ସେ । କେତେ କଷ୍ଟରେ ଯେ ଆଇ.ଆଇ.ଟି'ରେ ପଢିବା-

ପାଇଁ ଛାଡିଥିଲେ, ସେ କଥା ସେ ଜାଣନ୍ତି । ବାଲେଶ୍ୱରରୁ ଖଡଗ୍‌ପୁର୍ ମାତ୍ର କେଇ ଘଣ୍ଟାର ବାଟ । ଅଥଚ ମନେ ହୋଇଥିଲା ଯେମିତି ଯୋଜନ ଯୋଜନ ଦୂରକୁ ଚାଲି ଯାଉଛି ପୁଅ । ବାହାଘର ପରେ ପୁଅ ସାଙ୍ଗରେ ବେଶୀ ଦେଖା ହୁଏନି ତାଙ୍କର । କିନ୍ତୁ ବିରାଟ ଭରସା, ପାଖରେ ଅଛି । ଦରକାର ପଡିଲେ ଧାଇଁ ଆସିବ ।

ଏବେ ସେଇ ପୁଅକୁ ଅନ୍ୟ ଗୋଟିଏ ମହାଦେଶକୁ ଚାଲି ଯିବା କଥା କହିବାକୁ ହେଉଛି ! ଦେଶାନ୍ତର ହେବା ପାଇଁ ଉପଦେଶ ଦେବାକୁ ହେଉଛି !

'ନାଇଁ ମା', ନାଇଁ ବାପା, ହେଇ ପାରିବନି । ଆମେ ତୁମମାନଙ୍କୁ ଛାଡି ଏତେ ଦୂର ଯାଇ ପାରିବୁନି ।' ପ୍ରତାପ ଆଉ ଥରେ କହିଲା ।

'ଯିବାକୁ ହେବ, ପ୍ରତାପ । ... ଏବଂ ଇଂଲାଣ୍ଡର ନାଗରିକତ୍ୱ ପାଇବା ପାଇଁ ଚେଷ୍ଟା କରିବାକୁ ହେବ । ଥରେ ସେ ଦେଶର ନାଗରିକ ହୋଇଗଲେ ଆଉ ତ ତୁମ ଦୁଇ ଜଣଙ୍କର ଦେଶକୁ ଆସିବାରେ ବାଧା ରହିବ ନାହିଁ ! ... ହଁ, ଭିସା ଲାଗିବ ଅବଶ୍ୟ ...' ବାପାଙ୍କ ଗଳା ଧରି ଆସିଲା । ଗଳା ଝାଡି ନେଇ ସେ ଯୋଡିଲେ, 'ମୁଁ କାଲିଠୁଁ ଏ ବିଷୟରେ ଭାବି ହେଉଛି । ଆମ ସାମ୍ନାରେ ଏଇ ଏକମାତ୍ର ରାସ୍ତା ।'

ଏ ରାସ୍ତା ବି ଅନିଶ୍ଚିତତାର, କିନ୍ତୁ ସମ୍ଭାବନାମୟ ।

ଶବ୍‌ନମ୍ ଜାଣେ ଲଣ୍ଡନ୍ ଚାଲିଗଲେ ତା'ର ମଧ ଭଲ ଦରମାର ଚାକିରିଟିଏ ହେଇଯିବ । ତା'ଭଳି ବୁଦ୍ଧିଜୀବୀମାନଙ୍କର ପାଶ୍ଚାତ୍ୟ ଦେଶମାନଙ୍କରେ ବହୁତ ଆଦର ।

ହେଲେ ତା' ଦେହରେ ଯେଉଁ ବିଦେଶିନୀର ମୋହର ଗତ ଏଗାର ବର୍ଷ ଧରି ଭାରତରେ ଲାଗି ରହିଥିଲା, ସେଇଟି ଯେ ସ୍ଥାୟୀ ଭାବରେ ଖୋଦେଇ ହୋଇଯିବ ! ତା'ର ପ୍ରତିଛାୟା ପୁଣି ପଡିଯିବ ପ୍ରତାପ ଉପରେ । ନିଜ ଦେଶରେ ବିଦେଶୀ ହୋଇଯିବ ପ୍ରତାପ ।



# ଅସବର୍ଣ୍ଣ

ନଭେମ୍ବର ଆରମ୍ଭ ହୋଇଗଲା । ଅନ୍ୟାନ୍ୟ ବର୍ଷ ଏତେ ବେଳକୁ ବେଶ୍ ଥଣ୍ଡା-ପଡିସାରିଥାଏ । ଉଲ୍‌ର ଲମ୍ବା କୋଟ୍ ନହେଲେ ବି ସ୍ୱେଟର୍ ମଫଲର୍ ବିନା ଘର ବାହାରେ ପାଦଦେବା କଥା ଭାବିହୁଏ ନାହିଁ । ହେଲେ ଏବର୍ଷ ଥଣ୍ଡା କାହିଁ ? ଫୁଟ୍‌ପାଥରେ ଛୋଟ ଛୋଟ ପାଦ ପକାଇ ଚାଲୁ ଚାଲୁ ଜେନିଫର୍ ଆଶ୍ଚର୍ଯ୍ୟ ହେଲା । ଭୋର୍‌ରୁ ଉଠି ତିନି ଚାରି ମାଇଲ୍ ଚାଲିବା ତାର ବହୁ ପୁରୁଣା ଅଭ୍ୟାସ । ତେବେ ଶୀତଦିନରେ ତା' ସମ୍ଭବ ହୁଏ ନାହିଁ । ଫୁଟ୍‌ପାଥ୍‌ରେ ଯେତେବେଳେ ବରଫ ଗଦା ହୋଇଯାଏ, ସ୍ୱେଟର୍, ଜ୍ୟାକେଟ୍, ଉଲ୍‌ର୍ ସ୍କାର୍ଫ ଦେଇ ଦେହ ଭିତରେ ଯେତେବେଳେ ଥଣ୍ଡା ପବନ କଣ୍ଟାଭଳି ଗଳିଯାଏ, ସେତେବେଳେ କ'ଣ ଚାଲି ହୁଏ ? ସେଥିପାଇଁ ସବୁ ବର୍ଷ ଶୀତ ଦିନେ ଜିମ୍‌ନାସିୟମ୍‌ର ମେମ୍ବର୍‌ଶିପ୍ ନେଇଯାଏ ସେ । ତେବେ ଏ ବର୍ଷ କଥା ଅଲଗା । ଏ ବର୍ଷ ସେ ଜିମ୍‌ନାସିୟମ୍‌ର ମେମ୍ବର୍‌ଶିପ୍ ନେଇ ନାହିଁ । ଡାକ୍ତର ସାବଧାନ କରେଇ ଦେଇଛନ୍ତି ।

ଜେନିଫର୍ ଗୁଣୁ ଗୁଣୁ ହେଇ ଗୀତ ଗାଇବାକୁ ଲାଗିଲା । ଏତେ ସୁନ୍ଦର ସକାଳ ! ଡାକ୍ତରଙ୍କ କଥା ମନେପକାଇ ସେ ମୁହଁ ଶୁଖାଇବ ନାହିଁ । ନିଜର ଅସୁସ୍ଥତା ନେଇ ଜମା ମନ ଖରାପ କରିବ ନାହିଁ । ବାଁ ପଟକୁ ବୁଲିଗଲା ଜେନିଫର୍ । ସେପଟେ ବଡ ରାସ୍ତା । ରାସ୍ତା ଟପିଗଲେ ପାର୍କ୍ । ପାର୍କ୍‌କୁ ଯାଇ କିଛି ସମୟ ବେଞ୍ଚରେ ବସିଲେ ଭଲ ଲାଗିବ । ସକାଳକୁ ଉପଭୋଗ କରିହେବ । ଗତ ଆଠ ଦିନ ଧରି ସେ ଯେ ଘରୁ ବାହାରି ପାରି ନାହିଁ ।

ଓଃ, କାହିଁ ହଜିଗଲା ସକାଳର ସ୍ନିଗ୍ଧତା ? ପାଟିକରି ରାସ୍ତା ଓ ପାର୍କ୍‌ର ଗେଟ୍ ମଝିଆ ମଝିରେ ଖେଳୁଛନ୍ତି ଦଳେ ପିଲା । ରାସ୍ତା କଡରେ ସ୍ଥିର ଭାବରେ ଠିଆହୋଇ ସ୍କୁଲ୍ ବସ୍ ପାଇଁ ଅପେକ୍ଷା କରିବାର ଧୈର୍ଯ୍ୟ ବୋଧହୁଏ ନାହିଁ ସେମାନଙ୍କର । କିଏ ଜାଣେ, ହୁଏତ ଜାଣି ଜାଣି ଘରୁ ଶୀଘ୍ର ବାହାରି ଆସିଛନ୍ତି ଏମିତି ଖେଳିବେ ବୋଲି । ଆଉ ସେମାନଙ୍କୁ ଘରୁ ବିଦା କରିଦେଇ ବାପା ମା' ମାନେ ନିଶ୍ଚିନ୍ତ ।

ଜେନିଫର୍ ମନେ ମନେ ଭୀଷଣ ବିରକ୍ତ ହେଲା । ପନ୍ଦର ବର୍ଷ ତଳେ ତା' ବାପା ଯେତେବେଳେ ଏ ଅଞ୍ଚଳରେ ଘର କିଣିଥିଲେ, ସେତେବେଳେ ମାତ୍ର ଅଳ୍ପ କେତୋଟି ଘର ଥିଲା ଏଠି । ଆଉ ଅଧିକାଂଶ ଘର କିଣିଥିଲେ ସେମାନଙ୍କ ଭଳି ଆଇରିଶ୍ ଆମେରିକାନ୍‌ମାନେ । ଦୁଇ ତିନୋଟି ଜର୍ମାନ୍ ପରିବାର ଅବଶ୍ୟ ଥିଲେ ସେଇଠି । ଗୋଟାଏ ଫରାସୀ ପରିବାର ବି । କିନ୍ତୁ ସମସ୍ତଙ୍କ ଭିତରେ ଧଳା-ସଂସ୍କୃତିର ଅଦୃଶ୍ୟ ବନ୍ଧନଟିଏ ରହିଥିଲା ।

କୁଆଡେ ହଜିଗଲା ସେଦିନ ସବୁ ? ଗତ ସାତଆଠ ବର୍ଷ ଭିତରେ ଏ ଛୋଟ ସହରର ରୂପରେଖ ଯେମିତି ବଦଳିଗଲା । ଜଣେ ବିଲ୍‌ଡର୍ ଖାଲି ପଡିଥିବା କେଇ ଶହ ଏକର ଜମି କିଣିନେଲା । ଆଉ ସେଠି ଏକାଭଳି ଧଳାରଙ୍ଗର ଘରମାନ ମୁଣ୍ଡ-ଟେକିବାକୁ ଲାଗିଲା । ଧଳା କାନ୍ଥ । ଛାତଟା ଆକାଶୀ । ସାମ୍ନାରେ ଛୋଟ କିନ୍ତୁ ସୁନ୍ଦର ବଗିଚା । ଫୁଲ ଫୁଟିଲେ ଲୋଭନୀୟ ହୋଇ ଉଠିବ ।

ଦିନେ ଜେନିଫର୍‌ର ବାପା ମା' ଯାଇ ବୁଲିଆସିଲେ । ନିଜର ପୁରୁଣା ଘରଟାର ତିଆରି ଭଲ ନୁହଁ । ସବୁଦିନ କିଛି ନା କିଛି ସମସ୍ୟା ବାହାରୁଛି । ଯଦି ସେଇ ଘରଟା ବିକ୍ରି କରିଦେଇ ନୂଆ ଧଳା ଘରରୁ ଗୋଟାଏ କିଣି ହୁଅନ୍ତା. . .

ହେଲେ ସେମାନେ ଫେରିଲେ ନିରାଶ ହେଇ । ଏତେ ବେଶୀ ଦାମ୍ ! ପନ୍ଦର ବର୍ଷ ଭିତରେ ମାଟିର ମୂଲ୍ୟ ଯେମିତି ସୁନା ହେଇଯାଇଛି । ଘରଗୁଡିକ କିନ୍ତୁ ଅବିକ୍ରି ରହିଲାନାହିଁ । ନୂଆ ନୂଆ ପରିବାରମାନ ସେଠି ରହିବାକୁ ଲାଗିଲେ । ଘର ବିକ୍ରି କରିବା ବେଳେ ବିଲ୍‌ଡର୍ ଜଣକ କ୍ରେତାର ପକେଟ୍‌ରେ ଓଜନ ମାପିଲା, ଦେହର ରଙ୍ଗ ଉପରେ ଆଖି ପକେଇଲା ନାହିଁ । ଯାହା ହୁଏ ଏମିତି କଲେ ! ଦେଖୁ ଦେଖୁ ଧଳାମାନେ ସଂଖ୍ୟା-ନଗଣ୍ୟ ହୋଇଗଲେ ଏଠି । ଅଧିକାଂଶ ଘର କିଣି ନେଲେ କଳା, ହିସ୍‌ପାନିକ୍, ଚାଇନିଜ୍ ଆଉ କେଇଟା ପାକିସ୍ତାନୀ ପରିବାର ।

ପରିବେଶଟା ଜେନିଫର୍‌ର ବାପାଙ୍କର ଆଦୌ ପସନ୍ଦ ହେଲା ନାହିଁ । ସେ ସବୁବେଳେ ସହର ବଦଳେଇ ଦେବା କଥା କହି ହେଉଥିଲେ । ସଂଖ୍ୟାଗରିଷ୍ଠ ଧଳା ପରିବାରର ଅଞ୍ଚଳ ଯେ ନ ଥିଲା, ତା' ନୁହଁ । କିନ୍ତୁ ଅସୁବିଧା ସେଇ ଏକା । ଅର୍ଥ । ପାଞ୍ଚଟା ପିଲା ମଣିଷ କରୁ କରୁ ଜଣେ ପୋଲିସ୍ ଅଫିସର୍‌ର ଦରମା ଶେଷ ହୋଇଯାଉଥିଲା । କି ଭରସାରେ ସେ ବ୍ୟାଙ୍କ୍‌ରୁ ଟଙ୍କା ଧାର ନେଇ ନୂଆ ଘର କିଣିଥାଆନ୍ତେ ? ଅଗତ୍ୟା ଛାତ ମରାମତ କରି, ପାଣି ପାଇପ୍ ବଦଳେଇ, ଘର ରଙ୍ଗ କରି ସେଇଠି ରହିବାକୁ ପଡିଲା ସେମାନଙ୍କୁ ।

ସବୁ ଚାଲିଥିଲା ଏକା ରକମ । ହେଲେ ଚାରି ବର୍ଷ ତଳେ ଆଖି ନିମିଷକରେ ସବୁ ଯେମିତି ବଦଳିଗଲା । ଗୋଟାଏ ଦୁର୍ଘଟଣାରେ ଗୁରୁତର ଭାବରେ ଆଘାତ ପାଇ ତିନିମାସ ହସ୍‌ପିଟାଲ୍‌ରେ ପଡିବା ପରେ ହଠାତ୍ ତା' ବାପାଙ୍କର ମୃତ୍ୟୁ ହୋଇଗଲା । ବାପା ସେତେବେଳେ ଅବସର ନେଇସାରିଛନ୍ତି । ଯଦିଓ ପୋଲିସ୍ ଡିପାର୍ଟ୍‌ମେଣ୍ଟର ଦାୟିତ୍ୱ ସୀମିତ, ତଥାପି ବହୁରକମର ସାହାଯ୍ୟ ମିଳିଲା । ତା' ସତ୍ତ୍ୱେ ଘରେ ଥାକ ଥାକ ମେଡିକାଲ୍ ବିଲ୍ ଜମା ହେଇଗଲା । ଜେନିଫର୍‌ର ମା' ଭାବିଥିଲେ ଯେ ତାଙ୍କର ବଡ ଚାରି ପୁଅ ଝିଅ ପାଖରେ ଆସି ଠିଆହେବେ । ସବୁ ଦାୟିତ୍ୱ ବାଣ୍ଟିନେବେ । ଜେନିଫର୍‌ଠୁଁ ବହୁତ ବଡ ସେମାନେ । ସେତେବେଳକୁ କଲେଜ ପାଠ ଶେଷ କରି ଭଲ ଭଲ ଚାକିରି କରୁଥିଲେ । ବଡ ତିନିଜଣ ତ ବାହା ବି ହେଇସାରିଥିଲେ । କିନ୍ତୁ ସେମାନେ ଉପର ଠାଉରିଆ କେବଳ ସମବେଦନା ଜଣେଇ, ଦୁଇଚାରି ଟୋପା ଲୁହ ଝରେଇ ଚାଲିଗଲେ । ଏକା ଘରେ ଏକା ଭାବରେ ବଡ ହୋଇଥିବା ମଣିଷମାନେ କେମିତି ଯେ ଏତେ ସ୍ୱାର୍ଥପର ହୋଇଗଲେ, ସେକଥା ଚିନ୍ତାକରି ଆଶ୍ଚର୍ଯ୍ୟ ହୋଇଥିଲା ଜେନିଫର୍ । କିନ୍ତୁ ଜୋର୍ ଦେଇ କିଛି କହିବା ତା' ପକ୍ଷରେ ସମ୍ଭବ ନଥିଲା । ମାଙ୍କର ମୁହଁ ଆଉ ଟିକିଏ ଶୁଖିଗଲା, କପାଳର ବଳିରେଖା ଆଉ ଟିକିଏ ଗଭୀର ହେଲା । ହେଲେ କାହାକୁ କିଛି କହିଲେ ନାହିଁ ତା' ମା' ।

ଜେନିଫର୍ ସେତେବେଳେ ସ୍କୁଲ୍ ପାଠ ଠିକ୍ ଶେଷ କରିଛି । ପାଖ କ୍ୟାଫେରେ ନିୟମିତ କାମ କରି ନିଜ ପକେଟ୍ ମନିର ବ୍ୟବସ୍ଥା ମଧ୍ୟ କରିଛି । କିନ୍ତୁ ସେତିକରେ ତ ଘର ଆଉ ଚଳି ନ ଥାଆନ୍ତା ।

'ମୁଁ ଚାକିରି କରିବି, ମା' । ଫୁଲ୍ ଟାଇମ୍ ଚାକିରି କଲେ. . .'

'ନା ।' ମା' ତାକୁ କଥା ଶେଷ କରିବାକୁ ଦେଇ ନ ଥିଲେ । 'ତୁ କଲେଜ ଯିବୁ । ତୋ' ବାପାଙ୍କ ଆତ୍ମା ନହେଲେ ଶାନ୍ତି ପାଇବ ନାହିଁ ।'

ଜେନିଫର୍‌ର ଯେ ଇଚ୍ଛା ନ ଥିଲା, ତା' ନୁହଁ । ସେ ତ କେବେଠାରୁ ଭାବି-ରଖିଥିଲା ଯେ ହାଇସ୍କୁଲ୍ ପରେ ଭଲ କଲେଜରେ ପଢିବ । ଦୁଇଟା କଲେଜ୍‌ରୁ ତାକୁ ଆଡ୍‌ମିସନ୍ ପାଇଁ ଚିଠି ମଧ୍ୟ ଆସି ଯାଇଥିଲା । ସେମାନେ ଜଣେଇଥିଲେ ଯେ କିଛିଟା ଆର୍ଥିକ ସାହାଯ୍ୟ ବି ସେ ପାଇବ । କିନ୍ତୁ ବାକୀ ଅର୍ଥର ବ୍ୟବସ୍ଥା କିଏ କରିଥାଆନ୍ତା ? ପଢା ଲୋନ୍ ନେବା ପାଇଁ ସାହସ କରି ପାରିଲା ନାହିଁ ଜେନିଫର୍ । ଅଗତ୍ୟା ଘର ପାଖ କମ୍ୟୁନିଟି କଲେଜରେ ସେ ନାଁ ଲେଖାଇଲା । ଆଗ ଭଳି ସନ୍ଧ୍ୟା ବେଳେ, ଛୁଟି ଦିନରେ କ୍ୟାଫେରେ କାମ କରି ଚାଲିଲା । ଶନି ରବି – ଦୁଇ ଦିନ ବି ବାଦ୍ ଦେଲା ନାହିଁ ।

କିନ୍ତୁ ବାପାଙ୍କର ବାକୀ ପଡିଥିବା ହସ୍‌ପିଟାଲ୍ ବିଲ୍‌ର କୌଣସି ବ୍ୟବସ୍ଥା କରି ହେଲାନାହିଁ । ସାଧାରଣ ଘରଖର୍ଚ୍ଚ କରିବା ଆଗରୁ କେଇ ଥର ଭାବିବାକୁ ହେଲା । କେବେ ଚାକିରି କରିନଥିବା ମା' ଏଥର ଘର ବାହାରେ ପାଦ ରଖିଲେ ।

ମା' ଝିଅଙ୍କର ଅକ୍ଲାନ୍ତ ପରିଶ୍ରମରେ ସବୁ ଋଣ ଦିନେ ସୁଝିଲା । ଜେନିଫର୍ ସ୍ୱସ୍ତିର ନିଶ୍ୱାସ ନେଇଥିଲା । ତା'ଠୁଁ ଅଧିକ ଆଶ୍ୱସ୍ତ ହୋଇଥିଲେ ତା' ମା' । କିନ୍ତୁ ଏ ଋଣମୁକ୍ତ ସମୟ ଯେ ନିହାତି କ୍ଷଣସ୍ଥାୟୀ, ତା' କ'ଣ ସେମାନେ ଜାଣିଥିଲେ ?

ଜେନିଫର୍ ଅସୁସ୍ଥ ରହିବାକୁ ଲାଗିଲା । ମା'ଙ୍କର ମନେହୋଇଥିଲା ଯେ ଅତ୍ୟଧିକ ପରିଶ୍ରମରୁ ଏ ଅସୁସ୍ଥତା । ସେ ବାଧକରେଇ ଜେନିଫର୍‌ର କ୍ୟାଫେରେ କାମ କରିବା ବନ୍ଦ କରେଇଦେଲେ । ତଥାପି କୌଣସି ଶାରୀରିକ ଉନ୍ନତି ନାହିଁ । ଦିନେ ଜେନିଫର୍‌କୁ ଡାକ୍ତର ପାଖକୁ ନେଇଗଲେ ମା' । ପାରିବାରିକ ଡାକ୍ତର ତା' ଦେହରେ କି ଲକ୍ଷଣ ଦେଖିଲେ କେଜାଣି ତାକୁ ଜଣେ ନେଫ୍ରୋଲୋଜିଷ୍ଟଙ୍କ ପରାମର୍ଶ ନେବାକୁ ଉପଦେଶ ଦେଲେ । ବାସ୍ – ତା'ପରେ ଆରମ୍ଭ ହୋଇଗଲା ହସ୍‌ପିଟାଲ୍, ଡାକ୍ତର, ପରୀକ୍ଷା ନିରୀକ୍ଷାର ଚକାଭଉଁରୀ । କଡା କଡା ଔଷଧ ଖାଇବାକୁ ହେଲା ତାକୁ । ତଥାପି ନିସ୍ତାର ନାହିଁ । ଏଣେ କଲେଜ ବନ୍ଦ ହୋଇଗଲା । ପୁଣି ଗଦା ହେବାକୁ ଲାଗିଲା ମେଡିକାଲ୍ ବିଲ୍ । ମା'ଙ୍କ ଆଖି ତଳ କଳା ଦାଗଟା ଆଉ ଟିକିଏ ଅଧିକ ଗଭୀର ହେଲା ।

ଶେଷରେ ଡାକ୍ତରମାନେ ଏକମତ ହେଲେ ଯେ ଜେନିଫର୍‌ର କିଡ୍‌ନିରେ ବଡ ଗୋଳମାଳଟିଏ ଅଛି । ଔଷଧ ଖାଇ ଖାଇ ହୁଏତ ଭଲ ହୋଇଯାଇପାରେ । ନ ବି ହୋଇପାରେ ।

ଏଇମିତି ଚାଲିଗଲା ଗୋଟାଏ ବର୍ଷ । ହଠାତ୍ ଦିନେ ଜେନିଫର୍‌ର କିଡ୍‌ନି ପୁରାପୁରି ନଷ୍ଟ ହୋଇଗଲା । ଡାକ୍ତର କହିଲେ ଯେ ଯେମିତି ଇନ୍‌ଫେକ୍‌ସନ୍ ଆରମ୍ଭ ହୋଇଛି, ସେଥିରେ ଅନ୍ୟ କିଡ୍‌ନିକୁ ଘଣ୍ଟ ଘୋଡେଇ ବେଶୀ ଦିନ ରଖି ହେବ ନାହିଁ । ଶୀଘ୍ର ସେଇଟା ବି ଅକାମୀ ହୋଇଯିବ । ଉପାୟ କେବଳ ଗୋଟାଏ । କିଡ୍‌ନି ଟ୍ରାନ୍‌ସ୍‌ପ୍ଲାଣ୍ଟ କରେଇବାକୁ ହେବ ।

ଖର୍ଚ୍ଚ ତ ବିରାଟ । କିନ୍ତୁ ସବୁଠାରୁ ବଡ ସମସ୍ୟା କିଡ୍‌ନି ମିଳିବ କେଉଁଠୁ ? ବିନାଦ୍ୱିଧାରେ ଜେନିଫର୍‌ର ମା' ଡାକ୍ତରଙ୍କୁ କହିଲେ ତାଙ୍କର ଗୋଟାଏ କିଡ୍‌ନି ଝିଅକୁ ଦେଇ ଦେବାକୁ । କିନ୍ତୁ ରାଜି ହେଲେ ନାହିଁ ଡାକ୍ତର । ଜେନିଫର୍ ମା'ଙ୍କର ଭୀଷଣ ଦୁର୍ବଳ ଶରୀର । ପୁଣି ଆନିମିଆ, ଲୋ-ବ୍ଲଡ୍-ପ୍ରେସର୍‌ରେ ଭୋଗି ଚାଲିଛନ୍ତି ସେ । କିଡ୍‌ନି ଟ୍ରାନ୍‌ସ୍‌ପ୍ଲାଣ୍ଟ ଭଳି ବିରାଟ ସର୍ଜରୀ ତାଙ୍କ ଦେହ ନେଇ ପାରିବ ନାହିଁ ।

ତା'ହେଲେ ?

ତା'ହେଲେ ଅପେକ୍ଷା କରିବାକୁ ହେବ । ହସ୍‌ପିଟାଲ୍ ଲିଷ୍ଟରେ ଏବେ ବି ଅନେକ ରୋଗୀ ଆଶା ନେଇ ଅପେକ୍ଷା କରିଛନ୍ତି । ବ୍ରେନ୍ ଡେଡ୍ କୌଣସି ରୋଗୀର କିଡ୍‌ନି ମିଳିଲେ ତା'ପରେ ଯାଇ ଟ୍ରାନ୍‌ସ୍‌ପ୍ଲାଣ୍ଟ କରିବାକୁ ହେବ । ବ୍ଲଡ ଗ୍ରୁପ୍ ମ୍ୟାଚ୍ କରିବା କଥା ବି ରହିଛି । ସେତିକି ଦିନ ପାଇଁ ନିୟମିତ ଭାବରେ ଡାଏଲିସିସ୍ କରେଇ ଜେନିଫରକୁ ଅପେକ୍ଷା କରିବାକୁ ହେବ । ଉପାୟ ନାହିଁ । ଯଦି ଭାଇ ଭଉଣୀଙ୍କ ଭିତରୁ କିଏ କିଡ୍‌ନି ଦେଇ ଥାଆନ୍ତା, ତା'ହେଲେ ଅଲଗା କଥା । କିନ୍ତୁ ମେଡିକାଲ୍ ବିଲ୍ ସୁଝିବା ଭୟରେ ଯେଉଁମାନେ ଦୂରେଇ ଗଲେ, ସେମାନେ ପୁଣି ସର୍ଜରୀ କରେଇ ସାନ ଭଉଣୀକୁ କିଡ୍‌ନି ଦେବେ ?

ଡାକ୍ତରଙ୍କ ପରାମର୍ଶ ଅନୁସାରେ ଚଳିବାକୁ ଲାଗିଲା ଜେନିଫର୍ । କଡା ଔଷଧର ପ୍ରଭାବ, ଡାଏଲିସିସ୍‌ର ଅସ୍ୱସ୍ତି, ଘରର ଚାରି କାନ୍ଥ ଭିତରେ ପ୍ରାୟ ବନ୍ଦୀ ଜୀବନ – ଏସବୁ ଦେହସୁହା ହେଇଗଲା । ତଥାପି ବାଇଶ ବର୍ଷର ମନଟା ବେଳେ ବେଳେ ବିଦ୍ରୋହ କରିଉଠେ । ସଂସାର ବିଷମୟ ମନେ ହୁଏ । ସୁନ୍ଦର ସକାଳ ଅସୁନ୍ଦର ହୋଇଯାଏ । ପିଲାମାନଙ୍କର ଖେଳ, ପାଟିତୁଣ୍ଡ ଅସ୍ୱସ୍ତିକର ମନେହୁଏ ।

ବସ୍ ଆସିଗଲା । ଚାଲିଗଲେ ପିଲାମାନେ । ତଥାପି ଜେନିଫର୍ ପାର୍କ ବେଞ୍ଚରେ ବେଶୀ ସମୟ ବସିପାରିଲା ନାହିଁ । ଦେହ ଦୁର୍ବଳ ଲାଗୁଛି । ମୁଣ୍ଡଟା ବି ଘୂରେଇ ଯାଉଛି ରହି ରହି । ଘରକୁ ଫେରିବା ପାଇଁ ସେ ପାଦ ବଢାଇଲା ।

ତାକୁ ଯେ ଦୂରରୁ ଦୁଇଜଣ ଲକ୍ଷ୍ୟ କରୁଛନ୍ତି, ସେକଥା ସେ ଜାଣିନଥିଲା । ରୋଷେଇ ଘରେ ପଡିଥିବା ଛୋଟ ଟେବୁଲ୍‌ର ଦୁଇ ପାଖରେ ବସି ଜେନିଫରକୁ ଦେଖୁଥିଲେ ନାତାଲି ଆଉ ମାଇକେଲ୍ ।

'କିଏ ଏ ଝିଅ, ନାତାଲି ?' ମାଇକେଲ୍ ସ୍ତ୍ରୀକୁ ପଚାରିଲା । 'ମୁଁ ମଝିରେ ମଝିରେ ତାକୁ ଦେଖେ ସକାଳୁ ।'

ନାତାଲି ଉତ୍ତର ଦେଲା, 'ଦିଇଟା ବ୍ଲକ୍ ଛାଡି ରହନ୍ତି ସେମାନେ ମା' ଝିଅ । ମୁଁ ଚିହ୍ନିନି ସେମାନଙ୍କୁ । ତେବେ ଶୁଣିଛି ଯେ ତା' ବାପା ପୋଲିସ୍‌ରେ କାମ କରୁଥିଲେ । ଚାରିବର୍ଷ ତଳେ ଆକ୍‌ସିଡେଣ୍ଟରେ ମରି ଯାଇଛନ୍ତି ।'

'ଓ ଆଚ୍ଛା ।' ମାଇକେଲ୍ କିଛି ସମୟ ଚୁପ୍ ରହି ପୁଣି କହିଲା, 'ଝିଅଟିର ମୁହଁ କେମିତି ଶୁଖିଲା ଶୁଖିଲା ଲାଗୁଛି ନା ? ଯେମିତିକି ବହୁତ ମନ ଖରାପ ।'

'କିଏ ଜାଣେ, କ'ଣ ହେଇଛି ?' ନାତାଲି ଗାଧୋଇବାକୁ ଚାଲିଗଲା । ଆଠଟା ଆଗରୁ ବାହାରି ଯିବାକୁ ହେବ ତାକୁ । ବଡ ରାସ୍ତା ଉପରେ ଥିବା ଦୋକାନରେ

କାମ କରେ ସେ । ନୂଆ ମ୍ୟାନେଜର୍ ଜଣେ ଆସିଛନ୍ତି ଏବେ । ଏମିତିରେ ମହିଳା ଜଣକ ଭଲ, କିନ୍ତୁ ଘଣ୍ଟା କଣ୍ଟା, ମିନିଟ୍ କଣ୍ଟା ଏମିତିକି ସେକେଣ୍ଡ୍ କଣ୍ଟା ମଧ୍ୟ ମାନି କରି ଚଳନ୍ତି ସେ । ଠିକ୍ ସମୟ ଅନୁସାରେ ନ ପହଞ୍ଚିଲେ ତାଙ୍କର ମିଜାଜ୍ ବିଗିଡି ଯାଏ । କ'ଣ ଦରକାର ବସ୍‌କୁ ରଗେଇବା ?

ଦୋକାନର ଧରାବନ୍ଧା କାମ । ନାତାଲି ଅଭ୍ୟସ୍ତ ଭାବରେ କରି ଚାଲିଥିଲା । କିନ୍ତୁ ବାରମ୍ବାର ମନେପଡି ଯାଉଥିଲା ମାଇକେଲ୍‌ର କଥା– 'ଝିଅଟିର ମନ ଯେମିତି ବହୁତ ଖରାପ ।'

ନାତାଲି, ମାଇକେଲ୍‌ଙ୍କର ପିଲା ନାହିଁ । ବହୁତ ଚାହିଁଥିଲେ ସେମାନେ, ହେଲାନାହିଁ । ହେଇଥିଲେ ବୋଧହୁଏ ସେଇ ଝିଅ ପାଖାପାଖି ବୟସର ହୋଇ-ଯାଇଥାଆନ୍ତା ଏତେବେଳକୁ । ନାତାଲି ମନ ଗୋଳେଇ ହେଇଗଲା । ଲଞ୍ଚ୍ ବ୍ରେକ୍ ବେଳେ ସାଣ୍ଡୱିଚ୍‌ଟିଏ ଖାଉ ଖାଉ ତା' ସହକର୍ମୀ ଜିମ୍‌କୁ ପଚାରି ଦେଲା ସେ ଝିଅ କଥା । ସେଇ ଏକା ବ୍ଲକ୍‌ରେ ତ ରହେ ଜିମ୍ । କିଛି ଜାଣିଥିବ ନିଶ୍ଚୟ ।

'କାହା କଥା ପଚାରୁଛ, ନାତାଲି ? ଜେନିଫର୍ ?'

'ନାଁ ଜାଣିନି । ସେଇ ଯେଉଁ ପୋଲିସ୍ ଅଫିସର୍ ଆକ୍‌ସିଡେଣ୍ଟ୍‌ରେ ମରିଗଲେ, ତାଙ୍କ ଝିଅ କଥା କହୁଛି. . .'

'ହଁ, ଜେନିଫର୍ ।' ଜିମ୍ ମୁହଁ ଗମ୍ଭୀର ହେଇଗଲା । 'ଏ ଭେରି ସ୍ୟାଡ୍ କେସ୍ ।'

'ରିଏଲି ? କ'ଣ ହେଇଛି ?'

ଜିମ୍ ସବୁ କହିଲା । ଏବଂ ତା' କଥା ଶୁଣି ନାତାଲି ସ୍ତବ୍ଧ ।

ରାତିରେ ଏକାଠି ଡିନାର୍ ଖାଇବା ବେଳେ ସେ ମାଇକେଲ୍‌କୁ କହିଲା, 'ତୁମେ ଆଜି ସକାଳେ ସେଇ ଯେଉଁ ଝିଅକୁ ଦେଖି କହୁଥିଲ ଯେ ଭାରୀ ଶୁଖିଲା ଲାଗୁଛି ।'

'ହଁ, କ'ଣ ହେଲା ?'

'ଝିଅଟିର ନାଁ ଜେନିଫର୍ । ସେ ଭୀଷଣ ଅସୁସ୍ଥ ।'

'କ'ଣ ହେଇଛି ?'

'ଏତେ କମ୍ ବୟସର ଝିଅ, ଅଥଚ କିଡ୍‌ନି ଗୋଟାଏ ନଷ୍ଟ ହେଇଯାଇଛି । ଆରଟାର ବି ଭରସା ନାହିଁ । ସେଇ ଚିନ୍ତାରେ ଚିନ୍ତାରେ ସବୁବେଳେ କୁଆଡେ ଡିପ୍ରେସ୍‌ଡ୍ ରହୁଛି ।'

'ଡାକ୍ତର ତ ଦେଖିଥିବେ ନିଶ୍ଚୟ । କ'ଣ କହୁଛନ୍ତି ?'

'କ'ଣ ଆଉ କହିବେ ? ଚଳେଇଛନ୍ତି ଡାଏଲିସିସ୍ । କିଡ୍‌ନି ଟ୍ରାନ୍‌ସ୍‌ପ୍ଲାଣ୍ଟ୍

କଥା କହିଛନ୍ତି । ହେଲେ ଏତେ ସହଜ କ'ଣ କିଡ୍‌ନି ମିଳିବା ?'

'କେହି ନାହାନ୍ତି ତା' ପରିବାରରେ ?'

'ଅଛନ୍ତି । ଜିମ୍ କହୁଥିଲା ଚାରି ବଡ ଭାଇ ଭଉଣୀ ଜେନିଫରର । ହେଲେ ସେମାନେ ଘର ସାଙ୍ଗରେ କୌଣସି ସମ୍ପର୍କ ରଖିନାହାନ୍ତି । ନିଜର ହୋଇଅଛନ୍ତି କେବଳ ତା' ମା' । କିନ୍ତୁ ସେ ଭୀଷଣ ଦୁର୍ବଳ । କିଡ୍‌ନି ଦେବାଭଳି ସ୍ୱାସ୍ଥ୍ୟ ତାଙ୍କର ନାହିଁ ।'

'ହୁଁ ।' ମାଇକେଲ୍ ଖାଇବାରେ ମନ ଦେଲା ।

•

ଏହାରି ଭିତରେ କଟିଗଲା ଆହୁରି ଦୁଇ ତିନି ଦିନ । ସେଦିନ ମନ ଜୋର କରି ପୁଣି ସକାଳୁ ଚାଲିବାକୁ ବାହାରିଥିଲା ଜେନିଫର୍ । ପାର୍କ୍ ଟପି ଆହୁରି କିଛିଟା ରାସ୍ତା । ପାର୍କ୍ ବେଞ୍ଚରେ ବସି ଯାଇଥିଲେ ଭଲ ଲାଗି ଥାଆନ୍ତା ଟିକିଏ । କିନ୍ତୁ କିଏ ସହି ପାରିବ ଭଦ୍ରାମି ଜାଣି ନ ଥିବା ଏ ଅସଭ୍ୟ ପିଲାଙ୍କ ପାଟିତୁଣ୍ଡ ? ଉଃ, କୋଉଠୁ ଯେ ଆସି ପହଞ୍ଚିଗଲେ ଏ ତଳକଟିଆ ଇମିଗ୍ରାଣ୍ଟସ୍ ! ଚାହୁଁ ଚାହୁଁ ସେମାନଙ୍କର ସୁନ୍ଦର ଧଳା ସହରଟିର ଚେହେରା ବଦଳେଇ ଦେଲେ ।

ଜେନିଫର୍ ଆଉ ଟିକିଏ ଜୋରରେ ଚାଲିବାକୁ ଚେଷ୍ଟା କଲା ।

ହଠାତ୍ ରାସ୍ତା ପାଖ ଗୋଟାଏ ଘରର କବାଟ ଖୋଲିଗଲା । ଭିତରୁ ବଡ ବଡ ପାଦ ପକାଇ ଯେଉଁ ସତଚାଳିଶ, ଅଠଚାଳିଶ ବର୍ଷର ମଣିଷ ଜଣକ ବାହାରକୁ ବାହାରି ଆସିଲେ, ତାଙ୍କୁ କେବେ କେମିତି ଜେନିଫର୍ ଏଇଠି ଦେଖିଛି । କାନ୍ଧ ତଳକୁ ଲମ୍ବିଥିବା ବାଳ ରବର୍ ବ୍ୟାଣ୍ଡରେ ବନ୍ଧା । ବାଁ କାନରେ ରୁପା କାନଫୁଲ । ଡାହାଣ ହାତରେ ବିରାଟ ଚିତା କୁଟା ହେଇଛି । ଟାଟ୍ଟୁ । ହାତକଟା ଚମଡା ଜ୍ୟାକେଟ୍ ପିନ୍ଧି ଘର ସାମ୍ନାରେ ଥିବା କଳା ମଟର ସାଇକେଲ୍ ସଫା କରୁ ଥାଆନ୍ତି ଅଧିକାଂଶ ସମୟରେ । ଚେହେରା କହେ ଦକ୍ଷିଣ ଆମେରିକାର ମଣିଷ । ହିସ୍‌ପାନିକ୍ । ତାଙ୍କ ଲୁଗାପଟା କିମ୍ବା ଘରର ସୌଷ୍ଠବ ଦେଖିଲେ ମନେ ହୁଏ ନାହିଁ ଅବସ୍ଥା ବିଶେଷ ସ୍ୱଚ୍ଛଳ । ଚେହେରା ବା ଚାଲିଚଳଣରେ ଆଭିଜାତ୍ୟର ଛିଟା ନାହିଁ । ହେଲେ ଏ ଅଞ୍ଚଳରେ ଅଧିକାଂଶ ମଣିଷ ତ ସେଇଭଳି ।

'ଏକ୍‌ସ୍‌କ୍ୟୁଜ୍ ମି ।'

ଜେନିଫର୍ ପାଦ ଅଟକିଗଲା । ତାକୁଇ କିଛି କହୁଛନ୍ତି ଚିତାକୁଟା ହିସ୍‌ପାନିକ୍ ମଣିଷ ଜଣକ ? କାହିଁକି ? କିଏ ସେ ?

ସେ ମାଇକେଲ୍ । ମାଇକେଲ୍ ଅନ୍ୟ ଦିନ ଭଳି ମଟର୍ ସାଇକେଲ୍ ପାଖକୁ ନ ଯାଇ ରାସ୍ତା ପର୍ଯ୍ୟନ୍ତ ଚାଲି ଆସିଥିଲା । ଏବଂ ଜେନିଫର୍ ଉଦ୍ଦେଶ୍ୟରେ

କହିଥିଲା, 'କ୍ଷମା କରିବେ ।'

'ୟେସ୍ ?' ଜେନିଫର୍ କିଛିଟା ବିରକ୍ତି, ଆଉ କିଛି ଅସ୍ୱସ୍ତି ନେଇ ଗମ୍ଭୀର ଭାବରେ ପଚାରିଲା ।

'ଶୁଣିଲି ତୁମେ ଅସୁସ୍ଥ । କିଡ୍‌ନି ଦରକାର ?'

ଜେନିଫର୍ ମନେ ମନେ ଚିଡିଗଲା । କି ଅସଭ୍ୟ ଅମଣିଷ ! ଏତିକି ଜଣା-ନାହିଁ ଯେ ଆଉ କାହାର ବ୍ୟକ୍ତିଗତ ମାମଲାରେ ନାକ ଗଳାଇବା ଅଶୋଭନୀୟ ?

'ସୋ ହ୍ୱାଟ୍ ?' ଜେନିଫର୍ ସ୍ୱରରେ ପ୍ରଚ୍ଛନ୍ନ ରୁକ୍ଷତା ।

'ମୋ କିଡ୍‌ନି ନେଇପାର ।'

'ହ୍ୱାଟ୍ !!' ଦୁର୍ବଳ ଦେହରେ ସତେ କି ନିଆଁ ଚରିଗଲା ଜେନିଫର୍‌ର । ଥଟ୍ଟା କରିବାକୁ ଲୋକ ମିଳିଲେ ନାହିଁ ? ଗୋଟାଏ ଗୁରୁତର ବିଷୟ ନେଇ କେହି ଏଇମିତି ଥଟ୍ଟା କରେ ? ବ୍ଲଡି ଇମିଗ୍ରାଣ୍ଟ୍‌ସ୍ ! ଜେନିଫର୍ କୌଣସି ଉତ୍ତର ନ ଦେଇ ବଡ ବଡ ପାଦ ପକାଇ ଘରକୁ ଚାଲିଗଲା ।

ଶୂନ୍ୟ ଘର ଭିତରେ ପାଦ ଦେଉ ଦେଉ ଦେହଟା ଗୋଳେଇ ହୋଇଗଲା ତା'ର । ବାଥ୍‌ରୁମ୍ ଭିତରେ ପଶିଯାଇ ଭକ ଭକ୍ କରି ବାନ୍ତି କରି ପକେଇଲା ସେ । କଡା ଔଷଧର ବିଷ, ସକାଳର ଅସ୍ୱସ୍ତି, ମାଇକେଲ୍‌ର କଥା– ସବୁ ଯେମିତି ଏକାଠି ମିଶିଗଲା । ମୁହଁରେ ପାଣି ଛାଟୁ ଛାଟୁ ସେଇଠି ଗାଧୁଆ ଘରେ କିଛି ସମୟ ପାଇଁ ଜେନିଫର୍ ବସିଗଲା । କଳର ଥଣ୍ଡା ପାଣି ଆଖିର ଉଷ୍ମ ଲୁହ ସାଙ୍ଗରେ ମିଶି ଯାଇ ସାରିଥିଲା ।

ଜେନିଫର୍ ଖଟରେ ପଡ଼ିରହିଲା ସାରାଦିନ । ମା' କେତେବେଳେ ଆସିବେ ? ନିସ୍ତବ୍ଧ ଘର ଯେମିତି ଖାଇ ଗୋଡାଉଥିଲା ତାକୁ ।

*

ତାଲା ଖୋଲି ଘର ଭିତରେ ପାଦ ଦେଉ ଦେଉ ଜେନିଫର୍‌ର ମା' ଜାଣି-ପାରିଲେ ଝିଅର କିଛି ଗୋଟାଏ ହେଇଛି ନିଶ୍ଚୟ । କାମକୁ ଯିବା ଆଗରୁ ସେ ଖାଇବା ଟେବୁଲ୍ ଉପରେ ଝିଅ ପାଇଁ ଫଳ କାଟି ରଖି ଯାଇଥିଲେ । ସେ ହାତ ଦେଇନି । ଚୁଲି ପାଖରେ ଚିକେନ୍ ସାଣ୍ଡୱିଚ୍ ରଖିଥିଲେ । ତବା ଖୋଲା ହେଇନି ।

ବ୍ୟସ୍ତ ହୋଇ ଝିଅର ଶୋଇବା ଘର ଭିତରକୁ ପଶିଗଲେ ସେ । ଖଟ ଉପରେ ପଡି ରହିଛି ଜେନିଫର୍ । ଦେହରେ ସକାଳର ଲୁଗା । ଅର୍ଥାତ୍ ଗାଧୁଆ ବି ହେଇନି ତା'ର ।

'କ'ଣ ହେଉଛି, ଜେନି ? ଦେହ ଭଲଲାଗୁନି ? ଡାକ୍ତରଙ୍କୁ ଫୋନ୍ କରିବି ?

ଜେନିଫର୍ ଆଖି ଖୋଲିଲା । 'ଏତେ ଡେରି କଲ, ମା' ?' ଆଖି ପତା ତଳେ ଲୁହତକ ଆସି ଭିଡ ଜମେଇଲେ ।

ଡେରି ହୋଇନି । ସବୁଦିନ ଯେଉଁ ସମୟରେ ସେ ଘରକୁ ଆସନ୍ତି, ଠିକ୍ ସେଇ ସମୟରେ ଫେରିଛନ୍ତି ଜେନିଫର୍‌ର ମା' । ବରଂ ଏମିତିରେ ଦେଖିଲେ ସାତ-ଆଠ ମିନିଟ୍ ଆଗରୁ । ଜେନିଫର୍ ପାଖରେ ବସି ସେ ତା' ମୁଣ୍ଡ ଆଉଁଶି ଦେଲେ । ସ୍ୱରରେ ଦୁଶ୍ଚିନ୍ତା । 'କ'ଣ ହେଉଛି ରେ ମା' ?'

ଏଥର ତକିଆକୁ ଆଉଜି ବସିଲା ଜେନିଫର୍ । ଥରଥର ସ୍ୱରରେ ପଚାରିଲା, 'ମା', ତୁମେ କ'ଣ ମୋ' କିଡ୍‌ନି ଟ୍ରାନ୍‌ସ୍‌ପ୍ଲାଣ୍ଟ୍ ନେଇ କାହାସାଙ୍ଗରେ କଥା କହିଛ ?'

'ନା ତ ! ତୋ' ଅସୁସ୍ଥତା କଥା କେବେ କୋଉଠି ବି ଉଠିନି । ଏମିତିରେ ମୋ' କଲିଗ୍ କେଇଜଣ ଜାଣନ୍ତି । କିନ୍ତୁ ସେ ବିଷୟରେ ବେଶୀ ଆଲୋଚନା ଆମମାନଙ୍କର ହୁଏ ନାହିଁ । ସମୟ କାହିଁ ?... କାହିଁକି, କ'ଣ ହେଲା ?'

'ପାର୍କ୍ ସେପାଖରେ ଯେଉଁ ଛୋଟ ଘର... କଳା ମଟର ସାଇକେଲ୍... ସେଠି ହିସ୍‌ପାନିକ୍ ସ୍ୱାମୀ ସ୍ତ୍ରୀ ଦୁଇଜଣ ରହନ୍ତି. . .'

'ହଁ, ହଁ, ଦେଖିଛି ମୁଁ । କ'ଣ ହେଲା ?'

'ସେ କାନଫୁଲ ପିନ୍ଧା ଲୋକ ମତେ ଆଜି ସକାଳେ ରାସ୍ତାରେ ଅଟକେଇ ଦେଇ ମୋ' ଦେହ ଖରାପ ନେଇ ପ୍ରଶ୍ନ କଲା ।'

'କି ପ୍ରଶ୍ନ ?'

'ସେ ଥଟ୍ଟା କଲା ଭଳି କହିଲା– ତୁମର ପରା କିଡ୍‌ନି ଦରକାର ? ମୋର ଗୋଟାଏ କିଡ୍‌ନି ନେଇଯାଅ ।' ଆଖିପତା ତଳେ ଭିଡ ଜମେଇଥିବା ଲୁହତକ ବନ୍ଧ ପାର ହୋଇଗଲେ ।

ଜେନିଫର୍ ମା'ଙ୍କର ଆଖିରୁ ନିଆଁ ଝୁଲ ଝରି ଆସିଲା ଯେମିତି । ଦୁଇ ଓଠ ଚାପି ହୋଇଗଲା ରାଗରେ । ହିସ୍ ହିସ୍ କରି ସେ କହିଲେ, 'ଏତେ ସାହସ ! ଜଣେ ଅସୁସ୍ଥ ଝିଅକୁ ଏମିତି ଭାବରେ କିଏ ଥଟ୍ଟା କରେ ?. . . ମୁଁ ଦେଖୁଛି ।' ବିଛଣାରୁ ଉଠି ଠିଆ ହେଲେ ସେ । ଅଳ୍ପ ସମୟ ଆଗରୁ ଦେହରୁ କାଢି ରଖିଥିବା ଜ୍ୟାକେଟ୍ ପୁଣି ଗଳେଇ ନେଇ ସେ ଗମ୍ଭୀର ଭାବରେ କହିଲେ, 'ମୁଁ ଯାଙ୍ଗେ ସାଙ୍ଗେ ଆସୁଛି । ଆଇ ହ୍ୟାଭ୍ ଟୁ ଗିଭ୍ ଦ୍ୟାଟ୍ ମ୍ୟାନ୍ ଏ ପିସ୍ ଅଫ୍ ମାଇଁ ମାଇଣ୍ଡ୍ !'

ଦାଣ୍ଡ କବାଟ ଖୋଲିଲେ ସେ । ଏବଂ କବାଟ ଖୋଲି ସେ ଚମକି ରହିଗଲେ । କବାଟ ସେପାଖରେ ଠିଆ ହୋଇଥିଲା ଆସାମୀ ନିଜେ । ମାଇକେଲ୍ । ଏବଂ ତା'

ପଛରେ ନାତାଲି ।

ଜେନିଫର୍‌ର ମା’ କିଛି ପଚାରିବା ଆଗରୁ ମାଇକେଲ୍ ନରମ ସ୍ୱରରେ କହିଲା, ‘କ୍ଷମାକରିବେ, ଆଗରୁ ଖବର ନଦେଇ ଆମେ ଚାଲି ଆସିଛୁ । ଆପଣଙ୍କ ଫୋନ୍ ନମ୍ବର ଜଣାନାହିଁ, ସେଇଥିପାଇଁ. . .। ଆମେ ଭିତରକୁ ଆସିପାରୁ କି ?’

କିଛି ସମୟ ଆଗର କ୍ରୋଧ ବିସ୍ମୟରେ ପରିଣତ ହୋଇସାରିଥିଲା । ଜେନିଫରର ମା’ କିଛି ନ କହି ସେମାନଙ୍କୁ ଭିତରକୁ ଡାକିନେଲେ ।

ବିନା ଉପକ୍ରମଣିକାରେ ମାଇକେଲ୍ କହିଲା, ‘ଦେଖନ୍ତୁ, ଆମେ ଅଳ୍ପ କିଛି ବର୍ଷ ତଳେ ମେକ୍‌ସିକୋରୁ ଆସିଛୁ । ଏହା ଭିତରେ ଇଂରାଜୀ କହିବା ମୁଁ ଶିଖି-ଯାଇଛି, କିନ୍ତୁ ମୋ’ ଇଂରାଜୀ ସେତେ ଭଲ ନୁହଁ । ସେଥିପାଇଁ ବୋଧହୁଏ ସକାଳେ ଆପଣଙ୍କ ଝିଅକୁ ଠିକ୍‌ରେ ବୁଝେଇ କହିପାରିଲି ନାହିଁ । ଆପଣଙ୍କ ଝିଅ ଜେନିଫର୍ ମୋ କଥା ଶୁଣି ଯେମିତି ଭାବରେ ଚାଲିଗଲା, ମୋତେ ଲାଗିଲା ସେ ମୋତେ ନିଶ୍ଚୟ ଭୁଲ୍ ବୁଝିଲା । ସାରାଦିନ କାମରେ ମୁଁ ସେଇ କଥା ଭାବି ହେବା ପରେ ସ୍ଥିର କଲି ସିଧାସଳଖ ଆପଣଙ୍କ ସାଙ୍ଗରେ କଥା କହିବି ।’

ଜେନିଫର୍‌ର ମା’ ଗଳା ଝାଡିଲେ । ‘କିନ୍ତୁ କିଏ କ’ଣ ଏମିତି କଥା କହେ ? ଥଟ୍ଟା କରେ ?’

‘ଥଟ୍ଟା !’ ମାଇକେଲ୍ ଆଶ୍ଚର୍ଯ୍ୟ ହେଲା । ‘ମୁଁ ତ ଥଟ୍ଟା କରିନି । ମୁଁ ସତରେ ମୋର ଗୋଟାଏ କିଡ୍‌ନି ଜେନିଫର୍‌କୁ ଦେବାକୁ ଚାହେଁ ।’

‘କାହିଁକି ?’ ଏଇଟା ତ ଦୟା କରି ପାଞ୍ଚଦଶ ଡଲାର୍ ଧରେଇ ଦେବାଭଳି ଘଟଣା ନୁହଁ । କଟା କଟି କରି ନିଜ ଦେହରୁ ଗୋଟାଏ ଭାଗ କାଢ଼ି ଦେବାକୁ ହେବ । ବଡ ଅପରେସନ୍ । ବିନା କାରଣରେ କିଏ କ’ଣ ଅପରିଚିତ ଜଣଙ୍କୁ ନିଜର ଗୋଟାଏ କିଡ୍‌ନି ଦେଇ ଦିଏ ?

‘କାହିଁକି ?’ ଜେନିଫର୍‌ର ମା’ ଆଉଥରେ ପଚାରିଲେ ।

‘ଏ କାହିଁକିର ଉତ୍ତର ମୁଁ ଦେଇପାରିବିନାହିଁ । ମୋ’ ମନକୁ ଆସିଲା କଥାଟା । ଆଉ ମୋ ମନକୁ ଯାହା ଆସେ, ମୁଁ ଠିକ୍ ସେୟା କରେ ।’ ମାଇକେଲ୍ କହିଲା ।

ତା’ ସ୍ତ୍ରୀ ନାତାଲି ମୁରୁକି ହସିଦେଲା । ଗତ ତେଇଶ ବର୍ଷ ଧରି ତ ସ୍ୱାମୀର ‘ହଠାତ୍ ଇଚ୍ଛା’ ମାନଙ୍କୁ ଦେଖିଆସୁଛି ସେ । ସେଥିପାଇଁ ଆଜିର ଘଟଣାରେ ଅବାକ୍ ହେଲା ନାହିଁ ।

‘ଦେଖନ୍ତୁ, ମୁଁ ଏକ୍‌ଦମ୍ ସୁସ୍ଥ । ମୋର କୌଣସି ଖରାପ ଅଭ୍ୟାସ ନାହିଁ । ଗୋଟିଏ କିଡ୍‌ନି ମୋ ଦେହରୁ ଚାଲିଗଲେ ମୋର କୌଣସି ଅସୁବିଧା ହେବ ନାହିଁ ।

'ହେଲେ ବ୍ଲଡ୍ ଗ୍ରୁପ୍. . .' ଜେନିଫର୍ ମା'ଙ୍କର ସ୍ତବ୍ଧତା ତଥାପି କଟି ନ ଥିଲା ।

'ଓ ହଁ । ଆପଣ ଯେବେ କହିବେ ମୁଁ ଡାକ୍ତରଙ୍କ ପାଖକୁ ଯିବା ପାଇଁ ପ୍ରସ୍ତୁତ । ତେବେ ମୋର 'ଓ'-ଗ୍ରୁପ୍ । ଭାବୁଛି ଅସୁବିଧା ହେବନି ।'

'କିଡ୍‌ନି ବଦଳରେ. . .' ଜେନିଫର୍ ମା'ଙ୍କର କଥା ଜଡେଇ ଆସିଲା । 'ସେମିତି ଟଙ୍କା ମୋର ନାହିଁ । କିନ୍ତୁ ଏ ଘର ବିକ୍ରି କରି ଦେଇ ଯାହା ମିଳିବ ତା' ଦେଇ ଦେଇପାରିବି । ଆମେ ଦୁଇଜଣ ଭଡା ଘରକୁ. . .'

ଠୋ ଠୋ ହୋଇ ହସିଲା ମାଇକେଲ୍ । 'ଆପଣ ଭାବୁଛନ୍ତି ମୁଁ କିଡ୍‌ନି ବିକ୍ରି କରିବା ପାଇଁ ଆପଣଙ୍କ ପାଖକୁ ଆସିଛି ?. . . ନା, ଏଠି ଟଙ୍କାର ପ୍ରଶ୍ନ ନାହିଁ । ଆପଣଙ୍କର ଘର ବିକ୍ରି କରିବା ଦରକାର ନାହିଁ । ନାତାଲି ଆଉ ମୁଁ ଯେତିକି ରୋଜଗାର କରୁ ସେତିକ ଆମ ପାଇଁ ଯଥେଷ୍ଟ । ଅଧିକ ଆବଶ୍ୟକତା ଆମର ନାହିଁ ।'

ଜେନିଫର୍‌ର ମା' ତଥାପି ସ୍ତବ୍ଧ ହୋଇ ବସିଥିଲେ । ଆଉ ନିଜ କୋଠରୀ ଭିତରେ ଜେନିଫର୍ ।

✲

ଏହାପରେ ଘଟଣା ସବୁ ଘଟିଗଲା ଖୁବ୍ ଶୀଘ୍ର ଶୀଘ୍ର । ମାଇକେଲ୍‌କୁ ଭଲ ଭାବରେ ପରୀକ୍ଷା କରି ଡାକ୍ତର କହିଲେ ଯେ ସେ ଜେନିଫର୍‌କୁ କିଡ୍‌ନି ଦେଇ-ପାରିବ । କୌଣସି ଅସୁବିଧା ନାହିଁ । ଜଣେ ଆଇରିଶ୍ ଆମେରିକାନ୍ । ଆଉ ଜଣେ ମେକ୍‌ସିକୋରୁ ଆସିଥିବା ଲାଟିନ୍ ଆମେରିକାନ୍ । ଭାଷା ଭିନ୍ନ । ସଂସ୍କୃତି ଭିନ୍ନ । ଅଥଚ ଶରୀର ଭିତରେ ଥିବା ରକ୍ତର ରଙ୍ଗ ଏକ । ବର୍ଣ୍ଣ ଏକ ।

ଅପରେସନ୍‌ର ଦିନ ସ୍ଥିର ହୋଇଗଲା । ଅପରେସନ୍ ବି ହୋଇଗଲା ।

ଅପରେସନ୍ ହେବା ପରେ ବେଶ୍ କିଛି ମାସ କଟିଗଲାଣି । ଜେନିଫର୍ ଏବେ ପ୍ରାୟ ସୁସ୍ଥ । ପୁଣି କଲେଜ ଯିବା ଆରମ୍ଭ କରିଛି ସେ । ନିୟମିତ ଭାବରେ ସକାଳୁ ଚାଲିବାକୁ ବି ଯାଉଛି । ଆଜିକାଲି ତାକୁ ଆଉ ପିଲାମାନଙ୍କର ପାଟିତୁଣ୍ଡ ଜମା ଖରାପ ଲାଗୁ ନାହିଁ ।

ମାଇକେଲ୍ କେଇଟା ସପ୍ତାହ ପାଇଁ ନିଜର ପ୍ଲମ୍ବିଙ୍ଗ୍ ବ୍ୟବସାୟ ବନ୍ଦ ରଖିଥିଲା, ଏବେ ପୁଣି ଆରମ୍ଭ କରିଛି । ଆଉ ଆଗଭଳି ଛୁଟି ଦିନମାନଙ୍କରେ ମଟର ସାଇକେଲ୍ ପଛରେ ପଡି ରହୁଛି ସେ ।

ଦୁଇ ପରିବାରର ଧରାବନ୍ଧା ନିୟମରେ କେବଳ ଗୋଟାଏ ବିଷୟ ବଦଳିଛି । ଅନ୍ତତଃ ରବିବାର ସକାଳେ ।

ସବୁ ରବିବାର ଚର୍ଚ୍ଚକୁ ଯିବା ଜେନିଫର୍ ଆଉ ତା' ମା'ଙ୍କର ପୁରୁଣା ଅଭ୍ୟାସ । ହେଲେ ଆଜିକାଲି ଚର୍ଚ୍ଚରୁ ଫେରିବା ବେଳେ ତରବର ହୋଇ ନିଜ ଘରକୁ ଫେରି ଆସନ୍ତି ନାହିଁ ସେମାନେ । ଦୁଇଜଣ ଯାକ କିଛି ସମୟ ପାଇଁ ଅଟକି ଯାଆନ୍ତି ନାତାଲି ଆଉ ମାଇକେଲ୍‌ଙ୍କ ଘରେ ।

ଜେନିଫର୍‌ର ମା' ଚାକିରି ବଦଳେଇଛନ୍ତି । ନୂଆ ଚାକିରିରେ ମାସକୁ ଦୁଇଥର ରବିବାର ସକାଳେ ତାଙ୍କୁ ସାତଟା ଆଗରୁ କାମକୁ ଯିବାକୁ ହେଉଛି । ସେ ସେଇ ଦୁଇଦିନ ଚର୍ଚ୍ଚ ଯାଇ ପାରୁନାହାନ୍ତି । ହେଲେ ଜେନିଫର୍‌ର ରୁଟିନ୍‌ରେ କୌଣସି ପରିବର୍ତ୍ତନ ହେଇନାହିଁ । ସେ ଏକା ଏକା ଯାଇ ନାତାଲି ଆଉ ମାଇକେଲ୍‌ଙ୍କୁ ଦେଖା କରିଆସୁଛି । ନାତାଲି ହାତ ତିଆରି 'ଚିକେନ୍ କାସାଡିଆ' କି 'ଚିମି-ଚାଙ୍ଗା' ଉପଭୋଗ କରି ଖାଉଛି ସବୁ ଥର ।

ସବୁଠାରୁ ଆଶ୍ଚର୍ଯ୍ୟର କଥା, ଦିନେ ଯେଉଁମାନଙ୍କୁ ସେ ହେୟ ଦୃଷ୍ଟିରେ ଦେଖୁଥିଲା, ସେଇମାନେ ଏବେ ତା'ର ଅତି ନିଜର । କେହି ଯଦି ପଚାରେ, ତେବେ ସେ କହେ– 'ଏବେ ତ ମୁଁ ସେଇମାନଙ୍କ ଭଳି । ପୂରା ନହେଲେ ବି ଅଧା ମେକ୍‌ସିକାନ୍ । ଅନ୍ତତଃ ମୋ' ଡାହାଣ ପାଖ କିଡ୍‌ନିଟା ତ ହିସ୍‌ପାନିକ୍ ।'



* ଗପଟି ଗୋଟିଏ ସତ ଘଟଣା ଉପରେ ଆଧାରିତ ।

# ସଳିତା

ଦୁଇ ଶହ କୋଡିଏ ଲୋକ ଚାକିରି କରୁଥିବା ବଡ ହୋଟେଲ । ସମସ୍ତେ ତାକୁ ସବୁ ଦିନ ଦେଖିଆସିଛନ୍ତି ନିୟମିତ ଭାବରେ । ଅଥଚ ଆଶ୍ଚର୍ଯ୍ୟର କଥା, ଜଣେ କେହି କେବେ ତା' ନାଁ ଜାଣିବାର ଚେଷ୍ଟା କରିନାହିଁ । ବାହାର ଲୋକଟିଏ ଯଦି ହୋଟେଲର କୌଣସି କର୍ମଚାରୀଙ୍କୁ ତା' ନାଁ ପଚାରି ଥାଆନ୍ତା, ତା'ହେଲେ ସେ ନିଶ୍ଚୟ ଭାବି ହେଇ ଥାଆନ୍ତା । ତା'ପରେ ସ୍ୱରରେ ଦ୍ୱନ୍ଦ ନେଇ କହି ଥାଆନ୍ତା –'ତା' ନାଁ ବୋଧହୁଏ ଆନାଷ୍ଟାଜିଆ । ନା ଆଙ୍କା ? . . . କ୍ଷମା କରିବ, ପୋଲାଣ୍ଡର ଲୋକଙ୍କ ନାଁ ଗୁଡାକ ବଡ ଖିଚିମିଚିଆ । ଠିକ୍ ମନେରହେନି ।'

ସେ ମୁଣ୍ଡ ହଲେଇ ହସି ଦେଇଥାଆନ୍ତା । ଛୋଟ ଛୋଟ ଘଟଣାରେ ଅପମାନିତ ହେବା କଥା ସେ କାହିଁ କେତେ ବର୍ଷ ତଳୁ ଭୁଲିଯାଇଛି । ତା'ଛଡା ନାଁ ରେ ଅଛି କ'ଣ ? ଏମିତିରେ ଦେଖିଲେ, ତା' ନାଁ ଯେ ଅନ୍ୟମାନେ ଠିକ୍‌ରେ ଜାଣନ୍ତି ନାହିଁ, ସେଇ ଦୋଷ କିଛି ମାତ୍ରାରେ ତା'ର ବି । ସେ କ'ଣ ନିଜ ତରଫରୁ କାହାକୁ କହିଛି ଯେ ତା' ନାଁ କ୍ରିଷ୍ଟିନା ? ମା' ଗେହ୍ଲାରେ ଡାକୁଥିଲେ – କ୍ରିଷ୍ଟି । ଆଉ ବାପାଙ୍କର ଆଦରମଖା ଡାକ– ପ୍ରିନ୍‌ସେସ୍ । ସେ ଡାକ ଆଜିଯାଏଁ ଭୁଲି ନାହିଁ କ୍ରିଷ୍ଟିନା । ସେ ସ୍ନେହକୁ ଜାବୁଡି ଧରିଛି ଛାତି ଭିତରେ ।

ସେତେବେଳେ ଘରେ ସେମାନଙ୍କର 'ନାହିଁ, ନାହିଁ'ର ପରିବେଶ । ଅଭାବ ତାଙ୍କ ପରିବାରର ନିୟମିତ ସାଥୀ । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କମ୍ୟୁନିଷ୍ଟ ପୋଲାଣ୍ଡର ଛୋଟ ସହର ଆଉ ସହରତଳିରେ ରହୁଥିବା ମଣିଷଙ୍କ ଆଡକୁ ଚାହିଁବା ସମୟ କାହାର ଥିଲା ? ବାପା, ମା' ସାଧାରଣ ଶ୍ରମିକ । ଦୁଇ କୋଠରିର ଛୋଟ ଘରେ ସେମାନେ ନଅ ଜଣ ମଣିଷ । ଅଥଚ ସମସ୍ତଙ୍କଠୁଁ ସାନ କ୍ରିଷ୍ଟିନା ବଢିଥିଲା ରାଜକନ୍ୟାର ସ୍ନେହ ଆଦର ନେଇ ।

ଅତ୍ୟଧିକ ପରିଶ୍ରମରେ ପିଠି ଭାଙ୍ଗି ଯାଇଥିଲା ବାପା, ମା'ଙ୍କର । ନିଶ୍ୱାସ ଚାଲୁଥିଲା ବୋଲି ଜାଣି ହେଉଥିଲା ଯେ ସେମାନେ ବଞ୍ଚିଛନ୍ତି । ଦିନେ ତା' ବି ବନ୍ଦ ହେଇଗଲା । ନିଜ ନିଜକୁ ନେଇ ଦୂରେଇ ଗଲେ ଭାଇ ଭଉଣୀ ।

ରାଜକନ୍ୟାର ସ୍ନେହ ସାମ୍ରାଜ୍ୟ ବାଲିରେ ହଜିଗଲା ।

କ୍ରିଷ୍ଟିନାର ବାହାଘର ହେଇଗଲା ସେତିକିବେଳେ । ବୟସ ହେଇଥିଲା ମାତ୍ର ପନ୍ଦର ।

ଯୋଶେଫ୍‌କୁ ସେ ପିଲାଦିନରୁ ଜାଣିଥିଲା । ସେମାନଙ୍କ ଘରଠୁଁ କେଇଟା ଘର ଛାଡି ରହୁଥିଲେ ତା' ବାପା ମା' । ଯିବା ଆସିବା ଥିଲା, କଥାବାର୍ତ୍ତା ମଧ୍ୟ ଥିଲା, କିନ୍ତୁ କେହି ଯଦି ପଚାରେ ହୃଦୟର ବନ୍ଧନ ଥିଲା କି ନାହିଁ, କ୍ରିଷ୍ଟିନା ଏବେ ବି ଭାବନାରେ ପଡିଯିବ । ସଠିକ ଉତ୍ତର ଦେଇପାରିବ ନାହିଁ । ସେମାନଙ୍କ ପୃଥିବୀରେ ପ୍ରେମର ସ୍ଥାନ ନିହାତି ଗୌଣ । ଦୟା, ମନୁଷ୍ୟତ୍ୱରେ ଚାଲିଥିଲା ସେମାନଙ୍କର ପୃଥିବୀ । ବୋଧହୁଏ ସେଇଥିପାଇଁ ହଠାତ୍ ଏକା ହୋଇ ଯାଇଥିବା କ୍ରିଷ୍ଟିନାକୁ ଛୋଟ ଚର୍ଚ୍ଚରେ ବାହା ହୋଇଯାଇଥିଲା ଯୋଶେଫ୍ ।

ଯୋଶେଫ୍ ବି ଶ୍ରମିକ । ଅନ୍ୟ ଏକ ଦରିଦ୍ର ସହରର ଛୋଟ ଏକ କାରଖାନାରେ । ସ୍ତ୍ରୀକୁ ନେଇ ନୂଆ ବଖରିକିଆ ଘରକୁ ସେ ଚାଲିଗଲା । କ୍ରିଷ୍ଟିନା ପାଇଁ ସ୍ଥାନ, ପାତ୍ର ବଦଳିଗଲା, କିନ୍ତୁ ବଦଳିଲା ନାହିଁ ଅଭାବର ରଙ୍ଗ । ପୁଣି ସେଇ 'ନାହିଁ, ନାହିଁ'ର ପୃଥିବୀ । ତା'ରି ଭିତରେ କୋଳକୁ ଆସିଲେ ପ୍ରଥମ, ଦ୍ୱିତୀୟ ପୁଣି ତୃତୀୟ ସଦସ୍ୟ । ଅଭାବର ରଙ୍ଗ ଆଉ ଟିକିଏ ଗାଢ ହେଲା । ଶରୀର ଅଧିକ କ୍ଷୀଣ । ଶରୀରର ପୋଷାକ ଆଉ ଟିକିଏ ଜୀର୍ଣ୍ଣ ।

ଦିନେ ଯୋଶେଫ୍‌ର ସାଥୀ ଶ୍ରମିକ ଜଣେ କହିଲା– ଏ ଅଭାବମୟ ପୃଥିବୀରୁ ବାହାରିଯିବାର ରାସ୍ତାଟିଏ ଅଛି । ଅସ୍ପଷ୍ଟ, ସଂକୀର୍ଣ୍ଣ, ନିର୍ଜନରାସ୍ତା । କିନ୍ତୁ ରାସ୍ତାଟିଏ ତ । ରାସ୍ତା ଶେଷରେ ଏକ ନୂଆ ପୃଥିବୀ । ଯେଉଁଠି ରହିଛି ହୀରା, ନୀଳା, ମୋତି, ମାଣିକର ଆକାଶ । ଆର୍ଥିକ ସ୍ୱାଧୀନତାର ବାସ୍ନା ଖେଳାଉଥିବା ବତାସ ।

ସେ ପୃଥିବୀର ନାଁ ଆମେରିକା ।

ଯୋଶେଫ୍ ମୋହିତ ହୋଇଯାଇଥିଲା । ସାଥୀ ଶ୍ରମିକଟି ସାଙ୍ଗରେ ମିଶି ଦରଖାସ୍ତ, ଫାଇଲ, ପାସ୍‌ପୋର୍ଟ୍ ଏବଂ ଦଲାଲଙ୍କ ପୃଥିବୀରେ ସେ ସାମିଲ ହୋଇଗଲା । ଏହାରି ଭିତରେ କଟିଗଲା କିଛି ବର୍ଷ । ଦିନେ ସ୍ୱପ୍ନ ଓ ସମ୍ଭାବନାମୟ ପୃଥିବୀର ସନ୍ଧାନ ମିଳିଲା । କିନ୍ତୁ ଯୋଶେଫ୍ ଓ କ୍ରିଷ୍ଟିନା ଯେମିତି ଚନ୍ତା କରିଥିଲେ, ଠିକ୍ ସେମିତି ନୁହଁ । ଆମେରିକାରେ କାମ କରିବାର ଅନୁମତି ମିଳିଲା । କିନ୍ତୁ ଯୋଶେଫ୍‌କୁ ନୁହଁ, ତା' ସ୍ତ୍ରୀକୁ । ଛୋଟ ବଖରିକିଆ ଘରର ଚାରିକାନ୍ଥ ଭିତରେ ତିନିଟା ପିଲାଙ୍କୁ ମଣିଷ କରି ଭୋରରୁ ରାତିଅଧ ଯାଏଁ ଖଟିଯାଉଥିବା କ୍ରିଷ୍ଟିନାକୁ ।

– 'ଅସମ୍ଭବ ! ମୁଁ ଏକା କୁଆଡେ ଯିବି ? ତୁମକୁ ଛାଡି, ପିଲାଙ୍କୁ ଛାଡି, ଆମେରିକା ? ଅସମ୍ଭବ !' ସ୍ୱାମୀ ହାତରେ ଧରିଥିବା କାଗଜ ଖଣ୍ଡିକ ପଢିବା ପରେ ଏହା ହିଁ ଥିଲା କ୍ରିଷ୍ଟିନାର ପ୍ରଥମ ମନ୍ତବ୍ୟ ।

କିନ୍ତୁ ଅସମ୍ଭବ ଦିନେ ସମ୍ଭବ ହେଲା । ଚହ୍ଲା ସହରକୁ ପଛରେ ପକାଇ ସ୍ୱାମୀ ଓ ପିଲାଙ୍କ ଜଗତକୁ ଅନ୍ୟ ଭରସାରେ ଛାଡି ଦେଇ ପ୍ରଥମଥର ପାଇଁ ଉଡାଜାହାଜରେ ବସି ଆଟ୍‌ଲାଣ୍ଟିକ୍ ସେପାରିକୁ ଚାଲିଯିବାକୁ ହେଲା ।

ସେଇ ସ୍ୱପ୍ନର ରାଜ୍ୟ । ସେଇ ଆମେରିକା ।

ସେଠି ସବୁ ଭିନ୍ନ । ଭାଷା ଭିନ୍ନ, ରାସ୍ତା ଭିନ୍ନ, ଚାଲିଚଲଣ ଭିନ୍ନ । ତା'ରି ଭିତରେ କ୍ରିଷ୍ଟିନା ଖୋଜି ପାଇଲା କେଇ ଜଣ ମଣିଷଙ୍କୁ ଯେଉଁମାନେ କି ସମ୍ପୂର୍ଣ୍ଣ ଭିନ୍ନ ନୁହନ୍ତି । ଠିକ୍ ତା'ରି ଭଳି ପୋଲାଣ୍ଡରୁ ଗୋଟାଏ ବର୍ଷ ତଳେ ଆସିଥିବା ଆଉ ତିନିଜଣ ମହିଳାଙ୍କୁ । ସେମାନେ ବି ତା'ରି ଭଳି ମାନହାଟାନ୍‌ର ପଞ୍ଚତାରକା ହୋଟେଲର ନିଯୁକ୍ତି ପତ୍ର ହାତରେ ଧରି ଘର ପରିବାର ଛାଡ଼ି ଚାଲି ଆସିଥିଲେ । କାମ ମଧ୍ୟ ମୋଟାମୋଟି ଏକ । ହୋଟେଲର ମାର୍ବଲ ଲବି, ଟାଇଲ୍ ଘେରା ଗାଧୁଆ ଘର, ପାଇଖାନା ସଫା ।

ଚାଖଣ୍ଡେ ହେଉ ନା କାହିଁକି, ପାଦତଳର ମାଟି ଖୋଜି ପାଇଥିଲା ସେ । ସେଇ ସାହାରାକୁ ଗଳାର ମାଳି କରି ଧୀରେ ଧୀରେ ସେ ନିଜକୁ ନୂଆ ପରିବେଶରେ, ସମ୍ପୂର୍ଣ୍ଣ ଭିନ୍ନ ଏକ ଜଗତରେ ସାମିଲ କରେଇ ନେବାକୁ ଚେଷ୍ଟା କରିଥିଲା ।

ସେ ଜଗତ କିନ୍ତୁ ସହଜ ନୁହଁ । କ୍ରିଷ୍ଟିନାକୁ ରାତି ତିନିଟାରେ ବିଛଣା ଛାଡିବାକୁ ହେଉଥିଲା । ପ୍ରସ୍ତୁତ ହେଇ, ୟୁନିଫର୍ମ ପିନ୍ଧି, ସବ୍-ୱେରେ ବସି ହୋଟେଲ୍ ପହଞ୍ଚିବାବେଳକୁ ଭୋର ଚାରିଟା । କାଚ କବାଟ ପାଖରେ ଠିଆ ହୋଇଥିବା ଗାର୍ଡ୍ ଓ ରିସେପ୍‌ସନ୍‌ର ଦୁଇଜଣଙ୍କୁ ଛାଡିଦେଲେ ଅଧିକାଂଶ ଦିନ ହୋଟେଲ ଲବି ନିସ୍ତବ୍ଧ । ମୁହୂର୍ତ୍ତେ ସମୟ ନଷ୍ଟ ନକରି କ୍ରିଷ୍ଟିନା କାମରେ ଲାଗି ଯାଉଥିଲା । ହୋଟେଲରେ ଭିଡ ଆରମ୍ଭ ହେବା ଆଗରୁ ସବୁ କିଛି ପରିଷ୍କାର ହେଇଯିବା ଦରକାର । ଜେନେରାଲ ମ୍ୟାନେଜର୍‌ଙ୍କର କଡା ହୁକୁମ୍ – କେଉଁଠି ସାମାନ୍ୟ ଦାଗ ବି ଯେମିତି ନ ରହେ । ଅଣନିଶ୍ୱାସୀ କାମ ଭିତରେ ଖାଇବା ଦୂରେ ଥାଉ, କପେ କଳା କଫି ବି ପିଇ ହୁଏ ନାହିଁ । କଫି ପିଇବାକୁ ବେଳ ହୁଏ ପ୍ରାୟ ଦୁଇ ଅଢେଇ ଘଣ୍ଟା ପରେ । ସେତେବେଳେ ଆକାଶ ପରିଷ୍କାର ହେଇ ଆସୁଥାଏ । ରାସ୍ତାରେ ମଣିଷ, ଗାଡିଙ୍କ ଦୌଡାଦୌଡି ଆରମ୍ଭ ହେଇଯାଇଥାଏ ।

ହୋଟେଲ୍‌ର ବଡ ରୋଷେଇ ଘର ପାଖରେ ଥିବା ବାରଣ୍ଡାରେ ତା' ପାଇଁ ଆଉ ତା'ରି ଭଳି କାମ କରୁଥିବା ଅନ୍ୟମାନଙ୍କ ପାଇଁ ରଖାହୋଇଥାଏ ଥର୍ମସ୍‌ରେ କଫି । ପାଖରେ ମୋଟା ପାଉଁରୁଟିର ସାଣ୍ଡୱିଚ୍ । ସେତକ ତରବର ହୋଇ ଗିଳି-ପକେଇ ପୁଣି ଅନ୍ୟ କାମରେ ଲାଗିଯିବାକୁ ହୁଏ । ବସି ରହିବାର ସମୟ ନାହିଁ ।

କ୍ରିଷ୍ଟିନାକୁ ହାଡଭଙ୍ଗା ପରିଶ୍ରମ କରିବାକୁ ହେଉଥିଲା ସତ, କିନ୍ତୁ ମାସ ଶେଷରେ ହାତକୁ ଯେଉଁ ସୁଦୃଶ୍ୟ ପରିମାଣର ଚେକ୍‌ଟିଏ ଆସୁଥିଲା, ତା' ଯେମିତି ସବୁ ପରିଶ୍ରମକୁ ଭୁଲେଇ ଦେଉଥିଲା । ସେଥିରୁ ଅଳ୍ପ କିଛି ନିଜ ପାଇଁ ରଖି ସେ ସବୁ ଅର୍ଥ ଯୋଶେଫ୍ ପାଖକୁ ପଠେଇ ଦେଉଥିଲା । ସେଠି ଧାର କରଜ ସୁଝିବାକୁ ହେବ । ପୁଣି ଅଛି ପିଲାଙ୍କ ପାଠପଢା, ବାହାଘର । ସେସବୁ ପାଇଁ ବି ଏବେ ଠାରୁ ସଞ୍ଚୟ କରିବାକୁ ହେବ । କ୍ରିଷ୍ଟିନା ଅଧିକ ପରିଶ୍ରମ କରେ । ଆଠ ଘଣ୍ଟା ବଢି ବଢି ଦଶ ଘଣ୍ଟା, ବାର ଘଣ୍ଟା, ଚଉଦ ଘଣ୍ଟା ହେଇଯାଏ । ଏଠି ଯେ ଘଣ୍ଟା କଣ୍ଟା ମିନିଟ୍ କଣ୍ଟା ହିସାବରେ ହାତକୁ ଅର୍ଥ ଆସେ । ତା'ଛଡା ସେ ଭଡା ନେଇ ରହୁଥିବା ଘରର କ'ଣ ଏମିତି ଆକର୍ଷଣ ଯେ ସେ କାମକୁ ଆଡେଇ ଘରକୁ ଧାଇଁ ଆସିବ ?

ଘର ନୁହଁ, ବେସ୍‌ମେଣ୍ଟ । ମାଟି ତଳର ଘର । ସେଇ ଘରକୁ କାଠର ବିଭାଗ ଦେଇ ତିଆରି କରାହେଇଛି ଚାରୋଟି କୋଠରି । ଚାରିଟାଯାକ କୋଠରି ପାଇଁ ଗୋଟିଏ ଛୋଟ ରୋଷେଇ ଘର । ଆଉ ତା' ଠୁଁ ଆହୁରି ଛୋଟ ଗୋଟିଏ ବାଥ୍‌ରୁମ୍ । ସେ ଚାରୋଟି ଶୋଇବା ଘରେ, ରୋଷେଇ ଘରେ ଏବଂ ଛୋଟ ଗାଧୁଆ ଘରେ ଦିନରାତି ସମାନ । ଝର୍କା ନାହିଁ । ବାହାରର ଆଲୁଅ, ପବନ ଭିତରକୁ ଆସିବାର ପ୍ରଶ୍ନ ନାହିଁ । ଏମିତି ଘରଟିଏର ପୁଣି ଆକର୍ଷଣ ! ତା' ଅପେକ୍ଷା ଢେର୍ ଭଲ ହୋଟେଲ ।

କ୍ରିଷ୍ଟିନାର ଓଭର୍ ଟାଇମ୍ ବଢେ ।

ଯୋସେଫ୍‌ର ଚଠିଆସେ ନିୟମ କରି । ସେ ଲେଖେ– ଧାର ଦେଣା କେବେଠାରୁ ସୁଝିଗଲାଣି । ପ୍ରଥମେ ଛୋଟ ଘରଟିଏ କିଣିବା କଥା ସେ ଭାବିଥିଲା । କିନ୍ତୁ ପରେ ଭବିଷ୍ୟତ କଥା ଚନ୍ତା କରି ଦେଖିଲା ଯେ ବଡ ଘରଟିଏ ହିଁ ଭଲ । ସୁନ୍ଦର ଦୋତାଲା ଘରଟିଏ ବି ମିଳିଗଲା । ସହରଠୁଁ ଅଳ୍ପ ଦୂରରେ । ବେଶ୍ ସମ୍ଭ୍ରାନ୍ତ ଅଞ୍ଚଳରେ । ଘର ପାଇଁ ବ୍ୟାଙ୍କରୁ କିଛ ଋଣ ନେବାକୁ ହେଲା । ହେଲେ ଚନ୍ତା କ'ଣ ? କ୍ରିଷ୍ଟିନାର ଏତେ ଭଲ ଦରମା, ସାତ ବର୍ଷ ଭିତରେ ସବୁ ଋଣ ସୁଝିଯିବ । ଆହୁରି ପୁଣି ଫ୍ରିଜ୍ ଆସିଲାଣି ଘରକୁ । ତା' ପରେ ପରେ କୁକିଙ୍ଗ୍ ରେଞ୍ଜ୍, ୱାଶିଙ୍ଗ୍ ମେସିନ୍ ଆଉ ଅଠତିରିଶ ଇଞ୍ଚର ଟେଲିଭିଜନ୍ ।

ସବୁ ଠିକ୍ ମନମୁତାବକ ହୋଇଛି । କେବଳ ଗୋଟାଏ ବିଷୟକୁ ଛାଡିଦେଲେ । ତିନି ଝିଅଙ୍କର ପାଠ ପଢାରେ ମନନାହିଁ । ହେଲେ ବଡ ସୁନ୍ଦର ଦିଶୁଛନ୍ତି ସେମାନେ । ଭଲ ଘରର ପୁଅମାନେ ଚକ୍କର କାଟୁଛନ୍ତି ସେମାନଙ୍କ ଚାରିପଟେ । ଭଲରେ ଭଲରେ ସେମାନେ ନିଶ୍ଚୟ ବାହା ହେଇଯିବେ । ତା'ପରେ ଦାୟିତ୍ୱ ଶେଷ ।

କେବେ ସେ ଦିନ ଆସିବ ? କ୍ରିଷ୍ଟିନା ବିଣ୍ଡି ପଡି ଯାଇଥିବା ନିଜ ହାତକୁ ଦେଖି ଭାବି ହୁଏ ।

'ଯଥେଷ୍ଟ କଲଣି ତୁମେ ଅନ୍ୟମାନଙ୍କ ପାଇଁ । ଏଥର ନିଜ କଥା ଟିକିଏ ଭାବ ।' ତା' ସାଙ୍ଗରେ କାମ କରୁଥିବା ମେକ୍ସିକାନ୍ ଝିଅ ମାରିଆ କହେ ।

ନିଜ କଥା ପୁଣି କ'ଣ ? କ୍ରିଷ୍ଟିନା ହସି ଦେଉଦେଉ ଅନ୍ୟମନସ୍କ ହୋଇପଡେ । ପ୍ରଥମ ଆମେରିକା ଆସିବା ପରେ ଯେଉଁ ତିନିଜଣଙ୍କ ସାଙ୍ଗରେ ତା'ର ପରିଚୟ ହେଇଥିଲା, ଏକାଠି ଯେଉଁମାନଙ୍କ ସାଙ୍ଗରେ ସେ ପ୍ରଥମ ଘର ଭଡାନେଇ ରହିଥିଲା, ସେମାନେ ନିଜ ନିଜ ଜୀବନଧାରା ବଦଳେଇ ସାରିଲେଣି । ଦୁଇ ଜଣ ନୂଆ ସାଥୀ ଖୋଜି ନେଇ ନୂଆ ପରିବାର ଗଢି ସାରିଲେଣି । ତୃତୀୟ ଜଣକର ପାଠରେ ମନ ଥିଲା । ସେ ସନ୍ଧ୍ୟା କଲେଜରେ ନାଁ ଲେଖାଇ ପାସ୍ କରି ଆଟ୍ଲାଣ୍ଟାର ଗୋଟାଏ କମ୍ପାନୀରେ ଆସିଷ୍ଟାଣ୍ଟ୍ ମ୍ୟାନେଜର୍ ହେଇସାରିଛି ।

ଏକା ରହିଯାଇଛି କେବଳ କ୍ରିଷ୍ଟିନା । ଏ ମରୁଦ୍ୱୀପରୁ ବାହାରି ଯିବାର ଉପାୟ ଯେ ନାହିଁ, ତା' ତ ନୁହଁ । କ୍ରିଷ୍ଟିନାର ଆଖି ଚାଲିଯାଏ କାଚ କବାଟ ପାଖରେ ଠିଆହୋଇ ହୋଟେଲ ଅତିଥିଙ୍କର ଜିନିଷପତ୍ର ତଦାରଖ କରୁଥିବା ୱାଲ୍ଟର୍ ଉପରେ । ୱାଲ୍ଟର୍ ଦିନେ ତା' ବାପା, ମା'ଙ୍କର ହାତ ଧରି ଚାଲି ଆସିଥିଲା ସୁଦାନରୁ । ପଢାପଢିରେ ବେଶୀ ମନ ନ ଥିଲା, ସୁଯୋଗ ବି ନ ଥିଲା । ଛଅଫୁଟ୍ ଲମ୍ବା କଳା ମଚମଚ ବଳିଷ୍ଠ ଶରୀର । ପୂର୍ବ ଜେନେରାଲ୍ ମ୍ୟାନେଜରଙ୍କ କୃପା ଦୃଷ୍ଟି ପଡି ଅସ୍ଥାୟୀ ବେଲ୍ ବୟ ଚାକିରି ଦିନେ ମିଳିଯାଇଥିଲା । ସେଇଠୁ ବଢି ବଢି ସେ ଏବେ ସୁପରଭାଇଜର୍ ।

ହୋଟେଲରେ ଚାକିରି ଆରମ୍ଭ କରିବାର କେଇ ମାସ ପରଠୁଁ ୱାଲ୍ଟର କ୍ରିଷ୍ଟିନାକୁ ମଝିରେ ମଝିରେ ପାଖ ମ୍ୟାକ୍‌ଡୋନାଲ୍ଡ୍‌କୁ ନେଇଯାଏ ଆଇସ୍‌କ୍ରିମ୍ ପାଇଁ । ଆଇସ୍‌କ୍ରିମ୍‌ଟା ଉପଲକ୍ଷ୍ୟ ମାତ୍ର । ଅସଲ ଉଦ୍ଦେଶ୍ୟ ସୁଶ୍ରୀ କ୍ରିଷ୍ଟିନାକୁ ପାଖରେ ପାଇବା ।

ନିଜର ନିରସ, ନିରାନନ୍ଦମୟ ଜୀବନରୁ କିଛି ସମୟ ପାଇଁ ମୁକ୍ତି ପାଇବା ପାଇଁ କ୍ରିଷ୍ଟିନା ୱାଲ୍ଟର୍ ସାଙ୍ଗରେ ବାହାରକୁ ଯିବାକୁ ଲାଗିଲା । ପ୍ରଥମେ ଆଇସ୍‌କ୍ରିମ୍

ପାଇଁ । ପରେ ବର୍ଗର ପାଇଁ । ଶେଷରେ ପୁଣି ୱାଲ୍‌ଟର୍‌ର ଛୋଟ ଘରକୁ କେବଳ ୱାଲ୍‌ଟର୍ ପାଇଁ । ଶରୀରର କ୍ଷୁଧାକୁ ଆଉ ଉପେକ୍ଷା କରି ପାରିଲା ନାହିଁ ସେ ।

ଏହାରି ଭିତରେ ଦିନେ ୱାଲ୍‌ଟର୍ ବାହାଘର ପ୍ରସ୍ତାବ ଦେଲା । କହିଲା – 'ଡିଭୋର୍ସ କରିଦିଅ ତୁମ ସ୍ୱାମୀକୁ । ଏତେ ବର୍ଷ ଧରି ଯାହାକୁ ଥରେ ବି ଦେଖିନ, ଆଉ କ'ଣ ସତରେ କିଛି ସମ୍ପର୍କ ଅଛି ତା' ସାଙ୍ଗରେ ? ତୁମେ, ମୁଁ ଏକାଠି ସୁନ୍ଦର ସଂସାରଟିଏ ଗଢିବା ଏଇଠି ।'

କ୍ରିଷ୍ଟିନାର ଲୋଭ ହୁଏ । ୱାଲ୍‌ଟର୍ ତ ମିଛ କହୁନି । ହେଲେ. . . ହେଲେ. . . ସେଠି ଯେ ସେମାନେ ଆଶା କରି ବସିଛନ୍ତି !

ସେ ହିସାବ କରେ । ପୋଲାଣ୍ଡ ଛାଡି ଆସିବାବେଳେ ବଡ ଝିଅକୁ ହେଇଥିଲା ମାତ୍ର ବାର । ଅର୍ଥାତ୍ ଏବେ ସେ ଷୋହଳ ପାର ହେଇ ସତରରେ ପାଦ ଦେବଣି । ମଝିଆଁକୁ ହେଇଥିବ ପନ୍ଦର । ସାନକୁ ଚଉଦ । ଯୋଶେଫ୍ ଲେଖିଥିଲା ଯେ ଭାରୀ ସୁନ୍ଦର ଦିଶୁଛନ୍ତି ସେମାନେ । ଆଉ ଭଲ ପରିବାରର ପୁଅମାନେ ଘୂରୁଛନ୍ତି ସେମାନଙ୍କ ଆଖପାଖରେ । ତା'ମାନେ ତ ଶୀଘ୍ର ପୁଣି ବାହାଘର କଥା ଉଠିବ । ବଡ ଝିଅ ବାହାଘର ବେଳେ କ୍ରିଷ୍ଟିନା ନିଶ୍ଚୟ ପୋଲାଣ୍ଡ ଯିବ । ସେମାନଙ୍କୁ ସେ ଏତେ ବର୍ଷ ଧରି ଦେଖିନି । ତା' ଆଈ ବି ବଞ୍ଚି ରହିଛନ୍ତି ଏପର୍ଯ୍ୟନ୍ତ । ସାନ ମାଉସୀଙ୍କ ଚିଠି ଆସେ ଯେ ଆଈ ତା' କଥା କହି କାନ୍ଦନ୍ତି ବେଳେବେଳେ ।

ବେସ୍‌ମେଣ୍ଟର ନିର୍ଜନ କୋଠରୀ ଭିତରେ ଏକା ଏକା ଚିଠି ପଢୁ ପଢୁ କ୍ରିଷ୍ଟିନାର ମନ ଉଦ୍‌ବେଳିତ ହୋଇଉଠେ ।

ହେଲେ ଆଈଙ୍କ ପାଇଁ, ପିଲାଙ୍କ ପାଇଁ ଯେମିତି ମନ ତା'ର ଗୋଳେଇ ହେଇଯାଏ, ଯୋଶେଫ୍ ପାଇଁ କାହିଁକି ସେମିତି କିଛି ହୁଏନାହିଁ ? କାହିଁକି ? ଯୋଶେଫ୍ ସାଙ୍ଗରେ ତା' ସମ୍ପର୍କ କେବଳ ଚଠିର । ସେ ଚଠିମାନଙ୍କରୁ 'ଭଲ ପାଇବା', 'ବିରହ', 'ମିଳନ'– ସବୁ ଲିଭିଗଲାଣି କେବଠୁଁ । ଏବେ କେବଳ ହିସାବ ନିକାସ । ଖର୍ଚ୍ଚର ଅଟକଳ । ନିହାତି ବସ୍ତୁବାଦୀ ଏବେ ସେମାନଙ୍କର ସମ୍ପର୍କ ।

କ୍ରିଷ୍ଟିନା ସ୍ୱାମୀକୁ ଠିକ୍ ଦୋଷ ଦେଇପାରେ ନାହିଁ । ହଜାର ହଜାର ମାଇଲ୍ ଏବଂ ଶହଶହ ପୂର୍ଣ୍ଣିମାର ଦୂରତ୍ୱ କଟାଇ କ'ଣ ମନର ଭାବକୁ ପ୍ରକାଶ କରିହୁଏ ? ତା'ଛଡା ସ୍ତ୍ରୀଟି ଯେ ଆଉ ଏକନିଷ୍ଠ ରହି ପାରିନି, ସେ ଖବର ହୁଏତ ଉଡା-ଭାବରେ ତା' କାନରେ ପହଞ୍ଚିସାରିଛି ।

ଦୋଷଭାରରେ ନଇଁ ପଡେ କ୍ରିଷ୍ଟିନା । ତା'ର ବେଶ୍ ଭୁଲ ହେଇଯାଇଛି । ନିଜ ଭୁଲ୍‌କୁ ଏଥର ଠିକ୍ କରିନେବାକୁ ହେବ । ତା' ଉଜୁଡା ସଂସାରକୁ ତାକୁ

ହିଁ ସଜାଡ଼ି ନେବାକୁ ହେବ ।

ସେ ୱାଲ୍‌ଟର୍‌ର ପ୍ରସ୍ତାବ ମାନି ନେଇପାରିଲା ନାହିଁ । ଚେଷ୍ଟାକରି ଦୂରେଇଗଲା । ଆଠ ଦଶ ମାସ ଅପେକ୍ଷା କଲା ୱାଲ୍‌ଟର୍ । ନିଜ ତରଫରୁ ଚେଷ୍ଟା କଲା । କିଛି ଲାଭ ନାହିଁ । ଶେଷରେ ଏମିତି ତା' ମନ ଭାଙ୍ଗିଗଲା ଯେ ସେ ଚାକିରି ଛାଡ଼ି-ଦେଇ ଚାଲିଗଲା ସୁଦୂର ଆଲାସ୍କା । ସେଠି କୁଆଡେ଼ ଏବେ ସେ ଦୁଇଗୁଣ ଦରମାରେ ଅନ୍ୟ ଏକ ହୋଟେଲ୍‌ରେ ଚାକିରି କରେ ।

କ୍ରିଷ୍ଟିନା ଚାରିପଟେ ନିଃସଙ୍ଗତାର ବଳୟ । ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ସେ ଆହୁରି ଅଧିକ କାମରେ ବୁଡ଼ି ଯିବାକୁ ଲାଗିଲା । ସମୟ କଟିଯିବାକୁ ଲାଗିଲା ।

ବଡ ଝିଅର ବାହାଘର ହେବ । ଝିଅ ନିଜେ ଠିକ କରିଛି ସ୍ୱଚ୍ଛଳ ପରିବାରର ଶିକ୍ଷିତ ପୁଅଟିଏକୁ । ଏତେ ଭଲ ପରିବାରରେ ବାହାଘର ଯେତେବେଳେ ହେଉଛି, କିଛିଟା ତ ଜାକଜମକରେ କରିବାକୁ ହେବ । ନହେଲେ ପୁଅ ଘର ଅସନ୍ତୁଷ୍ଟ ହେବେ । କ୍ରିଷ୍ଟିନା ଯୋଶେଫ୍‌ର ଚଠିକୁ ନିଠେଇ ନିଠେଇ ପଢ଼ିଲା । ବାହାଘରର ଖର୍ଚ୍ଚ ଅଟକଳ । ତା'ଛଡ଼ା ଝିଅକୁ, ଝିଅର ନୂଆ ସଂସାରକୁ ସଜେଇବାର ଖର୍ଚ୍ଚ । କ୍ରିଷ୍ଟିନା ବ୍ୟାଙ୍କ୍‌ର ପାସ୍ ବହି ଓଲଟାଏ ।

ଯେତିକି ଅଛି, ନିହାତି କମ୍ ନୁହଁ । ଏଥିରେ ସବୁ ହେଇଯିବ, ହେଲେ ତା' ନିଜର ପୋଲାଣ୍ଡ ଯିବା ଖର୍ଚ୍ଚ ତ ଉଠିବନି । ଦୀର୍ଘ ନିଃଶ୍ୱାସ ନେଇ ମନ ସ୍ଥିର କରିନେଲା ସେ । ନ ହେଉ ତା' ଯିବା, ଝିଅ ବାହାଘରରେ କିଛି ଊଣା ଅଭାବ ଯେମିତି ନ ରହୁ । କ୍ରିଷ୍ଟିନାର ନିଜ ଦେଶକୁ ଯିବା ସ୍ଥଗିତ ରହିଲା ।

ଝିଅ ବାହାଘର ହେଇଗଲା । ବାହାଘରର ଫଟୋ ଯଥାସମୟରେ କ୍ରିଷ୍ଟିନା ପାଖରେ ପହଞ୍ଚି ବି ଗଲା । ସେ ଛଳଛଳ ଆଖିରେ ଦେଖିଲା ତିନିଝିଅକୁ । ଯୋଶେଫକୁ ।

ଯୋଶେଫ୍‌ର ଚେହେରା ବଦଳିଛି । ଶ୍ରମିକ ଜୀବନର ମାଂସପେଶୀ-ବହୁଳ ଶରୀର ଆଉ ନାହିଁ । ଅଳସ ସୁନ୍ଦର ଜୀବନ ତାକୁ ବଦଳେଇ ଦେଇଛି । ଦେହରେ ସାମାନ୍ୟ ମେଦ । ମୁଣ୍ଡର ବାଳ ରୁପେଲୀ । ସବୁ ମିଶି ଏକ ସଂଭ୍ରାନ୍ତ ଚେହେରା । କ୍ରିଷ୍ଟିନାର ଗର୍ବ ହେଲା । ପରମୁହୂର୍ତ୍ତରେ ଧାଇଁଯାଇ ହୋଟେଲ୍‌ର ବିଶାଳ ବାଥରୁମରେ ନିଜ ଚେହେରା ଦେଖିଲା ସେ । କିଏ ଏ ବୟସ୍କା ମହିଳା ? କ୍ରିଷ୍ଟିନା ଚମକି ପଡ଼ିଲା । କେମିତି ଏତେ ଦିନ ତା' ଆଖିରେ ପଡ଼ିନଥିଲା ? ଶେଷରେ ଏଇ ଚେହେରା ହେଇଛି ତା'ର ?

ମୁହଁରେ ଅସଂଖ୍ୟ ବଳି ରେଖା । ଅଯତ୍ନରେ ବାଳ ପତଳା । ଖିଆପିଆରେ ଅବହେଳା କରି ଶରୀର ଆଉ ଆଗଭଳି କମନୀୟ ନାହିଁ । ଏଇ ଚେହେରା ନେଇ ସେ ନିଜ ଦେଶକୁ, ନିଜ ପରିବାର ପାଖକୁ ଯିବ ? ଆସନ୍ତା ବର୍ଷ ଯେ ମଝିଆଁ ଝିଅ ବାହାଘର । କ୍ରିଷ୍ଟିନା ପୁଣି ଦର୍ପଣରେ ନିଜ ପ୍ରତିଛବି ଦେଖିଲା ।

ନା, ଏଥର ବି ଯିବା ହେଲା ନାହିଁ । କିଛି ବର୍ଷ ତଳେ 'ଗ୍ରିନ୍ କାର୍ଡ' ପାଇଁ ଦରଖାସ୍ତଟିଏ ପକେଇ ଦେଇଥିଲା ସେ । ମନେହେଉଛି, ଏହାରି ଭିତରେ ଆସିଯିବ । ସେତେବେଳେ ଯଦି କୌଣସି କାରଣରୁ ସେ ଏଠି ନ ରହେ, ତାହେଲେ ଯେ ସବୁ ଚେଷ୍ଟା ବୃଥା ଯିବ ।

ସାନ ଝିଅ ଚଠି ଲେଖେ । – 'ତୁମକୁ ଯେ ବାର ବର୍ଷ ଧରି ଦେଖିନି, ମା' । କେବେ ଆସିବ ?'

ବଡ ଝିଅ ଲେଖେ, 'ତୁମର ତିନିଜଣ ନାତି ନାତୁଣୀ ହେଲେଣି । ସେମାନଙ୍କୁ ଦେଖିବାକୁ ତୁମ ମନ ଅଧୀର ହୁଏ ନାହିଁ ?'

ଦିନେ ଆସିଗଲା ଗ୍ରିନ୍‌କାର୍ଡ । ଆଉ ଯାତାୟାତ କରିବାର ଅସୁବିଧା ନାହିଁ । ଅନୁମତି ମିଳିବା ନ ମିଳିବାର ଚନ୍ତା ନାହିଁ । ଯେଉଁଦିନ କ୍ରିଷ୍ଟିନା ପାସ୍‌ପୋର୍ଟରେ ମୋହର ବସିଗଲା, ସେଦିନ ହିଁ ସେ ନିଜ ପାଇଁ ବଜାରରୁ ନୂଆ ସୁଟ୍‌କେଶଟିଏ କିଣି ଆଣିଲା । ଦୁଇଟା ନୂଆ ଡ୍ରେସ୍ କିଣି ଆଣିଲା ଦୋକାନରୁ । ତାକୁ ଯେ ପୋଲାଣ୍ଡ ଯିବାକୁ ହେବ । କ୍ରିଷ୍ଟିନା ପାଦରେ ଯେମିତି ପର ଲାଗିଗଲା । ସଂଧ୍ୟା ବେଳେ ଘରକୁ ଫେରିବା ରାସ୍ତାରେ ଆଉ ଆଗର କ୍ଳାନ୍ତି ତାକୁ ଜାବୁଡି ଧରୁ ନ ଥିଲା । ତା'ର ଯେ ଏବେ ବହୁତ କାମ । ଯୋଶେଫ୍ ପାଇଁ, ଝିଅମାନଙ୍କ ପାଇଁ, କେବେ ଦେଖି ନ ଥିବା ଜୋଇଁ, ନାତି ନାତୁଣୀଙ୍କ ପାଇଁ ବହୁତ ଜିନିଷ କିଣିବାକୁ ହେବ । ନିଜ ଦେଶକୁ ଯିବାର ଦିନ ଆଗେଇ ଆସୁଛି ।

କ୍ରିଷ୍ଟିନା ଉଡାଜାହାଜରେ ବସିଲା ଭିନ୍ନ ରୂପରେ । ଦେହରେ ସବୁଦିନିଆ ହୋଟେଲ୍ ୟୁନିଫର୍ମ୍‌ର ଆକାଶୀ ସାର୍ଟ ନୀଳ ପ୍ୟାଣ୍ଟ ନାହିଁ, ନାହିଁ ଶୁଖିଲା ମୁହଁର କଠୋରତା । ଛୋଟ ଛୋଟ ଫୁଲ ପକା କଳା ରଙ୍ଗର ଡ୍ରେସ୍ ଦେହରେ । ମୁହଁରେ ପ୍ରସାଧନ । ଆଖିତଳର କଳାଦାଗ ଲୁଚଯାଇଛି । ଓଠରେ ରଙ୍ଗ ଆଉ ଛୋଟ ହସ ।

ଏଆର୍‌ପୋର୍ଟ୍‌କୁ ସମସ୍ତେ ଆସିଥିଲେ । ଯୋଶେଫ୍, ତିନି ଝିଅ, ଦୁଇ ଜୋଇଁ, ନାତି ନାତୁଣୀ । ସମସ୍ତେ । କ୍ରିଷ୍ଟିନା ଆଖିରୁ କେବଳ ଲୁହ ଝରୁଥିଲା । ଏହାରି ଭିତରେ ପନ୍ଦର ବର୍ଷ କଟିଗଲା ? ପନ୍ଦରବର୍ଷ ? ସେ ଅବାକ ହୋଇ ନିଜ ପରିବାରକୁ ଦେଖୁଥିଲା । ଦେଖୁଥିଲା ତା'ରି ଝାଳବୁହା ଅର୍ଥରେ କିଣା ଘରକୁ । ଘରର ଆସବାବ-

ପତ୍ରକୁ । ଆଉ ତୁଳନା କରୁଥିଲା ବେସ୍‌ମେଣ୍ଟର ଝରକା ନ ଥିବା ସେଇ କୋଠରୀ ସାଙ୍ଗରେ ।

ଯୋଶେଫ୍ କ'ଣ ବଦଳି ଯାଇଥିଲା ? ସେଇ ସ୍ନେହୀ ମଣିଷ । କିନ୍ତୁ ଦୁଇ-ଜଣଙ୍କ ଭିତରେ ଏକଦା ଯେଉଁ ସୂକ୍ଷ୍ମ ବନ୍ଧନ ଥିଲା, ସେଇଟା ଯେ ପନ୍ଦର ବର୍ଷ ଭିତରେ ଢିଲାହେଇ ଛିଣ୍ଡିଯାଇ ସାରିଥିଲା, ତା' ଦୁହେଁ ଭଲଭାବରେ ବୁଝିପାରିଥିଲେ । ଦିନଯାକର ଗହଳ, ଚହଳ ପରେ ଯେତେବେଳେ ରାତିରେ ଏକାନ୍ତ ଭାବରେ ସେମାନେ କିଛି ସମୟ ପାଇଲେ, ସେ ସମୟ କଟିଲା ଅସ୍ୱସ୍ତିରେ । ଅଶାନ୍ତ ଭାବରେ । ଉଭୟଙ୍କ ପାଇଁ ଉଭୟ କେବଳ ଏକଦା ପରିଚତ ବନ୍ଧୁ ହୋଇ ଯାଇଥିଲେ, ଆଉ ଅଧିକ କିଛି ନୁହଁ । କ୍ରିଷ୍ଟିନା ଚେଷ୍ଟା କରିଥିଲା । ଏବେ ତା ପାଖରେ ଗ୍ରିନ୍-କାର୍ଡ । ଚେଷ୍ଟା କରିଲେ, ଚାହିଁଲେ, ଯୋଶେଫ୍ ତା' ସାଙ୍ଗରେ ଆମେରିକା ଚାଲି ଯାଇପାରିବ । ଆଉ କାମ କରିବାର ମାନସିକ ପ୍ରସ୍ତୁତି ଥିଲେ, ଆମେରିକାରେ କାମର, ଅର୍ଥର ଅଭାବ ହୁଏ ନାହିଁ । ଯୋଶେଫ୍ ପାଇଁ ବି ହେବ ନାହିଁ ।

ଯୋଶେଫ୍ ସବୁ ଶୁଣି ଚୁପ୍ ରହିଥିଲା । ଏତେ ବର୍ଷ ଧରି ଅଳସଭରା ଜୀବନ କଟାଇବା ପରେ ପୁଣି ଶାରୀରିକ ପରିଶ୍ରମ ତ ସମ୍ଭବ ନୁହଁ । ଆଉ ପୁଣି ଏଇଠି ଅଛି ତା' ପ୍ରାଣର ହେଲେନ୍, ଯାହା କଥା ସେ କ୍ରିଷ୍ଟିନାକୁ କହିପାରିନାହିଁ । ହେଲେନ୍ ସାଙ୍ଗରେ ତା'ର ସାମାଜିକ ସମ୍ପର୍କ କିଛି ନାହିଁ, ଆଇନର ସମ୍ପର୍କ ନାହିଁ, ହେଲେ ସେ ତ ଏବେ ତା' ଜୀବନର ଆଧାର । ନା, ହେଲେନ୍‌କୁ ଛାଡି ସେ ବଞ୍ଚିପାରିବ ନାହିଁ । ତା'ଛଡା ପୋଲାଣ୍ଡର ଏଇ ଛୋଟ ସହରରେ ତା'ର କେତେ ସମ୍ମାନ, କେତେ ଖାତିର । ସବୁକୁ ପାଦରେ ଆଡେଇ ଦେଇ କ'ଣ ଯାଇହେବ ?

–'ପୁଣି ଏ ବୟସରେ ନୂଆ ଭାଷା ଶିଖିବ କିଏ ?' ଯୋଶେଫ୍ ଦୁର୍ବଳ ଯୁକ୍ତି କାଢିଥିଲା ।

କ୍ରିଷ୍ଟିନା ତାକୁ ଆଉ ବାଧ୍ୟ କରିନଥିଲା । ହେଲେନ୍ କଥା ସେ ସାନ ମାଉସୀଙ୍କଠୁଁ ଶୁଣିଛି । ତା' ଫଟୋ ସେ ଯୋଶେଫ୍‌ର ଆଲମାରୀ ଭିତରେ ଦେଖିଛି । ଲୁଗା-ଥାକ ତଳେ । କିନ୍ତୁ ପାଟି ଖୋଲିନି । ପ୍ରଶ୍ନ କରିନି । ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଓ୍ୱାଲ୍‌ଟର୍ ପାଇଁ ତା' ମନ ବି ତ ଦିନେ ଚହଲି ଯାଇଥିଲା ।

–'ତୁ ଯାଆନା ଆଉ ଆମେରିକା । ରହି ଯା ଏଠି ।' କାନ୍ଦ କାନ୍ଦ ସ୍ୱରରେ କ୍ରିଷ୍ଟିନାର ଆଈ କହିଥିଲେ – 'ରହି ପାରିବୁନି ?'

କ୍ରିଷ୍ଟିନା ଯେ ରହି ଯାଇ ପାରିବନି, ତା' ନୁହଁ । ସେ ଭାବନା କେତେଥର ଆସିଥିଲା ତା' ମନକୁ । ବାଉନ ବର୍ଷର ଶରୀର ବି ତ ଦିନେ କ୍ଲାନ୍ତ ହୁଏ । କିନ୍ତୁ

କ୍ଲାନ୍ତିକୁ ମନରୁ ଦୂରେଇ ଦେଲା ସେ । ତା' ପାଇଁ ଯେ ଆହୁରି ଅନେକ କାମ ବାକୀ । ଆସନ୍ତା ବର୍ଷ ସାନଝିଅର ବାହାଘର ହେବ । ବିରାଟ ଖର୍ଚ୍ଚ । ଯୋଶେଫ୍‌ର ଭଲ ଗାଡ଼ିଟିଏ କିଣିବାର ଇଚ୍ଛା ଅଛି । ବଡ ନାତି ଭଲ ପାଠ ପଢୁଛି । ଭବିଷ୍ୟତରେ ଆମେରିକାର କଲେଜରେ ପଢ଼ିବା ଆଶା ସେ ରଖିଛି । ମଝିଆଁ ଜ୍ୱାଇଁ ଚାକିରି ଛାଡ଼ି ବ୍ୟବସାୟ ଆରମ୍ଭ କରିବା କଥା ଭାବୁଛନ୍ତି । ବ୍ୟବସାୟ ପାଇଁ ଯୋଗ୍ୟତା ଅଛି, ଅନୁଭବ ଅଛି, କିନ୍ତୁ ମୂଳଧନ ନାହିଁ ।

ଗ୍ରିନ୍‌କାର୍ଡ ପାଇ ସାରିଥିବା କ୍ରିଷ୍ଟିନାର ବଦାନ୍ୟତାକୁ ଆକୁଳ ନୟନରେ ଚାହିଁ ରହିଛନ୍ତି ସମସ୍ତେ । ତା' ଦୟାର ପ୍ରାର୍ଥୀ ଅନେକେ । ନା, ସେମାନଙ୍କୁ ସେ ନିରାଶ କରିପାରିବ ନାହିଁ ।

ଶେଷ ଖବର ଏଇଭଳି । କ୍ରିଷ୍ଟିନା ଫେରି ଆସିଥିଲା ତା' ବେସ୍‌ମେଣ୍ଟ୍‌ର କାଠ କାନ୍ଥର କୋଠରୀ ଭିତରକୁ । ଯେଉଁଠି ଝର୍କା ନାହିଁ । ଯେଉଁଠି ବାହାରର ପବନ, ଆଲୁଅ ପାଦ ଦେଇପାରେ ନାହିଁ । ପୋଲାଣ୍ଡ ଯିବାବେଳେ କିଣିଥିବା ନୂଆ ପୋଷାକ-ତକ ସୁଟକେଶରେ ରଖି ଦେଇଛି ସେ । ସେସବୁର ଆଉ ଆବଶ୍ୟକତା ନାହିଁ । ଏବେ ତାକୁ ଦେଖିବାକୁ ମିଳେ ସେଇ ଏକାରକମ ପୋଷାକରେ । ଆକାଶୀ ରଙ୍ଗର ପୂରା ହାତ ସାର୍ଟ, ନୀଳରଙ୍ଗର ପଲିଷ୍ଟର୍ ପ୍ୟାଣ୍ଟ୍ । ସେଇ ପୋଷାକ ପିନ୍ଧି ଭୋର୍ ଚାରିଟାରୁ ରାତି ଆଠଟା ପର୍ଯ୍ୟନ୍ତ ସମୟ କଟିଯାଏ କ୍ରିଷ୍ଟିନାର ।



# ମୁଠାଏ ବତାସ

ସାତଦିନରେ ବିଦେଶଯାତ୍ରାର ନିଶା ତାପସୀ ମୁଣ୍ଡରୁ ଓହ୍ଲେଇଗଲା । ବର୍ଷ ବର୍ଷ ଧରି କେତେ ଆଶା, ଗତ କେଇମାସର କେତେ ପରିକଳ୍ପନା– ଶେଷରେ ଏଇ !

'କ'ଣ ହେଲା ? ଖାଉନ କାହିଁକି ?' କଣ୍ଟା ଚାମଚ, ଛୁରିରେ ଦକ୍ଷତାର ସହିତ ଗ୍ରିଲ୍‌ଡ୍ ଚିକେନ୍ ଖାଉ ଖାଉ ଅକ୍ଷୟ ପଚାରିଲା ।

'ଖାଉଛି ତ ।' ପାଉଁରୁଟୀରୁ ଛୋଟ ଖଣ୍ଡେ ଭାଙ୍ଗି ପାଟିରେ ଦେଲା ତାପସୀ ।

'କୋଉଠି ଖାଉଛ ? ଚିକେନ୍ ତ ସେଇମିତି ରହିଛି ।'

ଏଥର ତାପର୍ସୀ ସ୍ୱରରେ ବିରକ୍ତି ଫୁଟିଲା । 'କେତେ ଆଉ ସେଇ ସିଝା ଚିକେନ୍ ଖାଇବି ?. . . ଏ ଦେଶର ଲୋକମାନଙ୍କୁ କ'ଣ ରନ୍ଧା ଜଣାନାହିଁ ?'

ଖାଇବା ବନ୍ଦ କରି ଅକ୍ଷୟ ହସିଲା । କହିଲା, 'ଏମାନଙ୍କୁ ଯଦି ଆମ ଖାଇବା ଲାଗ ଲାଗ କିଛି ଦିନ ଖୁଆଇ ଦେବ, ସେଇ ଏକା କଥା ଏମାନେ କହିବେ । କହିବେ, କେମିତି ଖାଆନ୍ତି ଭାରତୀୟ ଲୋକମାନେ ଏତେ ମଶଲା, ଲଙ୍କା ? କାହିଁକି ପରିବାକୁ, ମାଂସକୁ ସେମାନେ ଏତେ ବେଶୀ ସିଝାନ୍ତି ?'

'ବାଜେ କଥା । ଯଦି ଏକଥା ସତ ହେଇଥାଆନ୍ତା, ତାହେଲେ ପୃଥିବୀର ସବୁ ବଡ ବଡ ସହରରେ ଏତେ ଭାରତୀୟ ରେସ୍ତୋରାଁ ନ ଥାଆନ୍ତା ।'

ତାପସୀର ଏଇଟା ପ୍ରଥମ ବିଦେଶଯାତ୍ରା ହେଇପାରେ, କିନ୍ତୁ ବିଦେଶ ଉପରେ ତା' ଧାରଣା ସ୍ୱଚ୍ଛ । ହେଲେ ଏତେ ସହଜରେ ଅକ୍ଷୟ ହାର ମାନିବାକୁ ପ୍ରସ୍ତୁତ ନଥିଲା । 'ତୁମେ କେବଳ ବଡ ବଡ ସହର କଥା କହୁଛ । ସେଠି ଦେଶ ବିଦେଶର ଅନେକ ମଣିଷ । ସେଥିପାଇଁ ଆବହାଓ୍ୱା ଅନ୍ୟରକମ । ମଣିଷମାନଙ୍କର ଦୃଷ୍ଟିକୋଣ ଭିନ୍ନ । ଖାଇବା ନେଇ ପରୀକ୍ଷା ନିରୀକ୍ଷା କରିବାକୁ ସେମାନେ ପସନ୍ଦ କରନ୍ତି । ଛୋଟ ସହରମାନଙ୍କରେ ସେ ସୁଯୋଗ କାହିଁ ?'

ନିଜ ଅଜାଣତରେ ଯୁକ୍ତିର ଠିକ୍ ସେଇ ବିନ୍ଦୁରେ ଅକ୍ଷୟ ପହଞ୍ଚିଗଲା, ଯେଉଁଠି ତାକୁ ପହଞ୍ଚେଇ ଦେବାକୁ ଚାହୁଁଥିଲା ତାପସୀ । 'ସେଇଥି ପାଇଁ ତ ମୁଁ କହୁଥିଲି

ମୋତେ ଅଞ୍ଜୁ ନାନୀଙ୍କ ଘରେ ବର୍ଲିନ୍‌ରେ ଛାଡିଦେଇ ଯାଅ । ପାଞ୍ଚଦିନିଆ କାମ ଦାମ ସାରି ତୁମେ ଫେରି ଥାଆନ୍ତ, ଆଉ ତା'ପରେ ଆମେ ଏକାଠି ଇଉରୋପର ଅନ୍ୟ ଆଡେ ବୁଲି ଯାଇଥାଆନ୍ତେ ।. . . ତୁମ ମାଉସୀ ଝିଅ ଭଉଣୀଜଣକ ବଡ ଭଲ ମଣିଷ । କହିଲେ ରହି ଯା' । ବର୍ଲିନ୍ ସହର ବୁଲେଇବି । ବଡ ବଡ ଦୋକାନକୁ ନେଇଯିବି । ଦହି ପଖାଳ ଖୁଏଇବି । ମାଛ ବେସର ଖୁଏଇବି ।. . . ହେଲେ ତୁମେ ତ ଜିଦି ଧରି ବସିଗଲ ।'

ଅକ୍ଷୟ ମୁହଁରେ ମିଛ ଅଭିମାନର ରଙ୍ଗବୋଳି ଦେଇ କହିଲା, 'ମୋ ସାଙ୍ଗରେ ରହିବା ଅପେକ୍ଷା ବୁଲିବା, ଖାଇବା ବଡ ହେଲା ତୁମ ପାଇଁ ? ବିଦେଶକୁ ଆସି ପୁଣି ଦହି ପଖାଳ ଆଉ ମାଛ ବେସରକୁ ଝୁରୁଛ !'

'ଥାଉ, ନାଟକ ନ କଲେ ବି ଚଳିବ ।' ହସି ଦେଇ ତାପସୀ ଚିକେନ୍ ଉପରେ ସାମାନ୍ୟ ଲୁଣ ଆଉ ବେଶ୍ ପରିମାଣରେ ଗୋଲମରିଚ ଛିଞ୍ଚିଦେଲା । ଏଥର ଗଳାଃଧ-କରଣ କରିବାକୁ ବିଶେଷ ଅସୁବିଧା ହେବ ନାହିଁ ।

କେମିତି ଯେ ଅକ୍ଷୟ ବିନା ପ୍ରତିବାଦରେ ଏଇସବୁ ନିୟମିତ ଭାବରେ ଖାଏ ! ଅଭ୍ୟାସ । ଏମ୍ ଟେକ୍ ପରେ ପରେ ସେଇ ଯେଉଁ ଜର୍ମାନ୍ ଇଞ୍ଜିନିଅରିଙ୍ଗ୍ କମ୍ପାନୀରେ ଚାକିରି ପାଇ ଯାଇଥିଲା ଅକ୍ଷୟ, ଆଜି ଯାଏଁ ସେଇଠି । ଚାକିରି ବଦଳେଇ ଅନ୍ୟ କୋଉଠିକି ଯିବା କଥା ଭାବି ନାହିଁ । କାମରେ ବର୍ଷକୁ ଚାରି ପାଞ୍ଚ ଥର ଜର୍ମାନୀ ଯିବାକୁ ହୁଏ ତାକୁ । ତା'ରି ଭିତରେ କିଛି କାମଚଳା ଜର୍ମାନ ଭାଷା ଆଉ ମୋଟାମୋଟି ଏଠିକା ଖାଦ୍ୟଟା ତା' ଅଭ୍ୟାସରେ ପଡିଯାଇଛି ।

ତାପସୀ ସାଙ୍ଗରେ ବାହାଘର ପରେ ଅକ୍ଷୟ ସବୁବେଳେ କହୁଥିଲା ଯେ ସ୍ତ୍ରୀକୁ ବି ଦିନେ ସେ ବୁଲାଇ ନେଇ ଯିବ ଜର୍ମାନୀ । ଇଉରୋପ୍ । ହେଲେ ବିଭିନ୍ନ କାରଣରୁ ସାତ ବର୍ଷ ଯାଏଁ ହେଇ ପାରିଲା ନାହିଁ । ପ୍ରଥମେ ତାପସୀର ପିଏଚ୍‌ଡି ନେଇ ଚାପ । ତା'ପରେ ପରେ ଚାକିରି ଖୋଜାର ପର୍ବ । ସେସବୁ ନ ହେଉଣୁ କୋଳରେ ପୁଅ । ଶେଷରେ ଦିନେ ତିନିବର୍ଷର ପୁଅକୁ ନିଜ ପାଖକୁ ନେଇଯାଇ ଅକ୍ଷୟ ମା' ପୁଅକୁ ଆଦେଶ ଦେଲେ, 'ସାତବର୍ଷ ହେଲାଣି କହି ହେଉଛୁ, ଥରେ ନେଇପାରିଲୁ ନାହିଁ ତାପସୀକୁ ଜର୍ମାନୀ ? ମୁଁ ରଖିବି ପୁଅକୁ । ଯାଅ, ବୁଲି ଆସ ।'

ପାସ୍‌ପୋର୍ଟ ତ ଆଗରୁ ଥିଲା । ଭିସା ବି ଶୀଘ୍ର ମିଳିଗଲା । ତା'ପରେ ଏଇ ।

ଅକ୍ଷୟ କମ୍ପାନୀର ହେଡ୍ ଅଫିସ୍ ଜର୍ମାନୀ ରାଜଧାନୀ ବର୍ଲିନ୍‌ରେ, କିନ୍ତୁ କାମରେ ତାକୁ ଦେଶ ଭିତରେ ଭିତରେ ବୁଲିବାକୁ ହୁଏ । ରାଇନ୍, ମୋସେଲ୍ ଏବଂ ସ୍ପ୍ରି ନଈ କଡରେ ଥିବା ଛୋଟ ଛୋଟ ସହର ଆଉ କେଇଟା ବଡ ଗାଁମାନଙ୍କୁ

ଯିବାକୁ ହୁଏ । ତା'ରି ସାଙ୍ଗରେ ସାଙ୍ଗରେ ବୁଲୁଥିଲା ତାପସୀ ଏବଂ ମୁଗ୍ଧ ହେଉଥିଲା । ଏତେ ସୌନ୍ଦର୍ଯ୍ୟ ! ପ୍ରକୃତି ଯେମିତି ଅବାରିତ ଭାବରେ ନିଜକୁ ବିଲୀନ କରି ଦେଇଛି ଏଠି ।

ସବୁ ଭିତରେ କିନ୍ତୁ ତା'ର ମନ ଭଣା ରହିଯାଉଥିଲା । ଭାତ ମାଛ ଝୋଳ ଖିଆ ପକ୍କା ଓଡିଆଣୀ ସେ, କେତେ ଆଉ ଚକେନ୍ ସିଝା, ସାଲାଡ, ପାଉଁରୁଟୀ ଖାଇବ ?

ଅକ୍ଷୟ ବାରମ୍ବାର ଆଶ୍ୱାସନା ଦେଉଥିଲା, 'ଆଉ ପାଞ୍ଚଟା ଦିନ କଥା ତ, ଅପେକ୍ଷା କରିଯାଅ । ତା'ପରେ ଯିବା ପ୍ୟାରିସ୍ । ଆଇଫେଲ୍ ଟାୱାର୍ ଦେଖିବ । ମୋନାଲିସା ଦେଖିବ । . . . ପ୍ୟାରିସ୍‌ରୁ ପୁଣି ଲଣ୍ଡନ । ସେଠି ଟାୱାର୍ ବ୍ରିଜ୍ ଦେଖିବ । କୋହିନୁର୍ ହୀରା ଦେଖିବ । ଆଉ ଲଣ୍ଡନରେ ଇଣ୍ଡିଆନ୍ ରେସ୍ତୋରାଁ ଯାହାକୁ ଯେତେ ।'

ଅକ୍ଷୟ କଥା ଶୁଣି ମୁହଁ ଫୁଲାଇ ତାପସୀ ସେଇ ଏକା କଥା କହୁଥିଲା, 'ଯା' ମ ଯା – ପାଞ୍ଚ ଦିନଟାକୁ ତିନିଦିନ କରିଦେଇ ପାରିଲ ନାହିଁ, ଆଉ କଥା କହୁଛ !'

ଏମିତି କହିବାର କାରଣ ଅବଶ୍ୟ ଥିଲା । ମାତ୍ର ତିନିଦିନ ପରେ ତାପସୀର ଜନ୍ମଦିନ । ଆଉ ଏ ବର୍ଷ ଜନ୍ମଦିନ ଭଳି ଗୋଟାଏ ବିଶେଷ ଦିନରେ ତାକୁ ଆଠଟା ଘଣ୍ଟା ଏକା ଏକା କଟେଇବାକୁ ହେବ । ସକାଳ ନଅରୁ ସନ୍ଧ୍ୟା ପାଞ୍ଚଟା ଯାଏଁ ଅକ୍ଷୟର ଜରୁରୀ କାମ । ସେଇଥିପାଇଁ ନା ତା' ର ଏତେ ମୁହଁ ଫୁଲା, ଗୋଡ କଚଡା !

ଅକ୍ଷୟ ଏମିତିରେ କୌଣସି ଦିନ କଳ୍ପନାପ୍ରବଣ ନ ଥିଲା । ପୁଣି ଜର୍ମାନ୍ କମ୍ପାନୀରେ କାମ କରି କରି ସେ ଆହୁରି ବେଶୀ ବାସ୍ତବବାଦୀ ହେଇଯାଇଛି । ତା'ପାଇଁ ଜନ୍ମଦିନ, ବିବାହ ବାର୍ଷିକୀ– ସବୁ ଅନ୍ୟ ଦିନ ଭଳି । ହେଲେ ସେ ଜାଣେ ତାପସୀ ଉପଭୋଗ କରେ ଏଇ ବିଶେଷ ଦିନମାନଙ୍କୁ । ସେଥିପାଇଁ ସେ ତା' ନିଜ ଉପାୟରେ ଦିନଗୁଡିକୁ ସୁନ୍ଦର କରିବାକୁ ଚେଷ୍ଟା କରେ । ଭଲ ଭଲ ଉପହାର କିଣି ଆଣେ । ଭଲ ଜାଗାକୁ ଖୁଆଇବାକୁ ନେଇଯାଏ ।

ଉପହାର କିଣା ପର୍ବ ସରିଛି । ହେଲେ ଭଲଜାଗାରେ ଖାଇବାକୁ ଯିବା କଥାଟି, ଅନ୍ତତଃ ତାପସୀ ପାଇଁ ଯେଉଁଟା ଭଲ ଜାଗା, ତା' ଏବର୍ଷ ହେବାଭଳି ଲାଗୁ-ନାହିଁ । ବିଚାରୀକୁ ସେଇ ଏକା ଉର୍ଜମର 'ସିଝା, ଅଲଣା, ଅଖାଦ୍ୟ' ଖାଇବାକୁ ହେବ ।

ଚାଲିଗଲା ଆଉ ଗୋଟାଏ ଦିନ । ପୁଣି ଗୋଟାଏ ନୂଆ ବଡ ଗାଁରେ ସେମାନେ । ହୋଟେଲର ବଗିଚାରେ ବସି ଫୁଲ ପ୍ରଜାପତିଙ୍କୁ ଉପଭୋଗ କରୁଥିଲା ତାପସୀ । ଆଜି କାମରୁ ଫେରିବାକୁ ବହୁତ ଡେରି ହେଉଥିଲା ଅକ୍ଷୟର । ସେ କହିଯାଇଥିଲା– ମିଟିଙ୍ଗ୍ ଶେଷ କରି ଦିନ ଗୋଟାଏ ସୁଦ୍ଧା ଫେରି ଆସିବ ।

ଏବେ ଦୁଇଟା ବାଜି ସାରିଲାଣି । ତା'ର ଦେଖାନାହିଁ । ଫେରୁ ଫେରୁ ତିନିଟା ଯଦି ବାଜିଯାଏ, ତା'ହେଲେ ପେଟରେ ପକାଇବାକୁ ଯେଉଁ ଅଖାଦ୍ୟ ମିଳୁଛି, ସେତକ ବି ବନ୍ଦ ହେଇଯିବ । ଘଣ୍ଟାକଣ୍ଟା ଦେଖି ନିୟମ ମାନି ଚଳିବା ଲୋକ ଜର୍ମାନ୍‌ମାନେ ।

ଅଢ଼େଇଟାରେ ଶେଷରେ ଆସି ପହଞ୍ଚିଲା ଅକ୍ଷୟ । 'ଚାଲ ଚାଲ, ଶୀଘ୍ର ଚାଲ ।'

'ଏତେ ଡେରି କଲ ! ଭୋକ ହେଇ ଯିବଣି !' ତାପସୀର ନିଜର କାହିଲ ଅବସ୍ଥା । ସକାଳର ଟୋଷ୍ଟ, ଚାହା ପାଣି ହେଇ ସାରିଲାଣି କେତେବେଳୁଁ ।

'ପ୍ରବଳ ଭୋକ ।'

'ଏବେ ତ ଯାଉ ଯାଉ ତିନି ବାଜିଯିବ । ଖାଇବାକୁ ମିଳିବନି ।'

'ଚିନ୍ତା ନାହିଁ । ଚିନ୍ତା ନାହିଁ । ମୁଁ ଏବେ ଆସିବା ବେଳେ ଦେଖିଲି, ଆମ ପାଖ ଗଳିରେ ଗୋଟାଏ ଛୋଟ ସୁନ୍ଦର ରେସ୍ତୋରାଁ ଅଛି । ପହଞ୍ଚିବାକୁ ଦି' ମିନିଟ୍ ବି ଲାଗିବନି । ସେଇଠିକି ଚାଲ ।'

ରେସ୍ତୋରାଁ ଭିତରର ସବୁ ଟେବୁଲ ଖାଲି । କେହି କୁଆଡେ ନାହାନ୍ତି । କ୍ୟାଶ୍ ଟେବୁଲ ପାଖରେ କେବଳ ଜଣେ ବସି ଦିନର ହିସାବ କରୁଛି । ପାଖରେ ଜଣେ ମହିଳା ଜର୍ମାନ୍ ବହିଟିଏ ପଢୁଛନ୍ତି । ସେ ହିଁ ଉଠି ଆସିଲେ ହାତରେ ଦୁଇଟା ମେନୁ କାର୍ଡ ଧରି । ଜର୍ମାନ ଭାଷାରେ ଲେଖା ମେନୁ । ଯାହା ଜଣାପଡୁଛି, ମହିଳାଙ୍କୁ ବି ଇଂରାଜୀ ଜଣାନାହିଁ । ଅଗତ୍ୟା ଇଣ୍ଟରପ୍ରିଟର୍ ଅକ୍ଷୟ ।

'କ'ଣ ଖାଇବ ? ଚିକେନ୍ ?'

'ଆଉ ଚିକେନ୍ ଖାଇ ପାରିବି ନାହିଁ । ମାଛ ନାହିଁ ମେନୁରେ ?'

'ଅଛି । ଫ୍ରାଇଡ୍ ଫିଶ୍ ଉଇଥ୍ ମ୍ୟାଶ୍‌ଡ୍ ପଟାଟୋଜ୍ । ଆଳୁ ଭର୍ତ୍ତା ସାଙ୍ଗରେ ଛଣା ମାଛ ।'

ମୁଣ୍ଡ ଟୁଙ୍ଗାରିଲା ତାପସୀ । ସେଇ ଭଲ ବରଂ ।

ଆସିଗଲା ମାଛ ଭଜା । ଆଗ୍ରହରେ ଛୋଟ ଖଣ୍ଡେ ଭାଙ୍ଗି ପାଟିରେ ଦେଇ ତାପସୀ ମୁହଁ ବିଚକିଟେଇଲା । ଲୁଣଟା କ'ଣ ଏମାନଙ୍କର ଶତ୍ରୁ ? ପିଲା ଦିନରୁଁ ସେ ଶୁଣି ଆସିଛି ଆଇଁଷରେ ଉଚ୍ଚ ଲୁଣ ଦରକାର ହୁଏ, ଆଉ ଏମାନେ ମାଛ ଭାଜି ସାରି ଉପରୁ ଉପରୁ ଟିକିଏ ଲୁଣ ଛିଞ୍ଚି ଦେଇ ନିଶ୍ଚିନ୍ତ ! ହଳଦି, ଲଙ୍କାର ତ ପ୍ରଶ୍ନ ଉଠୁନି, ମଶଲାର ବି ଚହ୍ନ ବର୍ଣ୍ଣ ନାହିଁ ।

'ସସ୍ ଟିକିଏ ମାଗିବ ?'

'କି ସସ୍ ଦରକାର ?'

'ଯାହା ଗୋଟାଏ ରାଗ ସସ୍ ହେଲେ ହେଲା । ନହେଲେ ଖାଇହେବନି ଏ ମାଛ ।'

ଅକ୍ଷୟ ନିଜର ପ୍ରାଥମିକ ଜର୍ମାନ୍‌ରେ ମହିଳାଙ୍କୁ ସ୍ୱୀର ଇଚ୍ଛା ଜଣାଇଲା । 'ପାପ୍‌ରିକା ମିଳିବ ? ନହେଲେ ଅନ୍ୟ କିଛି ରାଗ ସସ୍ ?'

ଏଭଳି ଅନୁରୋଧ ପ୍ରାୟ ଶୁଣିବାକୁ ନ ମିଳିଲେ ବି ମହିଳା ଅବାକ୍ ହେଲେ ନାହିଁ । କଡିକିଆ ଟେବୁଲରେ ଥିବା ଛୋଟ ଟାବାସ୍‌କୋ ସସ୍‌ଟି ଆଣି ତାପସୀ ସାମ୍ନାରେ ରଖି ଦେଲେ । ହଠାତ୍ ଯେମିତ କ'ଣ ମନେ ପଡିଗଲା ତାଙ୍କର ।

'ଆଇନ୍ ମିନିଟ୍ ।' ବଡ ବଡ ପାଦ ପକାଇ ସେ ରୋଷେଇ ଘର ଭିତରକୁ ଚାଲିଗଲେ । ପର ମୁହୂର୍ତ୍ତରେ ଛୋଟ କାଚ ଗିନାରେ ଚଟଣୀ ଭଳି କ'ଣ ନେଇ ଆସିଲେ । ଅଭିନୟରେ ଦେଖାଇ ଦେଲେ ଯେ ଜିନିଷଟି ଭୀଷଣ ରାଗ ।

ଚାମଚ ରେ ଟିକିଏ ନେଇ ପାଟିରେ ଦେଲା ତାପସୀ । ଏ ତ ଧନିଆପତ୍ର ଲଙ୍କା ଚଟଣି । ଅସନ୍ତୁଷ୍ଟ ମୁହଁର ରୂପରେଖା ବଦଳିଗଲା । ତା' ସୁନ୍ଦର ଓଠରେ ହସ ଖେଳିଗଲା ।

'ଡାଙ୍କେ ।' ଏହା ଭିତରେ ଶିଖିଥିବା ଏକମାତ୍ର ଜର୍ମାନ୍ ଶବ୍ଦ ବ୍ୟବହାର କଲା ସେ । 'ଧନ୍ୟବାଦ ।'

ଗ୍ରାହକକୁ ସନ୍ତୁଷ୍ଟ କରି ପାରିଥିବାର ଆନନ୍ଦ ଏଥର ମହିଳାଙ୍କ ମୁହଁରେ । ଦୁଇ ହାତ ହଲେଇ ସେ ଅନର୍ଗଳ ଜର୍ମାନ୍‌ରେ ଯାହା ଯାହା କହିଲେ, ସେସବୁ ବୁଝିବା ତ ତାପସୀ ସାଧର ବାହାରେ, ଅକ୍ଷୟକୁ ବି ବୁଝିବାକୁ କଷ୍ଟ କରିବାକୁ ହେଲା ।

'କ'ଣ କହୁଛନ୍ତି ?' ଫିସ ଫିସ୍ କରି ସ୍ୱାମୀକୁ ପଚାରିଲା ସେ ।

'ଭଲରେ ବୁଝିଲି ନାହିଁ । କ'ଣ ଜାଣ କହିଲେ ଶ୍ରୀଲଙ୍କାର କିଏ. . . ଚଟଣିଟି କରିଛି. . . ତେବେ ଗ୍ରାହକମାନଙ୍କ ପାଇଁ ନୁହଁ. . .'

'ଶ୍ରୀଲଙ୍କା ??'

ମହିଳା ଜଣକ ବୋଧହୁଏ ବୁଝିଗଲେ ଯେ ତାଙ୍କ କଥା ଏମାନେ ଠିକ୍‌ରେ ବୁଝିଲେ ନାହିଁ । ଡାହାଣ ହାତ ପାପୁଲି ଉପରକୁ ଉଠେଇ ସେ ଇଙ୍ଗିତ କଲେ – ଅପେକ୍ଷା କର । ଭିତରକୁ ଚାଲିଗଲେ ସେ ।

ଯା'ହେଉ, ଚଟଣି ଦୟାରେ ଭଜା ମାଛଟା ଆଉ ବିସ୍ୱାଦ ମନେହେଲା ନାହିଁ । କେହି କୁଆଡେ ନାହାନ୍ତି ଦେଖି ପାଉଁରୁଟୀ ଉପରେ ମଧ୍ୟ କିଛିଟା ଚଟଣି ଲଗେଇ ନେଲା ତାପସୀ ।

'ଆପଣଙ୍କୁ ମୋ' ଚଟଣି ଭଲ ଲାଗିଛି ତା'ହେଲେ ?' ହଠାତ୍ ଅପ୍ରତ୍ୟାଶିତ ପରିଷ୍କାର ଇଂରାଜୀ ଶୁଣି ଉଭୟ ଅକ୍ଷୟ ଓ ତାପସୀ ଚମକି ପଡିଲେ । ସେମାନଙ୍କ ପାଖରେ ଠିଆ ହୋଇ ହସୁଥିଲା ଆଉ ଜଣେ । ପଚାଶ ପାଖାପାଖି ବୟସର ଆଉ

ଜଣେ ମହିଳା । ଜର୍ମାନ ନୁହଁ । ଦେହର ରଙ୍ଗ ମଇଳା । ଲମ୍ବା ବେଶୀ ନୁହଁ । ଛୋଟ ନାକ । ଆଖି ଦିଓଟି କିନ୍ତୁ ଉଜ୍ଜଳ ।

'ବହୁତ ଭଲ ହୋଇଛି ।' ତାପସୀ ଉଲ୍ଲସିତ ଭାବରେ କହିଲା, 'ଏଇଟା କ'ଣ ଧନିଆ ପତ୍ର ଲଙ୍କା ଚଟଣି ?'

'ଲଙ୍କା ଧନିଆପତ୍ର ତ ଅଛି । ତା' ଛଡା ରହିଛି ପୋଦିନା ପତ୍ର । ଅଳ୍ପ ନଡିଆ ।'

'ଆମେ ବି ଏଇମିତି ଚଟଣି କରୁ ଯେ...' ଏଠି କ'ଣ କେବଳ ଚଟଣି ଆଲୋଚନା ହେବ ? ଭଦ୍ରାମିର ସାମାନ୍ୟ କେତେକ ନିୟମ ଭୁଲିଗଲା କେମିତି ତାପସୀ ? 'ମୁଁ ତାପସୀ । ଯେ ମୋ' ସ୍ୱାମୀ ଅକ୍ଷୟ ।'

'ମୁଁ ସୀତା ।'

'ସୀତା ? ଭାରତୀୟ ?'

'ତାମିଲ୍ । ତେବେ ଶ୍ରୀଲଙ୍କାର ।'

ଓହୋ, ଏଇଥିପାଇଁ ତା'ହେଲେ ଶ୍ରୀଲଙ୍କା କଥା କହୁଥିଲେ ଅନ୍ୟ ମହିଳା ଜଣକ ! ତାପସୀ ସୀତାକୁ ଭଲ ଭାବରେ ଦେଖିଲା । ଦେହରେ ଆକାଶୀ ରଙ୍ଗର ବ୍ଲାଉଜ୍ । ଆଣ୍ଠୁଯାଏଁ ଲମ୍ବା କଳା ସ୍କାର୍ଟ୍ । ଦାମିକା ନୁହଁ, ତେବେ ନିହାତି ଶସ୍ତା ମଧ୍ୟ ନୁହଁ । କଥା, ଲୁଗାପଟାରୁ ଏ ମଣିଷଟିର ସାମାଜିକ ସ୍ଥିତି ଧରିବା ସହଜ ନୁହଁ ।

'ଏଇଠି କାମ କରନ୍ତି ?'

'ନା, ନିୟମିତ ଭାବରେ ନୁହଁ । ଦରକାର ପଡିଲେ ଏମାନେ ଡାକି ଦିଅନ୍ତି, ମୁଁ ଆସି ସାହାଯ୍ୟ କରେ ।... ଏଇଠି ପାଖ ଘରେ ରହେ ତ । ତା'ଛଡା... ଏ ରେସ୍ତୋରାଁ ଯାହାର, ସେଇ ମାନଙ୍କର ବିରାଟ ଅଙ୍ଗୁର ବଗିଚା । ମୋ' ସ୍ୱାମୀ ସେଇ ଅଙ୍ଗୁର ବଗିଚାରେ କାମ କରନ୍ତି । ମୁଁ ଅଙ୍ଗୁର ତୋଳା ସମୟରେ ସାହାଯ୍ୟ କରେ । ଅନ୍ୟବେଳେ କାମ ବେଶୀ ନ ଥାଏ ତ ଏଇଠି ମଝିରେ ମଝିରେ ଟିକିଏ ହାତ ଲଗାଏ ।'

'ହେଲେ ଏ ଚଟଣି...'

'ନା, ଚଟଣି ରେସ୍ତୋରାଁର ମେନୁରେ ନାହିଁ । ଏଠିକି ଯେଉଁ ଗ୍ରାହକ ଆସନ୍ତି, ସେମାନଙ୍କର ବି ସେସବୁରେ ଆଗ୍ରହ ନାହିଁ ।... ଆଜି ମୁଁ ଘରେ କରିଥିଲି ତ କିଛି ନେଇ ଆସିଥିଲି ଏମାନଙ୍କ ପାଇଁ । ଆଞ୍ଜେଲା ...' କ୍ୟାଶ୍ କାଉଣ୍ଟର୍‌ରେ ବସିଥିବା ମହିଳାଙ୍କୁ ଦେଖାଇ ସୀତା କହିଲା, 'ଆଞ୍ଜେଲା ବହୁତ ଭଲପାଏ ଆମମାନଙ୍କର ଦେଶୀ ଖାଇବା ।'

ତାପସୀ ହସିଲା, 'ଆପଣଙ୍କ ଯୋଗୁଁ ମୋ ଖାଇବାଟା ଜମିଗଲା ଆଜି । ଗତ

କେଇ ଦିନ ଧରି ଏଠି ବୁଲୁଛି । ତିନିବେଳା ବିଦେଶୀ ଖାଦ୍ୟ ଖାଇ ଖାଇ ପାଟି ଧରିଗଲାଣି ।'

ତାପସୀ ସାଙ୍ଗରେ ତାଳ ଦେଇ ହସିଲା ସୀତା । 'ମୁଁ ଏତେ ବର୍ଷ ଏ ଦେଶରେ ରହି ଆମ ଖାଇବା ଛାଡି ପାରିନି, ଆପଣ ମାତ୍ର କେଇଟା ଦିନ ଭିତରେ କେମିତି ଅଭ୍ୟସ୍ତ ହେଇଥାଆନ୍ତେ ?'

ଅକ୍ଷୟ ଯେମିତି କ'ଣ ଭାବି ହେଉଥିଲା । 'ଆଚ୍ଛା, ଏଠି ଇଣ୍ଡିଆନ୍ ବା ସେଇ ଭଳି କିଛି ରେସ୍ତୋରାଁ ନାହିଁ ?'

'କୁଆଡୁ ଆସିବ ? ଏଠି ଏ ଗାଁରେ ସେସବୁ ଖାଦ୍ୟ ଖାଇବ କିଏ ? ଇଣ୍ଡିଆନ୍ ରେସ୍ତୋରାଁ ପାଇଁ ଆପଣମାନଙ୍କୁ ବର୍ଲିନ୍ ଯିବାକୁ ହେବ ।'

ତା' ତ ସମ୍ଭବ ନୁହଁ । ଅଗତ୍ୟା ଜନ୍ମଦିନରେ ବି ବିତୃଷ୍ଣାରେ ଖାଇବ ତାପସୀ । ମନେ ମନେ ଦୀର୍ଘନିଶ୍ୱାସ ନେଲା ଅକ୍ଷୟ ।

ସୀତା ଆଖିରେ ପଡିଗଲା ବୋଧହୁଏ । ଏଥର ତାପସୀକୁ ନୁହଁ, ଅକ୍ଷୟକୁ ସେ ପଚାରିଲା, 'ଇଣ୍ଡିଆନ୍ ରେସ୍ତୋରାଁ କଥା କାହିଁକି ପଚାରିଲେ ?'

'ଭାବିଥିଲି, କାଲି ତାପସୀକୁ ଭାରତୀୟ ଖାଦ୍ୟ ଖୁଆଇବି । ବର୍ଲିନ୍ ଏବେ ଯିବା ସମ୍ଭବ ନୁହଁ । ଫେରିଯିବା ପାଇଁ ଆହୁରି ଦୁଇଦିନ ବାକୀ ।'

ସୀତା କପାଳରେ ଚନ୍ତାର ଛୋଟ ଝଲକଟିଏ । 'ମୁଁ ସାଙ୍ଗେସାଙ୍ଗେ ଆସୁଛି ।' ବୁଲିଯାଇ ଚାଲିଗଲା କ୍ୟାଶ୍ କାଉଣ୍ଟର୍‌ରେ ବସିଥିବା ଆଞ୍ଜେଲା ପାଖକୁ । ଦୁଇଜଣଙ୍କର ଗମ୍ଭୀର ଭାବରେ କ'ଣ ଯେମିତି ଆଲୋଚନା ହେଲା । ଏତେ ଦୂରରୁ ଶୁଣିବା ସମ୍ଭବ ନୁହଁ । ଶୁଣିଥିଲେ ବି ବୁଲେଟ୍ ଭଳି ଛିଟିକି ପଡୁଥିବା ଅନର୍ଗଳ ଜର୍ମାନ୍ ଭାଷା ଅକ୍ଷୟ ବୁଝି ପାରିନଥାଆନ୍ତା । ସେ ଚଟଣି ଆଉ ମାଛ ଭଜାରେ ମନୋନିବେଶ କଲା ।

ଅଳ୍ପ ସମୟ ପରେ ଫେରିଆସିଲା ସୀତା । 'ଆଞ୍ଜେଲା ରାଜି ।'

'କୋଉ କଥାରେ ରାଜି ?' ଅକ୍ଷୟ ଆଉ ତାପସୀ ତ କୌଣସି ପ୍ରଶ୍ନ ପଚାରି ନ ଥିଲେ ।

'ଏଇ ଯେ ଆପଣ ଭାରତୀୟ ଖାଦ୍ୟ ଖୋଜୁଛନ୍ତି କହିଲେ ... ମୁଁ ଆଞ୍ଜେଲାଙ୍କୁ ପଚାରିଲି ମୁଁ ଆପଣମାନଙ୍କ ପାଇଁ କାଲି ରାନ୍ଧିପାରିବି କି ନାହିଁ । ସେ ରାଜି ।'

ପିଲାଙ୍କ ଭଳି ଖୁସି ହେଇଗଲା ତାପସୀ । ତା' ଠୁଁ ବେଶୀ ଖୁସି ଅକ୍ଷୟ । ଆଶ୍ୱସ୍ତ ବି । ତା' 'ପତି-ଚରିତ୍ର-ପଞ୍ଜିକା'ରେ ଅନ୍ତତଃ କଳାଦାଗଟିଏ ପଡିବ ନାହିଁ । କମ୍ କଥା !

'ଥ୍ୟାଙ୍କ୍ ୟୁ । ଥ୍ୟାଙ୍କ୍ ୟୁ ।'

'କ'ଣ ଖାଇବେ ?'

'ଯାହା ଖୁଆଇବେ, ଚଳିବ । ଭାତ ଡାଲି ହେଲେ ବି ଅମୃତ ।'

ସୀତା ହସି ପକାଇଲା । 'ଦିନବେଳେ ଆସିବେ ?'

'ନା, ସନ୍ଧ୍ୟା ବେଳେ ।'

'ଗୁଡ୍ ! କାଲି ସନ୍ଧ୍ୟା ସାତଟାବେଳେ ତା'ହେଲେ ।' ସେ ଚାଲିଗଲା ।

ତାପସୀ କାନ୍ଧକୁ ଚାପି ଦେଲା ଟିକିଏ ଅକ୍ଷୟ । 'ଜନ୍ମଦିନର ଦି'ପହରଟା କଷ୍ଟ କରି ଚଳେଇ ଦିଅ । ରାତିରେ ଆଶା କରୁଛି ଭାତ ତରକାରୀ ମିଳିବ ।'

'କଷ୍ଟ ! ମୁଁ ତ ଲେମ୍ବୁ ପାଣି ପିଇ ରହିଯିବି, ଭାବୁଛି ।'

'ସାବଧାନ ! ବେଶୀ ଆଶା ଯେମିତି ନିରାଶା ନହୁଏ । ଓପାସରେ ଓପାସରେ ଜନ୍ମଦିନଟା ଯେମିତି ନ କଟେ ।'

ପରଦିନ ସକାଳୁ ଅକ୍ଷୟ ବାହାରିଗଲା । ଇଚ୍ଛା ନ ଥିଲେ ବି ଯିବାକୁ ହେବ । ଅନ୍ୟ ଦିନମାନଙ୍କରେ ଦି'ପହର ଖାଇବାବେଳେ କିଛି ସମୟ ପାଇଁ ସେ ହୋଟେଲକୁ ଫେରିଆସେ । ଆଜି ତା' ବି ସମ୍ଭବ ନୁହଁ । ତାପସୀ କିନ୍ତୁ ଜମା ମନ କଷ୍ଟ କଲା ନାହିଁ । ସେ ସ୍ୱାମୀର ଉପହାରରେ ବିଭୋର । ଅକ୍ଷୟ ସ୍ତ୍ରୀ ପାଇଁ ଏଥର ଆଇପଡ୍‌ଟିଏ କିଣିଥିଲା । କେବଳ ସେତିକି ନୁହଁ, ଭାରତ ଛାଡିବା ଆଗରୁ ରାତି-ଅନିଦ୍ରା ରହି ସେଥିରେ ତାପସୀ ପସନ୍ଦର ସବୁ ଗୀତ ବି ପୂରେଇ ଦେଇଥିଲା ।

ସ୍ପ୍ରି ନଦୀ କୂଳରେ ବସି ଓଡିଆ ଗୀତ ! ସ୍ୱର୍ଗସୁଖ ଆଉ କାହାକୁ କହନ୍ତି ?

ଛଅଟା ବେଳେ ଫେରିଲା ଅକ୍ଷୟ । ସେତେବେଳକୁ ଇଉରୋପ୍ ଯାତ୍ରା ପାଇଁ ସଜାଡି ରଖିଥିବା ଜିନ୍, ଟି-ସାର୍ଟ୍‌ଗୁଡିକୁ ଆଡେଇ ଦେଇ ଶାଢି ପିନ୍ଧି ତାପସୀ ପ୍ରସ୍ତୁତ ।

'ବାଃ, ଆଜି ତ ଏ ଗାଁଟା ଯାକ ଲୋକ ତୁମ ପଛରେ ପଡିଯିବେ !' ପ୍ରଶଂସାର ସ୍ୱରରେ ଅକ୍ଷୟ କହିଲା ।

'ଥାଉ ଥାଉ ଢଙ୍ଗ ।' ତାପସୀ କିନ୍ତୁ ମନେମନେ ଖୁସିହେଲା । ପାହାଡ ଚଢିବାକୁ ନାହିଁ, ଲମ୍ୱା ରାସ୍ତା ଚାଲିବାକୁ ନାହିଁ । ସେ କାହିଁକି ପିନ୍ଧିବନି ଶାଢି ? ଆଜି ପୁଣି ତା' ଜନ୍ମଦିନ ।

ଆଞ୍ଜେଲା ପୂର୍ବଦିନ ଭଳି କ୍ୟାଶ୍ କାଉଣ୍ଟରରେ । ସେ ନିଜେ ଧାଇଁ ଆସିଲା । 'ହାଲୋ, ହାଲୋ, ଗୁଟେନ୍ ଆବେନ୍‌ଡ୍ !'

'ହ୍ୟାଲୋ, ଗୁଡ୍ ଇଭ୍‌ନିଙ୍ଗ୍ ।' – ତାପସୀ ଇଂରାଜୀରେ ଉତ୍ତର ଦେଲା ।

'ବିଉଟିଫୁଲ୍ !' ଶାଢ଼ିକୁ ପ୍ରଶଂସା କରିଲା ଆଞ୍ଜେଲା ଏବଂ ସେମାନଙ୍କୁ କଡ଼ିକିଆ ହୋଇଥିବା ଟେବୁଲ ପାଖକୁ ନେଇଗଲା ।

ପୂର୍ବଦିନ ଡେରିରେ ଆସିଥିଲେ ବୋଲି ରେସ୍ତୋରାଁ ଖାଲିଥିଲା, ହେଲେ ଆଜି କଥା ଅଲଗା । ପ୍ରାୟ ସବୁ ଟେବୁଲ ଭର୍ତ୍ତି । ଆଉ ସମସ୍ତେ ବୁଲି ବୁଲି ଦେଖୁଛନ୍ତି ତାପସୀକୁ । ଭଲ ବି ଲାଗୁଥିଲା, ମାଡ଼ି ମାଡ଼ି ବି ପଡ଼ୁଥିଲା ଟିକିଏ । ଜିନ୍ ପିନ୍ଧି ଆସିଥିଲେ ବୋଧହୁଏ ଭଲ ହେଇଥାଆନ୍ତା ।

ଟେବୁଲ ପାଖକୁ ଚାଲି ଆସିଲା ଜଣେ ୱେଟର୍ । ଧଳା ସାର୍ଟ୍, କଳା ପ୍ୟାଣ୍ଟ୍ ଦେହରେ । ଅଣ୍ଟା ପାଖରେ ଲମ୍ବା କଳା ଆପ୍ରନ୍ ।

'ଗୁଟେନ୍ ଆବେନ୍‌ଡ୍ । ମାଇଁ ନେମ୍ ଇଜ୍ ମାଇକେଲ୍ । ସ୍ପେସିଆଲ୍ ଡିନାର୍ ଫର୍ ୟୁ ? ରାଇଟ୍ ? ଏନିଥିଙ୍ଗ୍ ଟୁ ଡ୍ରିଙ୍କ୍ ?' ଇଂରାଜୀ କହେ ଲୋକଟା ? ବାଃ ।

'ଜର୍ମାନ୍ ରିଜ୍‌ଲିଙ୍ଗ୍ । ଫ୍ରୁଟି । ନଟ୍ ଭେରି ଡ୍ରାଏ ।'

'ସିଓର୍ ।' ଡ୍ରିଙ୍କ୍ ଅର୍ଡର ନେଇ ଚାଲିଗଲା ଲୋକଟା । ଅଳ୍ପ ସମୟ ପରେ ଦୁଇ ଗ୍ଲାସ୍ ଜର୍ମାନ୍ ରିଜ୍‌ଲିଙ୍ଗ୍ ସାଙ୍ଗରେ ଆଣିଦେଲା ଆଳୁ ପକୁଡ଼ି ।

'ପକୁଡ଼ି ! ରିଜ୍‌ଲିଙ୍ଗ୍ ସାଙ୍ଗରେ ?' ଅକ୍ଷୟ ନାକ ଟେକିଲା ।

'କ୍ଷତି କ'ଣ ?'

'ଚିଜ୍ ସିନା ଦେଇଥାଆନ୍ତା । ନହେଲେ କାଜୁ । . . . ହେଲେ ପକୁଡ଼ି !!'

'ତୁମର ଯଦି କାଜୁ କି ଚିଜ୍ ଦରକାର, ତା'ହେଲେ ମାଇକେଲ୍‌କୁ କହି କରି ମଗାଅ । ମୁଁ ତ ୟାକୁ ହିଁ ଖାଇବି ।' ପକୁଡ଼ି ନୁହଁ, ତାପସୀ ପାଇଁ ଥାଳିଆଏ ଅମୃତ ଯେମିତି ।

ଆଉ କିଛି ନକହି ଅକ୍ଷୟ ଗୋଟାଏ ପକୁଡ଼ି ପାଟିରେ ପକେଇଲା । ରିଜ୍‌ଲିଙ୍ଗ୍ ସାଙ୍ଗରେ ମନ୍ଦ ଲାଗୁନାହିଁ । କିମ୍ୱା ହୁଏତ ସେ ବି ମନେ ମନେ ତାପସୀ ଭଳି ନିଜ ଖାଦ୍ୟ ଖାଇବାକୁ ଝୁରି ହେଉଥିଲା ।

ପକୁଡ଼ି ଶେଷ ନ ହେଉଣୁ ବରା । ତା'ପରେ ଦୋଷା । ପୁଣି ତା'ପରେ ଜିରା ଭାତ । ସାଙ୍ଗରେ ନଡ଼ିଆ ରସ ଓ ଲଙ୍କା ବଟା ଦେଇ ମାଛ ଝୋଳ ।

'ଯେ କେମିତିକା ମେନୁ ? କାହା ସାଙ୍ଗରେ କାହାର ତାଳ ମେଳ ନାହିଁ !' ଅକ୍ଷୟ ବିରକ୍ତ ହେଲା ।

'କିଛି କୁହନି । କିଛି କୁହନି ।' ତାପସୀ ଯେମିତି ମାସେ କାଳ ଭୋକରେ ଥିଲା । 'କେତେ କଷ୍ଟରେ ଏସବୁ ସୀତା ରାନ୍ଧିଥିବ କହିଲ ।'

ଖାଇବା ବନ୍ଦ କରି ଦୁଇଜଣ ଦୁହିଁଙ୍କ ମୁହଁକୁ ଚାହିଁଲେ । ସୀତା କାହିଁ ? ଜର୍ମାନୀର ଛୋଟ ଗାଁରେ ଯିଏ ସେମାନଙ୍କୁ ଦୋଷା କରି ଦେଉଛି, ମାଛ ଝୋଳ କରି ଦେଉଛି, ତା'ର ହିଁ ଦେଖାନାହିଁ ?

ଅକ୍ଷୟ ମାଇକେଲ୍‌କୁ ଡାକିଲା । ସୀତା କାହିଁ ?

ରହସ୍ୟମୟ ହସଟିଏ ହସିଲା ମାଇକେଲ୍ । 'ସେ ଆସିବ । ଶୀଘ୍ର ।'

ଖାଇବା ଶେଷ । ଅଇଁଠା ପ୍ଲେଟ୍ ଉଠାଉ ଉଠାଉ ମାଇକେଲ୍ ପଚାରିଲା, 'ଡେଜର୍ଟ୍' ?

ନା । ଆଉ ମିଠା ଖାଇବାକୁ ପେଟରେ ଜାଗା ନାହିଁ ।

ଏବଂ ଠିକ୍ ସେତିକିବେଳେ ରେଷ୍ଟୋରାଁର ଲାଇଟ୍ କିଏ ଜଣେ କମେଇଦେଲା । ସିଡି ପ୍ଲେୟାର୍‌ରେ ବାଜିଉଠିଲା– ହ୍ୟାପି ବାର୍ଥ୍ ଡେ ଟୁ ୟୁ. . . । ଅନ୍ଧାର କୋଠରୀକୁ ନିଜ ହସରେ ଉଜ୍ଜଳ କରିଦେଇ ହାତରେ ମହମବତୀ ଜଳୁଥିବା ଛୋଟ କେକ୍‌ଟିଏ ଧରି ଆସି ପହଞ୍ଚିଲା ସୀତା । 'ମିଠା ଖାଇବେନି ବୋଲି କହିଲେ ହେଲା ? ଜନ୍ମଦିନରେ କେକ୍ ତ କାଟିବାକୁ ହେବ । ଖାଇବାକୁ ହେବ ।'

ତାପସୀର କଣ୍ଠରୁଦ୍ଧ । ଏତେଟା ସେ ଆଶା କରିନଥିଲା । 'କେମିତି ଜାଣିଲେ ? କିଏ ଆପଣଙ୍କୁ କହିଲା ଆଜି ମୋ' ଜନ୍ମଦିନ ବୋଲି ?' ଅକ୍ଷୟ କହିଛି ? ସ୍ୱାମୀ ମୁହଁକୁ ଚାହିଁଲା ସେ । ଅକ୍ଷୟ ମୁହଁରେ ତା'ରି ଭଳି ବିସ୍ମୟ ।

ସୀତା ହସିଲା । 'କେହି କହି ନାହାନ୍ତି । କାଲି ଆପଣମାନଙ୍କ କଥାରୁ ସନ୍ଦେହ ହେଇଥିଲା । ପରେ ବାହାରି ଯାଉଯାଉ ଆପଣଙ୍କ ସ୍ୱାମୀଙ୍କ ପାଟିରୁ ବାହାରି ପଡିଥିବା 'ଜନ୍ମଦିନ' ଶବ୍ଦଟି ମୋ' କାନରେ ପଡିଗଲା । ବାସ୍ ଜାଣିଗଲି ।'

'ଥ୍ୟାଙ୍କ୍ ୟୁ, ସୀତା ।' ତାପସୀ ଆଖି କାହିଁକି ଭରି ଆସୁଛି ? କାହିଁକି ମନେ-ହେଉଛି ଯେମିତି ସେ ବହୁତ ଦିନରୁ ସୀତାକୁ ଜାଣିଛି ? 'ଆଜିର ଦିନଟି ମୁଁ ଜମା ଭୁଲିବିନି । କେବଳ ଆପଣଙ୍କ ଯୋଗୁଁ. . .। ଯଦି କେବେ ଭାରତ ଆସନ୍ତି, ମୋତେ ଆଗରୁ ଜଣେଇବେ । ଆମ ଘରକୁ ଆସିବାକୁ ହେବ । ଆମ ପାଖରେ ରହିବେ କିଛି ଦିନ ।'

'ଭାରତ ! ଆପଣଙ୍କ ଘର !!.. କ'ଣ କହି ଆସୁ ଆସୁ ସୀତା ଚୁପ୍-ରହିଗଲା । ତା' ମୁହଁର ଭାବ ତାପସୀ, ଅକ୍ଷୟ ପଢି ପାରୁ ନାହାନ୍ତି ।

ଗଳା ଝାଡି ନିଜକୁ ସମ୍ଭରଣ ଯେମିତି କଲା ସୀତା । ତା'ପରେ କହିଲା – 'ଟିକିଏ ଅପେକ୍ଷା କରନ୍ତୁ । ମୁଁ ସାଙ୍ଗେ ସାଙ୍ଗେ ଆସୁଛି ।' ଏଥର ଆଞ୍ଜେଲା ପାଖକୁ ନୁହଁ, ରେଷ୍ଟୋରାଁ ବାହାରକୁ ଦୌଡି ଚାଲିଗଲା ସେ । ପାଦରେ ଯେମିତି ପର ଲାଗିଛି ।

କ'ଣ ହେଲା ? କୁଆଡେ ଚାଲିଗଲା ସେ ?

ତାପସୀ କେକ୍ କାଟିଲା । ଅଧା ଦେଲା ଅକ୍ଷୟକୁ । ପାଟିରେ ଟିକିଏ ଟିକିଏ ଦେଇ ଦୁଇ ଜଣଯାକ ମୁଗ୍ଧ । ଯାହା କୁହ, ଜର୍ମାନ୍ ଚକୋଲେଟ୍ କେକ୍‌ର ତୁଳନା ହୁଏ ନାହିଁ ।

କେକ୍ ଖିଆ ଶେଷ ହେଲା । ତଥାପି ସୀତା ନାହିଁ ।

ଅକ୍ଷୟ ମାଇକେଲ୍‌କୁ ଖାଇବାର ବିଲ୍ ମାଗିଲା । ବିଲ୍ ଆସିବା ପରେ ଟଙ୍କା ଦେଇ ବି ଦେଲା । ତଥାପି ସୀତାର ଦେଖା ନାହିଁ ।

ଆଉ ଅପେକ୍ଷା କରି ହେବ ନାହିଁ । ଡେରି ହେଉଛି । ପରଦିନ ପୁଣି ସକାଳୁ ସକାଳୁ ଅକ୍ଷୟର ମିଟିଙ୍ଗ୍ ।

'ସୀତାଙ୍କୁ ଆମ ତରଫରୁ ଧନ୍ୟବାଦ ଜଣେଇ ଦେବେ ।' ତାପସୀ, ଅକ୍ଷୟ ରେସ୍ତୋରାଁ ବାହାରେ ପାଦ ଦେଲେ ।

ଏବଂ ଠିକ୍ ସେତିକିବେଳେ ଧଇଁସଇଁ ହେଇ ପହଞ୍ଚିଗଲା ସୀତା । 'ସରି ସରି । ଡେରି କରିଦେଲି । ଘରକୁ ଚାଲିଯାଇଥିଲି ୟାକୁ ଡାକି ଆଣିବାକୁ ।' ସୀତା ପଛରେ ଠିଆ ହୋଇଥିଲା ପତଳୀ ଅଠର କୋଡ଼ିଏ ବର୍ଷର ଝିଅଟିଏ । ସୀତା ଭଳି ରଙ୍ଗ ମଇଳା । କିନ୍ତୁ ଆଖି ଫେରାଇ ନପାରିବା ଭଳି ସୁନ୍ଦର ମୁହଁ ।

'ମୋ ଝିଅ । ରିନି । ... ଆପଣ ଭାରତ କଥା କହିଲେ ତ, ସେଥିପାଇଁ ତାକୁ ଆଣିବାକୁ ଚାଲିଗଲି ।'

ଅକ୍ଷୟ, ତାପସୀ ଏ କଥାର ଅର୍ଥ ଠିକ୍ ବୁଝି ପାରିଲେ ନାହିଁ ।

'ଭଲ କଲେ । ଆପଣଙ୍କ ଝିଅ ସାଙ୍ଗରେ ଦେଖା ହେଇଗଲା ।' ଭଦ୍ରାମି କଲା ଅକ୍ଷୟ ।

'ଦେଖା ପାଇଁ ନୁହଁ ... ଆପଣ କହିଲେ ଭାରତ ଆସିଲେ ଆପଣଙ୍କ ଘରେ ରହିବା କଥା ...'

କେବଳ କଥାର କଥା ନୁହଁ । ସତରେ କଥାଟା କହିଥିଲା ତାପସୀ । ନିଜ ଅନ୍ତରରୁ ।

'ନିଶ୍ଚୟ ।'

'ମୁଁ କି ମୋ' ସ୍ୱାମୀ କେବେ ଜର୍ମାନୀ ବାହାରକୁ ଯାଇପାରିବୁ କି ନାହିଁ ଜାଣିନି । ବୋଧହୁଏ ନୁହଁ । ଯେମିତି ପରିସ୍ଥିତିରେ ଆମେ ଶ୍ରୀଲଙ୍କା ଛାଡ଼ିଛୁ. . .' ଆଗ ଭଳି କଥା ହଜିଗଲା । କିନ୍ତୁ ଏଥର ଆଖିରେ ଭରି ଲୁହ ।

କିଭଳି ପରିସ୍ଥିତିରେ ସେମାନେ ଶ୍ରୀଲଙ୍କା ଛାଡ଼ିଲେ ? କେବେ ? ତାପସୀ

ପାଟିରୁ ପ୍ରଶ୍ନ ଦୁଇଟି ବାହାରିଗଲା ।

'ସେଇ ଯେତେବେଳେ ତାମିଲ ସମସ୍ୟାରେ ଶ୍ରୀଲଙ୍କା ଜଳୁଥିଲା, ସେତେବେଳେ । ଆମକୁ ହାଣି ଦେଇ ଥାଆନ୍ତେ ଅନ୍ୟମାନେ । ଲୁଚି ଲୁଚି କେତେ କଷ୍ଟରେ ଯେ ଆମେ ମୁକ୍ତି ପାଇଛୁ... ଦୂର ସମ୍ପର୍କର ଭାଇ ଜଣେ ଏଇ ଅଙ୍ଗୁର ବଗିଚାରେ କାମ କରୁଥିଲା । ସେ ଆଶ୍ରା ଦେଲା । ମାଲିକ ବି ବଡ ଦୟାଳୁ... ଚାକିରି ଦେଲେ । ଘର ଦେଲେ ।... ଆମର କାଗଜପତ୍ର କିଛି ଠିକ୍‌ରେ ନଥିଲା । ତାଙ୍କ ସାହାଯ୍ୟରେ ଏବେ ଆମେ ଏ ଦେଶର ନାଗରିକ । କିନ୍ତୁ ଡେଣା ଆମର କଟିଯାଇଛି । ଆଉ ଉଡି ପାରିବୁନି । ଆଉ ନିଜ ଦେଶକୁ ଯାଇପାରିବୁନି ।'

'କେବେ ଆସିଲେ ଏଠିକି ? କେତେ ବର୍ଷ ତଳ କଥା ?'

'ହେଇଗଲାଣି ବହୁତ ବର୍ଷ । ରିନି ତ ସେତେବେଳେ ଜନ୍ମ ବି ହେଇନଥିଲା । ...ଏବେ ବଡ ହେବା ପରେ, ସବୁବେଳେ ନିଜ ଦେଶ କଥା ସେ ପଚାରେ । ମୋ' ଗାଁ କଥା, ତା' ବାପାର ଗାଁ କଥା ପଚାରେ । ହେଲେ ଆମରି ପାଇଁ ସେ ବି ନିଜ ପୂର୍ବପୁରୁଷଙ୍କ ଦେଶରେ ପାଦ ଦେଇପାରିବ ନାହିଁ । ଆପଣ ଭାରତ ଯିବା କଥା କହିଲେ... ମୁଁ ଭାବିଲି ଶ୍ରୀଲଙ୍କା ନ ଯାଇ ପାରିଲେ କ'ଣ ହେବ, ଭାରତ ତ ଥରେ ଯାଇପାରିବ ରିନି । ଯେତେ ଯାହା ହେଲେ ପଡୋଶୀ ଦେଶ । ଉଣ୍ଡି ଦେଇ ନିଜ ବାପା ମା'ଙ୍କ ଦେଶଟାକୁ ଥରେ ସେଇଠୁ ଦେଖିନେବ ।'

ପର୍ସରୁ ଧଳା କାଗଜଟିଏ କାଢିଲା ତାପସୀ । ଚଟ୍ କରି କିଛି ଲେଖିଦେଇ ସେ ସେଇ କାଗଜଟି ବଢେଇ ଦେଲା ରିନି ହାତକୁ । 'ରିନି, ଏଥିରେ ମୋ' ଠିକଣା ଅଛି । ଫୋନ୍ ନମ୍ବର ଅଛି । ତୁମେ ଯେତେବେଳେ ଭାରତ ଆସିବା କଥା ଭାବିବ, ମୋତେ ଥରଟିଏ ଜଣେଇ ଦେବ । ମୁଁ ଶ୍ରୀଲଙ୍କା ତ ତୁମକୁ ନେଇ ଯାଇ ପାରିବିନି, କିନ୍ତୁ ଭାରତର ଶେଷ ବିନ୍ଦୁ କେପ୍ କୋମୋରିନ୍‌କୁ ନେଇଯିବି । ସେଇଠି ଠିଆ-ହେଇ ହାତ ବଢେଇ ଶ୍ରୀଲଙ୍କାର ପବନକୁ ତୁମେ ଛାତିରେ ଚାକି ଧରିପାରିବ । ଅନୁଭବ କରି ପାରିବ ।'

ନିରବ ଭାବରେ ଅକ୍ଷୟ ସାଙ୍ଗରେ ଚାଲି ଚାଲି ହୋଟେଲ୍ ଫେରିବାବେଳେ ହଠାତ୍ କଥାଟା ମନକୁ ଆସିଲା ତାପସୀର । ସୀତା କଥା କହିଲା, ଅକ୍ଷୟ କଥା କହିଲା, ତାପସୀ ବି ଭାବାବେଗରେ ଅନେକ କଥା କହିଗଲା, ହେଲେ ରିନି ତ ପଦଟିଏ କଥା କହିଲା ନାହିଁ ? ତା' ଆଖି କଣରେ ଲୁହ ବିନ୍ଦୁଟିଏ ବୋଧହୁଏ ଚକଚକ୍ କରିଥିଲା, ହେଲେ ଗଡି ତ ଆସିଲା ନାହିଁ ଗାଲ ଉପରକୁ ?



# ଦେବୀ ଅଧିଷ୍ଠାତ୍ରୀ

ଅଷ୍ଟମଙ୍ଗଳା ପରଦିନ ପାଇଁ ସେମାନଙ୍କର ଟ୍ରେନ୍ ଟିକେଟ୍ ହୋଇଥିଲା । ସତରଘଣ୍ଟା ଟ୍ରେନ୍‌ରେ ବସି ନୂଆ ସ୍ତ୍ରୀ ଲିପିକାକୁ ଧରି ଆଶୀଷ ଯେତେବେଳେ ନିଜ ଚାକିରି ଜାଗାରେ ପହଞ୍ଚିଲା, ସେତେବେଳେ ପୂର୍ବ ଆକାଶ ସଦ୍ୟ ରଙ୍ଗ ଧରିଛି । ଷ୍ଟେସନ୍ ପ୍ଲାଟ୍‌ଫର୍ମ୍‌ରେ ତଥାପି ଅସ୍ପଷ୍ଟ ଅନ୍ଧକାର । କମ୍ ପାୱାର୍‌ର ବଲ୍‌ବ୍ କେଇଟା ଏଠି ସେଠି ଜଳୁଥିଲା ଅବଶ୍ୟ, ହେଲେ ସେ ଜଳିବା ନ ଜଳିବା ସାଙ୍ଗରେ ସମାନ । ନୂଆ ମଣିଷଟିଏ ହୁଏତ ମୁହୂର୍ତ୍ତକ ପାଇଁ ଦିଗ୍‌ଭ୍ରାନ୍ତ ହୋଇଯାଇ ଥାଆନ୍ତା, କିନ୍ତୁ ଆଶୀଷର କୌଣସି ଅସୁବିଧା ହେଲା ନାହିଁ । ଚାରି ବର୍ଷର ଚାକିରି ପରେ ଏ ସହର, ଏ ଷ୍ଟେସନ୍ ଅତି ଚହ୍ଲା ହୋଇସାରିଛି ।

ପ୍ଲାଟ୍‌ଫର୍ମ୍‌ରେ ଶୋଇଥିବା ଗୃହହୀନ ମଣିଷମାନଙ୍କ କଡ ଦେଇ ସେ ଅଟୋ-ଷ୍ଟାଣ୍ଡକୁ ଚାଲିଆସିଲା । ଏଇ ଛୋଟ ସହରରେ ରିକ୍‌ସାର ବ୍ୟବହାର ହିଁ ଅଧିକ । ତେବେ ବର୍ଷେ ଦେଡବର୍ଷ ତଳେ ଅଟୋ ରିକ୍‌ସା ଚାଲିବା ଆରମ୍ଭ ହୋଇଛି । ଯଦିଓ ଅଟୋ ରିକ୍‌ସାର ସଂଖ୍ୟା କମ୍, ଆଶୀଷ ଜାଣିଥିଲା ଯେ ସକାଳୁ ସକାଳୁ ଅଟୋ ପାଇବାରେ ଆଦୌ ଅସୁବିଧା ହେବନି ।

ଆଗରୁ କହି ରଖିଥିଲେ ଅଫିସ୍‌ର ଗାଡି ସେମାନଙ୍କୁ ନେବାକୁ ଷ୍ଟେସନ୍ ଆସିପାରି ଥାଆନ୍ତା । କିନ୍ତୁ ଜାଣି ଜାଣି ଆଶୀଷ କାହାକୁ କିଛି କହି ନ ଥିଲା । ଷ୍ଟେସନ୍‌ରୁ ତା' ଘର ମାତ୍ର ପନ୍ଦର ମିନିଟ୍‌ର ରାସ୍ତା । ସେଥିପାଇଁ କାହିଁକି ବିଚରା ଅଫିସ୍ ଡ୍ରାଇଭର୍ ଭୋର୍‌ରୁ ଭୋର୍‌ରୁ ଷ୍ଟେସନ୍ ଦୌଡିଥାଆନ୍ତା !

ଲିପିକାକୁ ନେଇ ନିଜଘର ଆସିବା ଖବର କାହାକୁ ସିନା ଦେଲା ନାହିଁ ଆଶୀଷ, ହେଲେ ଖବର ଠିକ୍ ପହଞ୍ଚିଗଲା ସମସ୍ତଙ୍କ ପାଖରେ । ପନ୍ଦର ମିନିଟ୍‌ର ଅଟୋ-ଯାତ୍ରାରେ ବୋଧହୁଏ ଚହ୍ଲା କ୍ଷୀରବାଲା କି ଖବରକାଗଜବାଲା ଆଖିରେ ପଡି-ଯାଇଥିଲା ସେ । ତା'ପରେ ଏ କାନରୁ ସେ କାନ ହେବାକୁ କଲୋନି ଭିତରେ କେତେ ସମୟ ବା ଲାଗେ !

ଏକୋଇଶ ଦିନ ବନ୍ଦ ହୋଇ ପଡିଥିବା ଘରଟା ଭଲ କରି ସଫା ହେବା ଆଗରୁ ଫୋନ୍ ବାଜିବା ଆରମ୍ଭ ହୋଇଗଲା । ସମସ୍ତଙ୍କର ଅଭିମାନଭରା ସେଇ ଏକା କଥା । 'ନୂଆ ସ୍ତ୍ରୀକୁ ନେଇ କରି ଆସିଲ, ଆଗରୁ ଖବର ଟିକିଏ ଦେଇପାରିଲନି ?'

ଆଉ ସମସ୍ତଙ୍କୁ ଆଶୀଷର ସେଇ ଏକାରକମ ଉତ୍ତର । 'ଭୁଲ୍ ହୋଇଗଲା । ସରି, ଭାଉଜ ।' କିମ୍ବା, 'ସରି, ସାର୍ ।' କିମ୍ବା, 'ସରି, ଦିଦି ।'

'ଏଥର କୁହ, ସ୍ତ୍ରୀକୁ ନେଇ ଆମ ଘରକୁ କେବେ ଆସୁଛ ?'

ସାଙ୍ଗେ ସାଙ୍ଗେ କଥା ବି ଦେବାକୁ ହେଲା । 'ଆସିବି । ଖୁବ୍ ଶୀଘ୍ର ।'

ଲିପିକା ଅବାକ୍ ହୋଇ ଦେଖିଲା, ଆଶୀଷକୁ ନେଇ ସମସ୍ତଙ୍କର ଟଣାଟଣି । ଅହଙ୍କାର ନୁହଁ, ଆନନ୍ଦରେ ତା' ଛାତି ଭରି ଯାଇଥିଲା । ଯାହେଉ, ବାପା ମା' ତା' ପାଇଁ ଯାହାକୁ ବାଛି ଆଣିଛନ୍ତି, ସେ ମଣିଷଟି ନିହାତି ମାମୁଲି ନୁହଁ । ଏ ମଣିଷର ପତ୍ନୀ ହେବାରେ ଗୌରବ ଅଛି । ରଣଜିତକୁ ବାହା ହେଇଥିଲେ ଏ ଗୌରବ ଅନ୍ତତଃ ମିଳି ନ ଥାଆନ୍ତା ।

ଯେତେବେଳେ ପାଠ ଶେଷକରି ଘର ସଂସାର କରିବାର ଅପେକ୍ଷାରେ ଲିପିକା ପାଖ ମଣ୍ଟେସରି ସ୍କୁଲ୍‌ରେ ଚାକିରି କରିବା ଆରମ୍ଭ କରିଲା, ପ୍ରାୟ ସେତିକି ବେଳେ ରଣଜିତ ତାକୁ ଜଣେଇଦେଲା ଯେ ମନ ମୁତାବକ ଚାକିରି ମିଳିଲାନି । ସେଥିପାଇଁ ସେ ସ୍ଥିର କରିଛି କୋରାପୁଟ୍‌ର କେଉଁ ଏକ ଆଶ୍ରମରେ ଯାଇ ଆଦିବାସୀ ଉନ୍ନୟନ କାମ କରିବ ।

ରଣଜିତକୁ ଚହ୍ନିବାର ତିନିବର୍ଷ ଭିତରେ ଯଦି ଲିପିକା ତା' ଭିତରେ ସେବା ମନୋବୃତ୍ତିର ସୁରାକ ପାଇଥାଆନ୍ତା, ତାହେଲେ ଅବାକ୍ ହୋଇନଥାଆନ୍ତା । ହୁଏତ ବା ତା' ସାଙ୍ଗରେ ପାଦ ମିଳେଇବାକୁ ଚେଷ୍ଟା କରିଥାଆନ୍ତା । କିନ୍ତୁ ରଣଜିତର ନିଷ୍ପତ୍ତି ସମ୍ପୂର୍ଣ୍ଣ ପଳାୟନପନ୍ଥୀ । ତା' ଘରର ଅବସ୍ଥା ଯାହା, ସେତେବେଳେ 'ଯଃ ପଳାୟତି, ସଃ ଜୀବତି' । ତିନି ଭଉଣୀ ବାହା ହେଇ ନାହାନ୍ତି । ବାପା ରିଟାୟାର୍ କରିବେ କରିବେ ହେଉଛନ୍ତି । ଗାଁରେ ଜମିବାଡି ନାହିଁ । ସହରରେ ଘର ଖଣ୍ଡେ ନାହିଁ । ଅଗତ୍ୟା ସଦ୍ୟ ଚାକିରି ଆରମ୍ଭ କରିଥିବା ସାନଭାଇ ଉପରେ ସବୁ ଦାୟିତ୍ୱ ଲଦିଦେଇ ସେ ପାର ହୋଇଯିବାକୁ ବସିଲା । ଯିବା ପୂର୍ବରୁ ଅବଶ୍ୟ ଲିପିକାକୁ ପ୍ରସ୍ତାବ ଦେଇଥିଲା– 'ଚାଲ, କୋର୍ଟ୍‌ରେ ବାହା ହୋଇଯାଇ କୋରାପୁଟ୍ ପଳେଇବା ।'

ଲିପିକା ରାଜି ହୋଇପାରି ନ ଥିଲା । କୋର୍ଟ୍ କଚରି କାହିଁକି ? ହିନ୍ଦୁ ମତରେ କାହିଁକି ନୁହଁ ? ବାହାଘର ନେଇ ତା' ମନରେ ବେଶ୍ କିଛି କଳ୍ପନା ଥିଲା । ଏମିତି ହେବ, ସେମିତି ହେବ, ଲୋକ ଖାଇବେ, ସାଙ୍ଗସାଥୀ ଆଡ୍ଡା ଦେବେ । ଗହଣା

ମଣ୍ଡି ହୋଇ ନାଲି ବନାରସୀ ପିନ୍ଧି ସେ ବେଦୀରେ ବସିବ । ଦୁଇ ଘରୁ ତ କେବେ ଆପତ୍ତି ନଥିଲା, ତେଣୁ ଏଭଳି ସ୍ୱପ୍ନ ଦେଖିବାରେ କୌଣସି ବାଧା ନଥିଲା ଲିପିକାର ।

ରଣଜିତ କିଛି ସମୟ ଭାବିବା ପରେ ଲିପିକା କଥାରେ ରାଜି ହୋଇଯାଇଥିଲା । ଦୁଇ ପକ୍ଷରୁ ବାହାଘର ନେଇ କଥାବାର୍ତ୍ତା ଆରମ୍ଭ ହୋଇଗଲା । ବଡ ପୁଅ ପାଖରୁ କିଛି ସାହାଯ୍ୟ ପାଇବାର ଆଶା ନ ଥିବା ବେଳେ ଏଇଭଳି ଗୋଟିଏ ବିବାହଜନିତ ସୁଯୋଗକୁ ହାତଛଡା କରିବା ପାଇଁ ଚାହିଁନଥିଲେ ରଣଜିତର ବାପା, ମା' । କିଛି ନ ହେଲେ ନିଜର ଗୋଟାଏ ଝିଅର ତ ବାହାଘର ସେତିକିରେ ଉଠିଯିବ !

ଲିପିକା ଭାବିଥିଲା ରଣଜିତ ବିରକ୍ତ ହେବ । ଆପତ୍ତି କରିବ । ଲିପିକା ବାପା ମା' ତ ଏକମାତ୍ର ଝିଅକୁ ସାଧମତେ ସଜେଇ ଶାଶୁଘର ପଠେଇବାରେ କାର୍ପଣ୍ୟ କରିବେ ନାହିଁ, ପୁଣି ଦିଆଥୁଆ ଆଲୋଚନା କାହିଁକି ? ରଣଜିତ କିନ୍ତୁ ଉଚ୍ଚବାଚ୍ୟ କରିନଥିଲା । ବରଂ ଥଟ୍ଟାରେ ଲିପିକାକୁ କହିଥିଲା – 'ଘରେ ଜଣେଇ ଦିଅ, ଖଟ, ଡ୍ରେସିଙ୍ଗ୍ ଟେବୁଲ୍, ସୋଫା, ଆଲମାରି ଇତ୍ୟାଦି ନ ଦେଇ ନଗଦ ଖସାଇବାକୁ । ତା' ବରଂ କାମରେ ଲାଗିବ ।'

ଲିପିକା ହସି ନଥିଲା । ଘରେ ବି କିଛି କହି ନ ଥିଲା । ସେତେବେଳେ ତା' ମନରେ ଦ୍ୱିଧା ବସି ଯାଇ ସାରିଛି । ବାପା ମା'ଙ୍କର ଏକମାତ୍ର ଝିଅଟିକୁ କେବଳ ଯୌତୁକ ଲୋଭରେ ବାହା ହେବାକୁ ଚାହୁଁନି ତ ରଣଜିତ ? ନହେଲେ ଯେଉଁ ମଣିଷଟି ଲିପିକାକୁ ଏତେ ସ୍ୱପ୍ନ ଦେଖାଇଥିଲା, ଏମିତି ସୁଖରେ ରଖିବ, ସେମିତି ଦେଶ ବୁଲେଇ ଦେଖେଇବ, ନିଜ ହାତରେ ସ୍ତ୍ରୀକୁ ସଜେଇବ – ସେ କେମିତି ବାହାଘରର ଦିଆନିଆ ଆଲୋଚନାରେ ଆପତ୍ତି ନ ଜଣେଇ ଭାଗ ନେଉଛି ।

ଭାଗ୍ୟ କୁହ, ଦୁର୍ଭାଗ୍ୟ କୁହ, ସେତିକିବେଳେ ଲିପିକାର ଜେଜେମା' ଚାଲିଗଲେ । ଅଗତ୍ୟା ବାହାଘର ଆଲୋଚନା ସ୍ଥଗିତ ରହିଲା । ପୁଣି ଯେତେବେଳେ ସେ ଦିଗରେ ଆଗେଇବା ସମୟ ଆସିଲା, ସେତେବେଳକୁ ନିଜେ ଲିପିକା ହିଁ ମନ ବଦଳେଇ ନେଇଛି । ରଣଜିତକୁ ବାହା ହେବ ନାହିଁ । ବାପା ମା' ଯେଉଁଠି ସ୍ଥିର କରିବେ, ସେଇଠି ସେ ରାଜି ।

କିଛି ମାସ ପରେ ଆଶୀଷ ସାଙ୍ଗରେ ତା' ବାହାଘର ସ୍ଥିର କରିଦେଲେ ବାପା ମା' । ଆଉ ସ୍ଥିର ହୋଇଥିବା ତିଥିରେ ବାହାଘର ବି ହେଇଗଲା ।

ତା'ପରେ ଏଇ ନୂଆ ଜାଗାରେ ସେ ।

ଲିପିକା ଆଗରୁ ଜାଣିଥିଲା ଯେ ନିଜ ଜୁନିଅର୍ ଇଞ୍ଜିନିଅର୍ ସ୍ୱାମୀ ସାଙ୍ଗରେ ତାକୁ କାରଖାନାର କଲୋନିରେ ରହିବାକୁ ହେବ । କିନ୍ତୁ କାରଖାନାର ପିରାମିଡ୍‌ରେ

ତଳୁଆଡକୁ ଥିବା ତା' ସ୍ୱାମୀଟି ଯେ ଏମିତି ଜନପ୍ରିୟ ତା' ତାକୁ ଜଣାନଥିଲା । ପ୍ରଥମ ଦିନ ଦେଇଥିବା କଥା ରଖିବାକୁ ହେଲା । ସବୁଦିନ ଅଫିସ୍‌ରୁ ଫେରିବାପରେ ଆଶୀଷ ନିମନ୍ତ୍ରଣର ଲିଷ୍ଟ୍ ଲିପିକାକୁ ଧରେଇ ଦେଉଥିଲା । 'କାଲି ସୋମୁ ଆୟାର୍ ରାତିରେ ଖାଇବା ପାଇଁ ଡାକିଛି ।' ବା, 'ରବିବାର ଦିପହରେ ମିଷ୍ଟର୍ ଦୁବେଙ୍କ ଘରକୁ ଯିବାକୁ ହେବ'। ଅଥବା, 'ବବିକୁ ମୁଁ କହିଲି ଯେ ଶନିବାର ଦିନ ଆସି ପାରିବି ନାହିଁ, ଏମ୍.ଡି.ଙ୍କ ଘରେ ଡିନାର୍ । ହେଲେ ତା'ର ଏକା ଜିଦି – କିଛି ନହେଲେ ଚାହା ପିଇବା ପାଇଁ ଆସ' ।

ଏତେଟା ସ୍ନେହ ଲିପିକା ଆଶା କରି ନ ଥିଲା । ତାକୁ ସବୁ କିଛି ବହୁତ ଭଲ ଲାଗୁଥିଲା ।

ନୂଆ ମଣିଷ ପୁରୁଣା ହେଇଆସିଲା । ଲିପିକା, ଆଶୀଷଙ୍କ ଘର ଧୀରେ ଧୀରେ ସଜାଡି ହୋଇଗଲା । କିନ୍ତୁ ନିମନ୍ତ୍ରଣର ତାଲିକା ଆଗ ଭଳି ନ ହେଲେ ବି ଲାଗି ରହୁଥିଲା । ଯେଉଁ ଲିପିକା ପ୍ରଥମ ପ୍ରଥମ ଲୋକମାନଙ୍କ ଆତ୍ମୀୟତାରେ ବିହ୍ୱଳ ହୋଇଯାଇଥିଲା, ସେ ହିଁ ଟିକିଏ ଐକାନ୍ତିକତା ଖୋଜିବାକୁ ଲାଗିଲା । ଆଶୀଷ ସାଙ୍ଗରେ ଏକାନ୍ତ ସମୟ । ମିଳୁଥିଲା କାହିଁ ?

ଆଜି ଦେଶମୁଖଙ୍କ ଘରକୁ ଯିବାକୁ ହେବ । ଏଗାର ତାରିଖ ବିଜୟା ପାଇଁ ବୋଷବାବୁଙ୍କ ନିମନ୍ତ୍ରଣ । ଅଠର ତାରିଖ ଭେଙ୍କଟ୍ ପୁଅ ପାପୁର ପ୍ରଥମ ଜନ୍ମଦିନ । ଦିନଟା ତ ସେଇଠି କଟେଇବାକୁ ହେବ ।

କ୍ଲାନ୍ତ ଲିପିକା କେମିତି କ୍ଷମା ମାଗି ମନା କରିଦେବ ବୁଝିପାରେ ନାହିଁ । ସେ ଆଶୀଷକୁ ଧରେ । କହେ, 'ତୁମେ ମନା କରି ଦିଅ ନା ।'

'କେମିତି ମନା କରିବି ? ଭଲ ଦିଶିବନି ।'

ଲିପିକା ମୁହଁ ଫୁଲାଏ । କହେ, 'ସପ୍ତାହର ଛଅ ଦିନ ତ ତୁମେ ଅଫିସ୍ କାମରେ ବ୍ୟସ୍ତ । ଶନିବାର ସଂଧ୍ୟାଠୁଁ ରବିବାର ଯାଏଁ ଯାହା ସମୟ ଟିକିଏ ମିଳେ । ଅଥଚ ସେଇ ସମୟତକ ତୁମେ ଘର ଘର ବୁଲି କଟାଇବ ! ତା'ହେଲେ ମୋ' ସାଙ୍ଗରେ ସମୟ କଟେଇବ କେତେବେଳେ ?'

'ଆରେ !' ଆଶ୍ଚର୍ଯ୍ୟ ହୁଏ ଆଶୀଷ, 'ମୋତେ ଏକା କ'ଣ କେହି ଡାକୁଛନ୍ତି ? ତୁମେ ବି ତ ଥିବ ମୋ ସାଙ୍ଗରେ ।'

'ଥାଉ ଥାଉ, ଆଉ କୁହନି । ସେମିତି ସାଙ୍ଗରେ ଥିବା ନଥିବା ଭଳି । ସମସ୍ତେ କହୁଥିବେ– ଆଶୀଷ, ଏଇଟା ଦେଖ ତ । ସେଇଟା ଟିକିଏ କରି ଦିଅ ତ ।...

ବାସ୍– ତୁମେ ଉଭାନ୍ ।'

'କ'ଣ କରିବା, ଲିପି ? ଏଇ ସମାଜରେ ରହିବାକୁ ହେବ । ସମସ୍ତଙ୍କଠୁଁ ଦୂରେଇ ରହିଲେ କ'ଣ ଚଳିବ ?'

ଲିପି କ'ଣ ଜାଣେନି ସେକଥା ! କିନ୍ତୁ ମନ ମାନେ କୋଉଠି ?

ଲିପିକା, ଆଶୀଷଙ୍କ ବାହାଘରର ବର୍ଷେ ପୂରିଗଲା । ଏଇ ବର୍ଷକ ଭିତରେ ଆଉ ଦୁଇଜଣ ନୂଆ ବାହାହୋଇ କଲୋନିକୁ ଆସିସାରିଲେଣି । ଲିପିକା ଆଶ୍ଚର୍ଯ୍ୟ ହୋଇ ଦେଖିଲା ଯେ ତାକୁ ଓ ଆଶୀଷକୁ ନେଇ ଯେମିତି କଲୋନିରେ ଟଣା-ଓଟରା ଲାଗିଯାଇଥିଲା, ଏଇ ନୂଆ ଦମ୍ପତ୍ତି ଦୁଇଟିଙ୍କୁ ନିମନ୍ତ୍ରଣ କରିବା ନେଇ ଏତେଟା ଆୟୋଜନ ନାହିଁ । ଚାକିରି ଦୃଷ୍ଟିରୁ ଦେଖିଲେ ଜଣେ ଆଶୀଷର ସମ-ସାମୟିକ, ଆଉ ଜଣେ ଗୋଟିଏ ପାଦ ଉପରେ । ମଣିଷ ହିସାବରେ ବି ଦୁଇଜଣ ବହୁତ ଭଲ । ଅଥଚ ଏଇମିତି ଫରକ କାହିଁକି ? ଘରକୁ ଅଲଗା ଅଲଗା ନିମନ୍ତ୍ରଣ ନକରି କ୍ଲବ୍ ହାଉସ୍‌ରେ ସମସ୍ତେ ଏକାଠି ମିଶି ସେମାନଙ୍କୁ ଡିନାର୍‌ଟିଏ ଦେଇଦେଲେ । ଆଉ ଚାନ୍ଦା କରି କିଛି ଉପହାର । ବାସ୍– ତା'ପରେ ସେମାନଙ୍କୁ ନିଜ ନିଜ ଘର ବସେଇବାକୁ ଛାଡ଼ିଦେଲେ ସମସ୍ତେ ।

ହେଲେ ଲିପିକାର କାହିଁକି ତ୍ରାହି ନାହିଁ ? କାହିଁକି ତାକୁ ଓ ଆଶୀଷକୁ ନେଇ ଏତେ ଟଣା ଟଣି ?

ବର୍ଷକ ଭିତରେ ବୁଝି ପାରିଲା ନାହିଁ ଲିପିକା, ଅଥଚ୍ ନୂଆ ବାହା ହୋଇ ମିରଟ୍ ପାଖ କୋଉ ଗାଁରୁ ଆସିଥିବା ରୋଶନୀ ମାସକ ଭିତରେ ବୁଝିଗଲା । ଏବଂ ତାକୁ ବୁଝେଇ ବି ଦେଲା ।

ଷୋହଳ ସତର ବର୍ଷର ଝିଅ ରୋଶନୀ । ସ୍କୁଲ୍ ପାଠ ଶେଷ କରିବାକୁ ସମୟ ପାଇନି । କିଏ ଜଣେ ଥରେ ପଚାରିଥିଲା, 'ଅଠର ପୂରିବା ଆଗରୁ କେମିତି ବାହା କରିଦେଲେ ତୁମ ବାପା ମା' ? ପୋଲିସ୍ ଯଦି ଧରେ...'

'ପୋଲିସ୍ !' ଠୋ ଠୋ ହେଇ ହସିଥିଲା ରୋଶନୀ । 'ମୋ' ବାପା ନିଜେ ପୋଲିସ୍‌ରେ ଚାକିରି କରନ୍ତି । ଗାଁ ର ଥାନେଦାର୍ ସେ ।'

ସେଇ ରୋଶନୀ ସେଦିନ ଦିପହରେ କିଛି ସମୟ କଟେଇବାକୁ ଲିପିକା ପାଖକୁ ଆସିଥିଲା । ଚାହା ପିଉପିଉ କହିଥିଲା, 'ଲିପିକା ଦିଦି, ତୁମେ ଏଠି ବର୍ଷେ ହେଲାଣି ରହିଛ କେମିତି ? ତୁମ ଦମ୍ ବନ୍ଦ ହୋଇଯାଉନି ? ଏଠି ତ କରିବାକୁ କିଛି ନାହିଁ । ଏ ସହରର ସବୁତକ ଘଣ୍ଟା ଚାଲିବା କଥା ଯେମିତି ଭୁଲି ଯାଇଛନ୍ତି । ଯା' ଅପେକ୍ଷା ଢେର୍ ଭଲ ଆମ ଗାଁ ।'

'କ'ଣ କହୁଛ, ରୋଶନୀ ! ମୋତେ ଏଠି ନିଶ୍ୱାସ ନେବାକୁ ବେଳ ନାହିଁ, ଆଉ ତୁମେ ସମୟ ନ କଟିବା କଥା କହୁଛ !'

ଆଖି ନଚେଇଥିଲା ରୋଶନୀ, 'ଓ ହୋ, ମୁଁ ତ ଭୁଲି ଯାଇଥିଲି । ତୁମେ ତ ଆଶୀଷ ଭୈୟାଙ୍କ ଧର୍ମପତ୍ନୀ !'

ଏ କଥାର ପୁଣି ମାନେ କ'ଣ ! ଲିପିକା ଉତ୍ତର ଦେଇଥିଲା, 'ଆଶୀଷଙ୍କର କାମ ଚାପ ଅଛି ନିଶ୍ଚୟ, କିନ୍ତୁ ମୁଁ ଶୁଣିଛି ଯେ ହରୀଶବାବୁଙ୍କର କାମ ଚାପ ଆହୁରି ବେଶୀ ।' ରୋଶନୀର ସ୍ୱାମୀ ହରୀଶ ଆଶୀଷର ସିନିୟର୍ ।

'ନା ନା ନା ନା ନା ! ହରୀଶଙ୍କ ସାଙ୍ଗରେ ଆଶୀଷ ଭୈୟାଙ୍କୁ ତୁଳନା କର ନାହିଁ ।' ନାଟକୀୟତା କଲା ରୋଶନୀ । 'କାହିଁ ଆଶୀଷ ଭୈୟା, ଆଉ କାହିଁ ହରୀଶ ! ତାଙ୍କୁ ନା ପିଲାଙ୍କୁ ଅଙ୍କ ପଢେଇ ଆସେ, ନା ବଗିଚାରେ ଫୁଲ ଫୁଟାଇ ଆସେ । ଭାୟୋଲିନ୍ ଦେଖିଲେ ପଚାରିବେ – 'ଏଇଟା କ'ଣ ସିତାର ?' ହୁସେନ୍ ନାଁ ଉଠିଲେ କହିବେ– 'କୋଉ ଟି.ଭି. ସିରିଆଲ୍‌ର ଅଭିନେତା ସେ ?'... ତା'ଛଡା ଆଶୀଷ ଭୈୟା ଅତି ଭଲ ମଣିଷ । କାହାକୁ କୌଣସି ବିଷୟରେ ମନା କରି ପାରନ୍ତିନି, ହେଲେ ହରୀଶ ତ ମୁହଁ ଉପରେ ସିଧାସଳଖ 'ନା' କହିଦେବା ଲୋକ ।... ଲିପିକା ଦିଦି, ତୁମେ ତୁମ ମିଆଁ ସାଙ୍ଗରେ ଆଉ କାହାକୁ ତୁଳନା କରନି ।'

ରୋଶନୀ ଚାଲିଯିବା ପରେ ବି ବହୁତ ସମୟ ସ୍ଥାଣୁ ହୋଇ ବସି ରହିଥିଲା ଲିପିକା । କାରଣଟି ତାହେଲେ ଏଇଠି ! ଏଇଥିପାଇଁ ତାହେଲେ ସେମାନଙ୍କୁ କଲୋନିରେ ଏତେ ଖୋଜା ଲୋଡା !

ସବୁ ଯେମିତି ତା' ଆଖି ସାମ୍ନାରେ ପରିଷ୍କାର ହୋଇଯାଉଥିଲା । ଠିକ୍ । ଠିକ୍ । ରୋଶନୀ ଯାହା କହିଲା ଏକ୍‌ଦମ୍ ଠିକ୍ ।

ସେଦିନ ପାପୁର ଜନ୍ମଦିନ ପାଇଁ ଭେଙ୍କଟ ଓ ଶୋଭା ବାଧକରି ସକାଳୁ ସେମାନଙ୍କୁ ଡାକିନେଲେ । କେବଳ ସ୍ନେହରେ ନା ଘର ଭିତରେ ବେଲୁନ୍ ସଜାଇବା ପାଇଁ ? ଆଉ ପୁଣି ଚାରିଥର ସ୍କୁଟର୍ ମାରି ସିଙ୍ଗଡା, କଟ୍‌ଲେଟ୍ ଯୋଗାଡ କରିଥିଲା କିଏ ? ଏଇ ଆଶୀଷ ତ ! ଭେଙ୍କଟ୍ କହିବାରୁ ବଡ କେକ୍ ବି ନିଜେ କିଣି ଆଣିଥିଲା ସେ । ପରେ ଆଉ ସେଇ କେକ୍‌ର ପଇସା ଦେବା କଥା ଭେଙ୍କଟ୍ ଉଠେଇନଥିଲା । ଲିପିକା କଥାରେ କଥାରେ ଶୋଭାକୁ ସେ ବିଷୟ କହିଥିଲା । କିନ୍ତୁ ଶୋଭା କଥାଟିକୁ ପୂରାପୂରି ଆଡେଇ ଯାଇଥିଲା । ଆଶୀଷର ଦରମା ମନ୍ଦ ନୁହଁ, କିନ୍ତୁ ଅନ୍ୟମାନଙ୍କ ପାଇଁ ଏତେଟା ଖର୍ଚ୍ଚ କରିବାର କ୍ଷମତା କାହିଁ ? ତଥାପି

ସେ କହିଥିଲା, 'ଛାଡ ଛାଡ ଲିପି । ଭେଙ୍କଟ୍ ମୋର ଏତେ ଭଲ ସାଙ୍ଗ, ସେ ଯଦି କେଉଁ ଶହ ଟଙ୍କା ନ ଦେଲା ତ ନ ଦେଉ ।'

ଭେଙ୍କଟ୍ ସିନା ଆଶୀଷର ଏତେ ଭଲ ସାଙ୍ଗ ବୋଲି ତା' ଉପରେ ଅଧିକାର ସାବ୍ୟସ୍ତ କରେ, କିନ୍ତୁ ଦେଶମୁଖ ଦମ୍ପତିଙ୍କର ଏତେ ଦାବୀ କାହିଁକି ? ବୟସରେ ସେମାନେ ଯଥେଷ୍ଟ ବଡ । ବିଜୟ ଦେଶମୁଖ ଏକା ଡିପାର୍ଟମେଣ୍ଟର ନୁହଁନ୍ତି କି ଆଶୀଷର ନିଜ ସିନିୟର୍ ଅଫିସର୍ ନୁହଁନ୍ତି । ଅଥଚ ପ୍ରତି ଦିନେ ଦୁଇଦିନରେ ରେଖା କିମ୍ବା ବିଜୟ ଦେଶମୁଖଙ୍କ ଫୋନ୍ ଆସିଯାଏ । ଗତ କେଇ ମାସ ଧରି ଦୁଇ ଜଣଙ୍କର ସଉକ୍ ହେଇଛି ଲ୍ୟାଣ୍ଡସ୍କେପିଙ୍ଗ୍ କରିବା । କାରଖାନା ତରଫରୁ ମିଳିଥିବା ଘର ପଛ ପଟେ ପ୍ରଚୁର ଜାଗା । ମାଳୀଟିଏ ଆସି ତା' କ୍ଷମତା ଅନୁଯାୟୀ ଯତ୍ନ କରେ । କିନ୍ତୁ ସେତିକି ଯତ୍ନରେ ସନ୍ତୁଷ୍ଟ ନୁହନ୍ତି ରେଖା, ବିଜୟ । ବିଦେଶୀ ପତ୍ରପତ୍ରିକାରେ ଦେଖୁଥିବା ଇଂଲିଶ୍ ଗାର୍ଡେନ୍‌ଟିଏ ଦରକାର ସେମାନଙ୍କର ।

ଆଶୀଷ ଛଡା ଆଉ କରେଇ ପାରିବ କିଏ ? ବୁଲି ବୁଲି ବିଭିନ୍ନ ନର୍ସରୀରୁ ଗଛ ଯୋଗାଡ କରି ପାରିବ କିଏ ?

ରୋଶନୀ ଆଙ୍ଗୁଠି ଦେଖାଇ କହିଦେବା ଆଗରୁ ଲିପିକା ଏତେ ଭାବି ନ ଥିଲା । କିନ୍ତୁ ଏବେ ଭାବିବାକୁ ବାଧ ହେଉଛି । ଏଇ ତ ସେଦିନ କଥା । ଲିପିକା ଓ ଆଶୀଷଙ୍କୁ ସେଥର ଗୋଟିଏ ରବିବାରରେ ଦୁଇ ପହର ଖାଇବା ପାଇଁ ନିମନ୍ତ୍ରଣ କରିଥିଲେ ଦେଶମୁଖ ଦମ୍ପତି । ଲିପିକାର ସତରେ ଯିବାକୁ ଇଚ୍ଛା ନଥିଲା । ଶୀତ ଦିନର ରବିବାର । ତା'ର ଇଚ୍ଛାଥିଲା, ଆଶୀଷ ପାଇଁ ନିଜ ହାତରେ ମାଂସ ରାନ୍ଧିବ । ପୁରି କରିବ । ଆଉ ତା'ପରେ ସ୍ୱାମୀ ଛାତିରେ ମୁହଁ ଗୁଞ୍ଜି ଦିପହରେ ଶୋଇପଡିବ ।

କିନ୍ତୁ ରେଖା ଦେଶମୁଖଙ୍କର ବାରମ୍ବାର ନିମନ୍ତ୍ରଣ, ବିଜୟ ଦେଶମୁଖଙ୍କର ବହୁ ଏସ୍.ଏମ୍.ଏସ୍– ମନାକରି ହେଲାନାହିଁ । ତଥାପି ଲିପିକାର ଆଶା ଥିଲା ଖିଆପିଆ ଶେଷହେବା ମାତ୍ରକେ ଆଶୀଷ ସାଙ୍ଗରେ ଘରକୁ ଫେରିଆସିବ । ଶୀତଦିନ ରବିବାରର ଦିବାନିଦ୍ରା ଯୋଜନାଟିକୁ ସାକାର କରିବାକୁ ଚେଷ୍ଟା କରିବ ।

ହେଲା ନାହିଁ ।

ରୁଟି, ଡାଲି, ଆଳୁକୋବି ଭଜା ଓ ସାଲାଡ୍‌ର ସାଦାସିଧା ଖିଆ ଶେଷ ହେବା ପରେ ବିଜୟ ଦେଶମୁଖ ଓଠରେ ସିଗାରେଟ୍ ଲଗେଇ ବାରଣ୍ଡାର ଆରାମ୍ ଚୌକିରେ ଦେହ ଲମ୍ବେଇ ଦେଇଥିଲେ । ଆଉ ରେଖା ଦେଶମୁଖ ସଦ୍ୟ ଫୁଟିଥିବା କୌଣସି ଏକ ଫୁଲ ଦେଖାଇବାକୁ ସେମାନଙ୍କୁ ନେଇଯାଇଥିଲେ ବଗିଚାର ପଶ୍ଚିମ ପଟକୁ ।

ସେତିକିବେଳେ ଲିପିକାର ଆଖିପଡିଥିଲା ଇଟା ତିଆରି ବେଦୀଟିଏ ଉପରେ ।

ବେଦୀର ଚାରିପଟେ ଗ୍ରାନାଇଟ୍‌ର ସରୁ ଖୁମ୍ବ । ଉପରେ ଗ୍ରାନାଇଟ୍‌ର ଛାତ । 'ଯା'କୁ ପର୍‌ଗୋଲା କହନ୍ତି । ବାଙ୍ଗାଲୋର୍‌ରେ ମୋ' ସାନଭଉଣୀ ଘରେ ଦେଖି ଆସିଥିଲି । ବଡ କଷ୍ଟରେ ପାଖ ସହରରୁ ଲୋକ ଡକେଇ କୌଣସି ମତେ ଏଇଟିକୁ ତିଆରି କରେଇଛି ।'

'ବହୁତ ସୁନ୍ଦର ହେଇଛି ।' ଆଶୀଷ କହିଥିଲା ।

'ତୁମକୁ କିନ୍ତୁ ଏଇଟିକୁ ସଜେଇ ଦେବାକୁ ହେବ, ଆଶୀଷ ।' କିଭଳି ଏକ ଅଳି କରିବା ସ୍ୱରରେ ରେଖା କହିଥିଲେ ।

'ସଜେଇବି, ମାନେ ?'

'ତୁମେ କୁହ, କ'ଣ ଲତା ମାଡିଲେ ଏଇଟି ସୁନ୍ଦର ଦିଶିବ । ପର୍‌ଗୋଲା ତଳେ ମୁଁ ବେତ ଟେବୁଲ୍ ଓ ଚୌକି ପକେଇବାର ବ୍ୟବସ୍ଥା କରୁଛି । ଏଇ ଧର, ଏମ୍.ଡି. ଯଦି ଚାହା ପିଇବାକୁ ଆସନ୍ତି ବା ଜେନେରାଲ୍ ମ୍ୟାନେଜର୍ ଯଦି ଆଜି ଭଳି ରବିବାର ଦି'ପହରେ ସସ୍ତ୍ରୀକ ଆସନ୍ତି, ତାହେଲେ ସବୁ ଆୟୋଜନ ପର୍‌ଗୋଲା ତଳେ ହିଁ ହେବ ।... ଏଥର କୁହ, କ'ଣ ମଡାଇବା ଏହା ଉପରେ ।'

ଟିକିଏ ସମୟ ଭାବିଥିଲା ଆଶୀଷ । ତା'ପରେ କହିଥିଲା, 'ଗୋଟିଏ ରକମର ଲତା ଅଛି ଯେଉଁଥିରେ କି ବର୍ଷ ସାରା ଥୋକା ଥୋକା କମଳା ରଙ୍ଗର ଫୁଲ ଫୁଟେ । ମୋ ମତରେ ସେଇଟା ଲଗେଇଲେ ବଢିଆ ହେବ ।'

'ବର୍ଷ ସାରା କମଳା ରଙ୍ଗ ଫୁଲ ! କାଇଁ, ମୁଁ ତ କୋଉଠି ଦେଖିନି ।'

'ଦେଖି ନାହାନ୍ତି ? ଏଇ ଅଞ୍ଚଳର ଫୁଲ । ଭାରି ସୁନ୍ଦର । ଲତାଟି ବି କମନୀୟ ।'

'କୋଉଠି ମିଳିବ ଏ ଲତା, ଆଁଶୀଷ ?'

'ଲୋକାଲ୍ ଲତା, ମ୍ୟାଡମ୍ । ସହରର ସବୁ ନର୍ସରୀରେ ମିଳିବ ।'

'ଆଣି ଦିଅ ନା ଆଶୀଷ । ଆଜି ଆଣି ଦିଅ ।' ଗେହ୍ଲେଇ ହୋଇ କହିଥିଲେ ରେଖା ଦେଶମୁଖ ।

ବାଧ ହୋଇ ସ୍କୁଟର୍ ମାରି ବାହାରି ଯାଇଥିଲା ଆଶୀଷ । ରବିବାର ଦିନ ଦି'ପହରେ ଛୋଟ ସହରର ଅଧିକାଂଶ ନର୍ସରୀ ବନ୍ଦ ଥିଲା । ଘୂରି ଘୂରି ଶେଷରେ ପ୍ରାୟ ସହରର ଶେଷ ସୀମାରେ ଥିବା ଗୋଟିଏ ନର୍ସରୀରୁ ଆଶୀଷ ଲତାଟିଏ କିଣି ଆଣି ପାରିଥିଲା ।

ଲତାଟି ପାଇ ଦେଶମୁଖ ଦମ୍ପତିଙ୍କର ସେ କି ଆନନ୍ଦ ! ଆନନ୍ଦର ପରିମାଣ ଏତେ ବେଶୀ ଯେ ଖରାରେ ବୁଲି ବୁଲି କଳା ପଡିଯାଇଥିବା ଆଶୀଷର ଶରୀର ସେମାନଙ୍କ ଆଖିରେ ପଡିଲା ନାହିଁ କି ସେ ଖର୍ଚ୍ଚ କରିଥିବା ଟଙ୍କାଟା ଦେବା କଥା

ମନକୁ ଆସିଲା ନାହିଁ ।

ଆଶୀଷ ମେକାନିକାଲ୍ ଇଞ୍ଜିନିଅର୍ । କିନ୍ତୁ ଜଣେ ମେକନିକାଲ୍ ଇଞ୍ଜିନିଅର୍ ଭିତରେ କେମିତି ସବୁ ରକମର ଗୁଣ ଭରି ଦେଲେ ଈଶ୍ୱର, ସେଇଟା ହିଁ ଦେଖିବା କଥା । ସ୍କୁଲ୍ କଲେଜରେ ଭଲ ଛାତ୍ର ତ ଥିଲା ସେ । ତା'ଛଡା ଗୀତ, ଅଭିନୟରେ ତା'ର ଚରମ ଦକ୍ଷତା । କଲେଜରେ ପଢିବା ବେଳେ କେତେ ଯେ ଟିଭି ପ୍ରୋଗ୍ରାମ୍ କରିଛି, ତା'ର କଳନା ନାହିଁ । କେବଳ ଏ ସବୁ ନୁହଁ, ନିଜ ଆଗ୍ରହରେ ଘରର ବହୁରକମର କାମ ବି ଶିଖିଯାଇଥିଲା ସେ ।.କାଠ କାମଠୁଁ ଆରମ୍ଭକରି ଲ୍ୟାଣ୍ଡ୍-ସ୍କେପିଙ୍ଗ୍, ଇଣ୍ଟେରିଅର୍ ଡେକୋରେସନ୍ – ଏଇ ଭଳି କେତେ କ'ଣ ।

ଘର ରଙ୍ଗ ହେବ ? କି ରଙ୍ଗ ? ଆଶୀଷକୁ ପଚାର । କେବଳ ପଚରାପଚରି ନୁହଁ, ଆଶୀଷକୁ ନେଇ କରି ରଙ୍ଗ ଦୋକାନକୁ ଚାଲ । କଥାବାର୍ତ୍ତାଟା ସେ ହିଁ କରୁ । ତା'ପରେ ରଙ୍ଗ ମିସ୍ତ୍ରୀ କାମ କରିବା ଦିନ ବି ତାକୁ ନେଇଆସ । ସେ ପାଖରେ ପାଖରେ ନ ରହିଲେ ରଙ୍ଗ ମିସ୍ତ୍ରୀ ଠିକ୍ ଠାକ୍ କାମ କଲା କି ନାହିଁ ଦେଖିବ କିଏ ?

ଝିଅ ଆଇ.ଆଇ.ଟି. ପରୀକ୍ଷାଦେବା ପାଇଁ ଚେଷ୍ଟା କରୁଛି ? କେବଳ କୋଚଙ୍ଗ୍ ଯଥେଷ୍ଟ ନୁହଁ । ଆଶୀଷକୁ ଡାକ । ସେ ଟିକିଏ ସମୟ କରି ଦୁଇ ତିନି ଘଣ୍ଟା ଦେଖୁ ରବିବାରକୁ ରବିବାର ।

ଆଶୀଷ । ଆଶୀଷ । ସମସ୍ତଙ୍କର ଲୋଡା ଆଶୀଷ । ସ୍ୱାମୀର ଯେଉଁ ସବୁ ଗୁଣ ନେଇ ଲିପିକା ଦିନେ ବହୁତ ଅହଙ୍କାର କରୁଥିଲା, ଏବେ ସେଇ ଏକା ବିଷୟଟି ନେଇ ତା' ମନରେ ଅନୁଶୋଚନା ହେଉଛି । ବୋଧହୁଏ ଖୁବ୍ ଭଲ ହୋଇଥାଆନ୍ତା ଯଦି ତା' ସ୍ୱାମୀଟି ଆଉ ଦଶ ଜଣଙ୍କ ଭଳି ଅଫିସ୍ ବ୍ୟତୀତ ଆଉ କିଛି ବୁଝୁ-ନଥାଆନ୍ତା । ବା ଆଉ କିଛି ସଜେଇ କରିବାର କ୍ଷମତା ତା' ଭିତରେ ନ ଥାଆନ୍ତା । ଘର– ଅଫିସ୍, ଅଫିସ୍ ଆଉ ଘର । ଏଇମିତି କଟିଯାଉଥାଆନ୍ତା ତା' ଦିନଗୁଡାକ । ଲିପିକା ପ୍ରାଣ ଭରି ସ୍ୱାମୀଟିକୁ ପାଆନ୍ତା ପାଖରେ ।

ମନେ ମନେ ଭାବି ହୋଇ ସେ କେବଳ ଛାଟିପିଟି ହୁଏ । ହେଲେ ସେଦିନର ଘଟଣା ପରେ ଆଉ ରହିପାରିଲା ନାହିଁ ସେ ।

ସହର ସାରା କି ଯେ ଭୟଙ୍କର ଭାଇରାଲ୍ ଫିଭର୍ ଚାଲିଥିଲା ସେତେବେଳେ, ଯାହା ଘରେ ଦେଖିବ ସେଇ ଏକା ରୋଗ । ଆଶୀଷ ବି ଦିନେ ପଡିଗଲା ସେଇଥିରେ । ସେ ଭଲ ନ ହେଉଣୁ ଲିପିକା ବି ଶଯ୍ୟାଶାୟୀ । ଦୁର୍ବଳ ଶରୀର ନେଇ ସ୍ତ୍ରୀ, ଘରର ଦେଖାଚାହାଁ ଯେତେଟା କରିପାରେ ଆଶୀଷ କରୁଥିଲା । କିନ୍ତୁ ସେତିକିବେଳେ ଡକରା ଆସିଗଲା ଶ୍ୟାମା ପାଖରୁ । ଯାହାକୁ ଲିପିକା, ଆଶୀଷ

ଡାକନ୍ତି ଶ୍ୟାମା ଭାଉଜ । କଲୋନିର ହାତ ଗଣନ୍ତି କେତେ ଜଣ ଓଡିଆଙ୍କ ଭିତରୁ ଯାହାଙ୍କର ସର୍ବଶ୍ରେଷ୍ଠ ସାମାଜିକ ସ୍ଥିତି ଥିଲା, ସେମାନେ ହେଲେ ରମେଶ ଓ ଶ୍ୟାମା ମହାପାତ୍ର । ଲିପିକା, ଆଶୀଷଙ୍କର ସେଠିକି ଯିବା ଆସିବା ବି ବହୁତ । ଅନ୍ୟମାନଙ୍କ ଭଳି ସେମାନଙ୍କର ଛୋଟ ଛୋଟ ଅନୁରୋଧ ଯେ ରହୁ ନ ଥିଲା, ତା' ନୁହଁ, କିନ୍ତୁ ସେସବୁକୁ ଆଦେଶ ବୋଲି କେବେ ଭାବିନି ଲିପିକା । ଅଣଓଡିଆ ସହରରେ ରହି ରହି ଓଡିଆ ଲୋକଙ୍କର ସାହଚର୍ଯ୍ୟ ଅତି ମଧୁର ମନେ ହେଉଥିଲା ସବୁବେଳେ ।

ଏଥର କିନ୍ତୁ ଅନ୍ୟରକମ ଭାବିବାକୁ ସେ ବାଧ ହେଲା । ଶ୍ୟାମା ଯେତେବେଳେ ଫୋନ୍ କରିଥିଲା ସେତେବେଳେ ଗାଧୋଉଥିଲା ଆଶୀଷ । ଅଗତ୍ୟା ଫୋନ୍ ଉଠେଇଥିଲା ଲିପିକା ।

ତା'ର କ୍ଲାନ୍ତ, ଦୁର୍ବଳ 'ହ୍ୟାଲୋ' ଶୁଣି ଶ୍ୟାମା କହିଥିଲା, 'କ'ଣ ହେଇଛି, ଲିପିକା ? ସ୍ୱର ଏମିତି କାହିଁକି ?'

'ଦେହ ଭଲ ନାହିଁ, ଶ୍ୟାମା ଭାଉଜ ।'

'ଦେହ ଭଲ ନାହିଁ ନା ଆଶୀଷଙ୍କ ସାଙ୍ଗରେ କଳି କରିଛ ?' ଲିପିକାର ଉତ୍ତର ଶୁଣିବାକୁ ଅପେକ୍ଷା ନ କରି ଯୋଡିଥିଲେ, 'ଆଶୀଷଙ୍କୁ ଟିକିଏ ଫୋନ୍ ଦେବ ?'

'ସେ ଗାଧୋଉଛନ୍ତି ।'

'ଗାଧୋଇ ଆସିଲେ ସାଙ୍ଗେ ସାଙ୍ଗେ ଫୋନ୍ କରିବାକୁ କହିବ । ବହୁତ ଜରୁରୀ ଦରକାର ।'

ଶ୍ୟାମାର ଏଇଭଳି କଥା କାହିଁକି କେଜାଣି ଲିପିକାକୁ ଖଟ୍‌କା ଲାଗିଥିଲା । ପୁଣି ପରମୁହୂର୍ତ୍ତରେ ସେ ନିଜକୁ ବୁଝାଇଥିଲା । ଦେହ ଅସୁସ୍ଥ ହେଲେ ସବୁ ଖରାପ ଲାଗିବା ସ୍ୱାଭାବିକ । ଅନ୍ୟ ମଣିଷର ଭଲ କଥା ବି ପିତା ଲାଗିପାରେ । ସେ ଆଉ ଅଧିକ ଚନ୍ତା ନ କରି ଶ୍ୟାମାର ଫୋନ୍ କରି ଖୋଜିବା କଥା ଆଶୀଷକୁ ଜଣେଇ-ଦେଇଥିଲା ।

ଆଶୀଷ ସାଙ୍ଗେ ସାଙ୍ଗେ ଫୋନ୍ ବି କରିଥିଲା । ଶ୍ୟାମା କଥା ତ ଲିପିକା ଶୁଣି ପାରି ନ ଥିଲା, କିନ୍ତୁ ଆଶୀଷର କଥାରୁ କିଛିଟା ଧରି ପାରିଥିଲା ।

'. . .'

'ଏତେ କମ୍ ସମୟରେ ?'

'. . .'

'ଜାଣିନି ଶ୍ୟାମା ଭାଉଜ, ପୂରା ଦିନ ବସି ପାରିବି କି ନାହିଁ । ଭାଇରାଲ୍‌ରୁ

ଉଠିଛି ଏଇ ମାତ୍ର । ଏବେ ଲିପିକା ପଡିଯାଇଛି । ତାକୁ ଟିକିଏ ଦେଖିବାକୁ ହେବ ।'

'. . .'

ଏଥର ଲମ୍ବା ଉକ୍ତି ଅନ୍ୟ ପକ୍ଷରୁ । ନିରବ ଭାବରେ ସବୁ କଥା ଶୁଣି ଆଶୀଷ କହିଥିଲା, 'ହଉ । ମୁଁ ରବିବାର ସକାଳୁ ଆସିବି ।'

'କ'ଣ ହେଇଛି ?' ଆଶୀଷ ଫୋନ୍ ରଖିବା କ୍ଷଣି ଲିପିକା ପଚାରିଲା ।

'ଶ୍ୟାମା ଭାଉଜ କୋଉ ଗୋଟିଏ ଲେଡିଜ୍ ସୋସିଆଲ୍ କ୍ଲବ୍ ସହିତ ଜଡିତ । ସେଇ କ୍ଲବ୍ ତରଫରୁ ଫଣ୍ଡ୍ ରେଜର୍ ହିସାବରେ ନାଟକଟିଏ ହେବ । କାହାଣୀ, କାଷ୍ଟିଙ୍ଗ୍– ସବୁ ଠିକ୍ ହେଇଯାଇଛି । ନିର୍ଦ୍ଦେଶନାଟା କେବଳ ଟିକିଏ ଧରେଇ ଦେବାକୁ ହେବ । ତା'ପରେ ଅବଶ୍ୟ ଶ୍ୟାମା ଭାଉଜ ନିଜେ ସମ୍ଭାଳି ନେବେ ।'

'ଆଉ ତୁମେ ପୂରା ରବିବାରଟା ସେଇଠି ଧାରଣା ଦେବାକୁ ରାଜି ହୋଇଗଲ !' ବିରକ୍ତିରେ ଲିପିକା କହିଲା, 'ଏଇ ମାତ୍ର ଭାଇରାଲ୍‌ରୁ ଉଠିଛ, ଏତେଟା ଷ୍ଟ୍ରେନ୍ ନେଲେ ପୁଣି ରିଲାପ୍‌ସ୍ କରିବନି ?'

'ଶ୍ୟାମା ଭାଉଜଙ୍କୁ କେମିତି ମନା କରିବି, କୁହ ।'

ଲିପିକା ଜାଣେ, ଆଶୀଷକୁ ଆଉ କିଛି କହି ଲାଭ ନାହିଁ । ଥରେ କଥା ଦେଇ ଦେଇଛି ମାନେ ସେ କଥା ରଖିବ ହିଁ ।

ରବିବାର ଦିନ ଗଲା ଆଶୀଷ । କଥା ଥିଲା ସେଇ ଦିନକ ହିଁ ଯିବ । ଆଉ ନାହିଁ । କିନ୍ତୁ କେବେ ସେମିତି ହେଇଛି କି ? ଅନ୍ତତଃ ଲିପିକା ଦେଖିବା ଭିତରେ ତ ଥରେ ବି ନୁହଁ । ଅର୍ଥାତ୍ ସୋମବାର ସଂଧାରେ ବି ଆଶୀଷକୁ ଯିବାକୁ ହେଲା । ପୁଣି ବୁଧବାର, ପୁଣି ତା'ପର ଶୁକ୍ରବାର । ଶନିବାର ଦିନ ବି । ରବିବାର ସଂଧାରେ ନାଟକ । ସହରରେ ବିକ୍ରି ହୋଇଥିବା ଟିକେଟ୍‌ରେ ବଡବଡ ଅକ୍ଷରରେ ଲେଖା-ହୋଇଥିଲା ଯେ ନିର୍ଦ୍ଦେଶନା ଦେଇଛନ୍ତି ଶ୍ୟାମା ମହାପାତ୍ର । ବଣ୍ଟା ହୋଇଥିବା ପାମ୍ଫଲେଟ୍‌ରେ ଅଭିନେତା, ଅଭିନେତ୍ରୀଙ୍କଠୁଁ ଆରମ୍ଭ କରି ସଙ୍ଗୀତ ପରିଚାଳକ, କଳା ନିର୍ଦ୍ଦେଶକ ସମସ୍ତଙ୍କର ନାଁ ଥିଲା । କିନ୍ତୁ ଆଶୀଷର ନାଁ କୌଣସି ଜାଗାରେ ଉଲ୍ଲେଖ ନଥିଲା । ନହେଉ, କେତେ ଆଗରୁ ତ ସେସବୁ ଛପା ସରିଥିବ, କେମିତି ସେଥିରେ ତା' ନାଁ ଛପାହୋଇଥାଆନ୍ତା ? ଲିପିକାକୁ ବୁଝେଇ ଦେଇଥିଲା ଆଶୀଷ ।

ଲିପିକା ବୁଝି ବି ଯାଇ ଥାଆନ୍ତା । କିନ୍ତୁ ରବିବାର ସକାଳୁ ଶ୍ୟାମା ସାଙ୍ଗରେ କଥା କହି ସେ ପୂରାପୂରି ସ୍ତବ୍ଧ ହୋଇଗଲା ।

ରବିବାର ସକାଳୁ ସକାଳୁ ଖବର ନାହିଁ, ଫୋନ୍ ନାହିଁ, ହଠାତ୍ କରି ତା' ମାମୁଁ ଝିଅ ଭଉଣୀ ରୁନି ନାନୀ ଆଉ ଭିଣେଇ ଘରେ ପହଞ୍ଚିଗଲେ । ପାଖ

ସହରରେ ରହନ୍ତି ସେମାନେ । ଭିଣେଇଙ୍କର ଟୁର୍ ଯିବାଆସିବା ବାଟରେ ଏଇମିତି ମଝିରେ ମଝିରେ ଚାଲି ଆସନ୍ତି । ରୁନି ନାନୀ ସାଙ୍ଗରେ ଲିପିକାର ସମ୍ପର୍କ ଭଲ, କିନ୍ତୁ ଅଦେଖା ଭାବରେ କୋଉଠି ଟିକିଏ ବାଦାବାଦି ବି ରହିଯାଇଛି । ଝିଅ ବେଳେ ପାଠ ନେଇ, ଲୁଗାପଟା ନେଇଥିଲା, ଏବେ ଅଛି ସଂସାର, ବର, ଶାଶୂ ଘର ନେଇ ।

'ଏଇ ବାଟ ଦେଇ ଘରକୁ ଫେରୁଥିଲୁ । ୟେ କହିଲେ, ଚାଲ ଟିକିଏ ମୁହଁ ମାରି ଦେଇଯିବା । ... ଶୀଘ୍ର ଚାହା ପିଆ, ଲିପି । ତା'ପରେ ଚାଲି ଯିବୁ ଆମେ । ଶାଶୂଙ୍କ ପାଖରେ ଦୁଇଗୁଣ୍ଡାଙ୍କୁ ଛାଡିକରି ଯାଇଥିଲି, ଏଇ ତିନିଦିନରେ ତାଙ୍କ ଅବସ୍ଥା କାହିଲ୍ କରି ଦେଇଥିବେ ସେମାନେ ।' ପହଞ୍ଚିବାକ୍ଷଣି ରୁନି ନାନୀ କହିଥିଲା ।

'ଚାଲି ଯିବ କାହିଁକି ? ଏତେ ଦିନ ପରେ ଆସିଲ, ଆଜି ଦିନଟା ଏଇଠି କଟାଅ । ମାଉସୀ ଠିକ୍ ସମ୍ଭାଳି ନେବେ ତପୁ, ଦୀପୁଙ୍କୁ ।... ଜାଣିଛ, ଆମର ଏଠି ସଂଧ୍ୟାରେ ନାଟକଟିଏ ହେବ । ସେଇଟା ଦେଖି କରି ଯିବ ।'

'ନାଟକ ! ଆଶୀଷ ନିର୍ଦ୍ଦେଶନା ଦେଇଛନ୍ତି ?'

'ଖାଲି ନିର୍ଦ୍ଦେଶନା ନୁହଁ, ପ୍ରାୟ ସବୁ କିଛି ।'

'ତା'ହେଲେ ତ ଦେଖିବାକୁ ହେବ । ଟିକେଟ୍ ବ୍ୟବସ୍ଥା କ'ଣ ହେବ, ଲିପି ?' ରୁନି ନାନୀ ପଚାରିଥିଲା ।

'ଟିକେଟ୍ ଲୋକ ଆସି ଘରେ ଦେଇଯିବ । ମୁଁ ଫୋନ୍‌କରୁଛି ସାଙ୍ଗେ ସାଙ୍ଗେ ।' ଏବଂ ଶୋଇବା ଘର ଭିତରକୁ ଚାଲି ଯାଇ ଲିପିକା ଶ୍ୟାମାକୁ ଫୋନ୍ କରିଥିଲା ।

ଶ୍ୟାମା ସ୍ୱରରେ ବ୍ୟସ୍ତତା । 'ହଠାତ୍ ଫୋନ୍ କଲ ଯେ ଲିପିକା । କ'ଣ ବହୁତ ଦରକାର ଅଛି ?'

'ଶ୍ୟାମା ଭାଉଜ, ଆମର ଦୁଇଟା ଅଧିକା ଟିକେଟ୍ ଦରକାର । ମୋ' ମାମୁଁ ଝିଅ ଭଉଣୀ ଆଉ ଭିଣେଇ ଆସି ପହଞ୍ଚିଛନ୍ତି ।'

'ଟିକେଟ୍ ! ଟିକେଟ୍ ତ ଥିଏଟର୍ ବାହାରେ ଯେଉଁ ଷ୍ଟଲ୍ ହେଇଛି, ସେଇଠି ମିଳୁଛି ।... ଓହୋ, ତୁମେ ମାଗଣା ଟିକେଟ୍ କଥା କହୁଥିଲ କି ? କ'ଣ କରିବି କୁହ, ଫଣ୍ଡ-ରେଜର୍ ପାଇଁ ନାଟକ । କାହାକୁ ମାଗଣା ଦେଇ ହେଉନି । ... କିଛି ମନେ କରିବନି, ଲିପିକା, ଫୋନ୍ ରଖୁଛି । ବହୁତ କାମ ଆଜି ।'

ଫୋନ୍ ରଖିବା ପରେ ଲିପିକା ଆଶୀଷ ଉପରେ ରାଗରେ ଫାଟି ପଡିଲା । 'ଯାଅ, ଆହୁରି ସମୟ ଦିଅ ସେମାନଙ୍କ ପଛରେ । ଅଧିକା ଟିକେଟ୍ ଦିଇଟା ମାଗି ଦେଲି ଯେ ଫଣ୍ଡ-ରେଜର୍ ଦେଖାଇ ହେଉଛନ୍ତି !'

ଆଶୀଷ ଶାନ୍ତ ଭାବରେ ଉତ୍ତର ଦେଲା, 'କ'ଣ ଦରକାର ଥିଲା ଟିକେଟ୍ ମାଗିବା । ପଚାଶ ପଚାଶ ଶହେ ଟଙ୍କା ଦେଇ ଦିଇଟା ଟିକେଟ୍ କିଣିବାର କ୍ଷମତା ଆମର କ'ଣ ନାହିଁ ?'

'ଏଠି କ୍ଷମତା କଥା ପଡିନି, ଭଦ୍ରାମି କଥା ପଡିଛି । ଦେଖିବାକୁ ଗଲେ ତୁମେ ହିଁ ନାଟକର ନିର୍ଦ୍ଦେଶନା ଦେଲ । ସେଟ୍, ଲାଇଟିଙ୍ଗ୍– ସବୁ ବୁଝିଲ । କଷ୍ଟ୍ୟୁମ୍, ମ୍ୟୁଜିକ୍ ପାଇଁ ନିଜେ ଦୌଡାଦୌଡି କଲ । ଅଥଚ ଶ୍ୟାମା ଭାଉଜ ସିଧା ସଳଖ କହିଦେଲେ ଟିକେଟ୍ କିଣି ନିଅ ! ... ମୁଁ ଯିବିନି ସେ ନାଟକ ଦେଖି ।'

'ନା, ଲିପି, ଏବେ ତ ଯିବାକୁ ହିଁ ହେବ । ତୁମେ ଯଦି ଫୋନ୍ କରିନଥାଆନ୍ତ, ତା'ହେଲେ ଅଲଗା କଥା । ଏବେ ନଗଲେ ବଡ ଅସୁନ୍ଦର ହେବ ।' ଆଶୀଷ ଜୋର୍ ଦେଇ କହିଲା ।

ଶେଷରେ ଯିବାକୁ ହିଁ ହେଲା ।

ହଲ୍‌ର ପ୍ରାୟ ଶେଷ ଆଡକୁ ସିଟ୍ ମିଳିଲା । ତଥାପି ଲିପିକା ଅପେକ୍ଷା କରିଥିଲା । ନାଟକ ଶେଷରେ ସଭାଟିଏ ହେବାର ଅଛି । ସେତିକିବେଳେ ସମସ୍ତଙ୍କୁ ଅଭିନନ୍ଦନ ଜଣାଯିବ । ଆଶୀଷକୁ ସେମାନେ ନିଶ୍ଚିତ ଭାବରେ ଷ୍ଟେଜ୍ ଉପରକୁ ଡାକିବେ ।

ସଭା ଆରମ୍ଭ ହେଲା । ଶେଷ ବି ହୋଇଗଲା । ନାଟକରେ ଅଭିନୟ କରିଥିବା ସବୁ ଅଭିନେତା, ଅଭିନେତ୍ରୀଙ୍କୁ ଶୁଭେଚ୍ଛା ଜଣାଗଲା । ନିର୍ଦ୍ଦେଶିକା ଶ୍ୟାମା ମହାପାତ୍ରଙ୍କୁ ଫୁଲ ତୋଡ଼ା ଦିଆଗଲା । ଆଶୀଷର ବିଶେଷ ଅନୁରୋଧରେ ବିନା ପାରିଶ୍ରମିକରେ ଯେଉଁ ସ୍ଥାନୀୟ ସଙ୍ଗୀତ ଶିଳ୍ପୀମାନେ ନେପଥ୍ୟ ସଙ୍ଗୀତ ପରିବେଷଣ କରିଥିଲେ, ସେମାନଙ୍କୁ ମାନପତ୍ର ଦିଆଗଲା । କିନ୍ତୁ ଆଶୀଷର ନାଁ ହିଁ ଉଠିଲାନାହିଁ କୋଉଠି ।

ରୁନି ନାନୀ ତ ସିଧାସଳଖ ପଚାରିଦେଲା, 'କିରେ ଲିପି, କହିଲୁ ଆଶୀଷଙ୍କ ନାଟକ, ଆଶୀଷଙ୍କ ନିର୍ଦ୍ଦେଶନା– କାଇଁ କେହି ତ ତାଙ୍କ ନାଁ ଉଠେଇଲେ ନାହିଁ !'

ଗୁଁ ପୁଁ ହେଇ ଲିପିକା କହିଲା, 'ସେ ନିଶ୍ଚୟ ମନା କରି ଦେଇଥିବେ !' କିନ୍ତୁ ମୁହଁ ପୋଡିଗଲା ତା'ର ।

ରୁନିନାନୀ ଓ ଭିଣେଇ ଚାଲିଯିବାପରେ ସ୍ୱାମୀର ମୁଖାମୁଖି ହେଲା ଲିପିକା । ଆଶ୍ଚର୍ଯ୍ୟ, ମଣିଷଟା ମୁହଁରେ ଖରାପ ଲାଗିବାର ସାମାନ୍ୟତମ ସୂଚନା ନାହିଁ ! ନିଶ୍ଚିନ୍ତ ଭାବରେ ଖଟରେ ଶୋଇ ଟିଭିରେ ନିଉଜ୍ ଦେଖୁଛି ! ଲିପିକା ନିଜେ କିନ୍ତୁ ଅପମାନରେ ଜଳୁଛି ସେତେବେଳେ । ଅନ୍ୟ କୋଉ ଦିନ କଥା ହୋଇଥିଲେ ସେ ଘଟଣାଟିକୁ ଭୁଲିଯିବାର ଚେଷ୍ଟାକରିଥାଆନ୍ତା । କିନ୍ତୁ ସେପର୍ଯ୍ୟନ୍ତ ଭାଇରାଲ୍‌ର ଦୁର୍ବଳତା ଯାଇନି । ଦେହ ଅପେକ୍ଷା ମନ ଆହୁରି ଦୁର୍ବଳ ।

ଆଶୀଷ ହାତରୁ ରିମୋଟ୍ ଟାଣି ନେଇ ଟିଭିଟାକୁ ବନ୍ଦ କରି ଦେଇ ସେ ପାଟି କରିଉଠିଲା, 'ଦେଖିଲ ? ଦେଖିଲ ତ ?'

'କୋଉ କଥା ?' ହାଇ ମାରୁ ମାରୁ ଆଶୀଷ ପଚାରିଲା ।

'ତୁମେ କ'ଣ ? ଏତେ ଅପମାନ ପରେ ବି ପଚାରୁଛ ଏକଥା ? ... ଯେଉଁ ନାଟକ ପାଇଁ ତୁମେ ଦୁର୍ବଳ ଶରୀରରେ ଘଣ୍ଟା ଘଣ୍ଟା ଦୌଡିଲ, ତା'ର ଦିଇଟା ଅଧିକା ଟିକେଟ୍ ତ ଦେଲେନି, ତୁମକୁ ଧନ୍ୟବାଦଟିଏ ବି ଜଣେଇଲେନି କେହି ? ଏତେ ବଡ ଅପମାନ ତୁମକୁ ଛୁଉଁନି କେମିତି ?'

'ଅପମାନ ବୋଲି କାହିଁକି କହୁଛ, ଲିପି ? ସାହାଯ୍ୟ ସେମାନେ ମାଗିଲେ, ମୁଁ ସାହାଯ୍ୟ କଲି । ବାସ୍ । ମୋର ତ କିଛି ସମ୍ମାନ ବା ସ୍ୱୀକୃତି ପାଇବାର ଆଶା ନ ଥିଲା ।'

'ସମ୍ମାନ କଥା ନୁହଁ । ସେମାନେ ତୁମର ଭଲପଣିଆର ଫାଇଦା ଉଠାଇଲେ, ଜାଣି ପାରୁନ କେମିତି ?'

'ସେମାନେ ଯଦି ସେଇମିତି କିଛି କଲେ, ତେବେ କ୍ଷତି ତାଙ୍କର ।' ଆଶୀଷର ସ୍ୱର ସବୁ ଦିନ ଭଳି ଶାନ୍ତ ।

ଏଥର ଆହୁରି ତାତି ଉଠିଲା ଲିପିକା, 'ତୁମେ କେମିତିକା ମଣିଷ !! ଏଁ ? ପୃଥିବୀଟା ଯାକ ସମସ୍ତେ ତୁମକୁ ନଚଉଛନ୍ତି, ଅଥଚ ତୁମେ କିଛି ବୁଝୁନ ।' କ୍ଷୋଭ, ଅପମାନରେ ଆଖିରୁ ଲୁହ ବି ଝରି ଆସିଲାଣି ତା'ର ।

'ବସ, ଲିପି, ବସ ଏଇଠି ମୋ ପାଖରେ ।' ସ୍ତ୍ରୀକୁ ପାଖରେ ବସାଇ ତା' ଆଖି ଲୁହ ପୋଛିଦେଲା ଆଶୀଷ । 'କୁହ ଏଥର, କୋଉ କଥାଟା ତୁମକୁ ଖରାପ ଲାଗୁଛି ।'

'ସବୁ ଖରାପ ଲାଗୁଛି । ସବୁ କିଛି । ସମସ୍ତେ ତୁମର ଫାଇଦା ଉଠାଉଛନ୍ତି, ତୁମେ ଜାଣିପାରୁନ କେମିତି ?' ସେ ଆଉ ଥରେ କହିଲା ।

ଆଶୀଷ ଚୁପ୍ ରହିଲା ।

ଲିପିକା କହିଲା, 'ଏଥର ଶ୍ୟାମା ଭାଉଜ ଏଇମିତି କଲେ । ସେଥର ଭେଙ୍କଟ୍, ଶୋଭା ବି ତାଙ୍କ ପୁଅ ଜନ୍ମ ଦିନରେ ତୁମକୁ ନଚେଇଥିଲେ । ପୁଣି ତୁମେ ଯେଉଁ କେକ୍ ଆଣିଲ, ତା' ଟଙ୍କାଟା ମାଗିବା ସତ୍ତ୍ୱେ ଦେଲେନି । କୁହ, ସତ ନା ମିଛ ?'

ସତ । ମାନିଲା ଆଶୀଷ ।

'ରେଖା, ବିଜୟ ଦେଶମୁଖ ଭଲେଇ ହେଇ ଆମକୁ ଖାଇବା ପାଇଁ ଡକେଇ ନେଲେ, ଅଥଚ ଡାକିବାର ଅସଲ କାରଣ ହେଲା ବଗିଚା ସଜେଇବା । ତୁମେ କ'ଣ

ଜାଣିପାରିନ ?'

ଜାଣିଛି ଆଶୀଷ । ସବୁ ଜାଣିଛି ।

'ଆଉ କାହା କାହା କଥା କହିବି ? ଏଠି ଅଧିକାଂଶ ହିଁ ତ ମତଲବୀ ।'

ଆଶୀଷର ଅଜଣା ନୁହଁ ।

'ଜାଣିଛ ?? ତା' ସତ୍ତ୍ୱେ ତୁମର କ'ଣ ଦରକାର ପଡ଼ିଛି ସମସ୍ତଙ୍କ ପାଇଁ ଏତେ କରିବା ? ପୁଣି ନିଜକୁ କଷ୍ଟଦେଇ...'

ଏଥର ଓଲଟ ପ୍ରଶ୍ନଟିଏ ପଚାରିଲା ଆଶୀଷ । 'ତୁମେ କୁହ, ଲିପି, ଲୋକଙ୍କୁ ସାହାଯ୍ୟ କରିବା କ'ଣ ଖରାପ କଥା । ମୁଁ ମୋର ଯେତେବେଳେ ସାହାଯ୍ୟ କରିପାରିବାର କ୍ଷମତା ଅଛି ।'

'ସାହାଯ୍ୟ କରିବାଟା କାହିଁକି ଖରାପ ହେବ ? ହେଲେ ଅନ୍ୟମାନେ ଯେ ତୁମର ଭଲପଣିଆର ଲାଭ ଉଠାଉଛନ୍ତି, ସେଇଟା ହିଁ ମୋତେ ବାଧୁଛି ।'

'ତୁମକୁ ଗୋଟାଏ ଗପ କହିବି, ଲିପି ।' ଆଶୀଷ ସଜାଡ଼ି ହେଇ ବସିଲା, 'ଥରେ କବୀର ନଈରେ ଗାଧୋଉଥିଲେ । ଗାଧୋଇବା ବେଳେ ଦେଖିଲେ ଯେ ବିଛାଟାଏ ନଈର ସ୍ରୋତରେ ଉବୁଟୁବୁ ହୋଇ ଭାସିଯାଉଛି । ଦୟା ପରବଶ ହୋଇ ଯେମିତି ବିଛାଟିକୁ ସେ ଟେକି ଆଣିଲେ, ସେଇମିତି ବିଛା ତାଙ୍କୁ ଲାଙ୍ଗୁଡ ମାରିଦେଲା । ଯନ୍ତ୍ରଣାରେ ହାତ ଛାଟି ହୋଇଗଲା କବୀରଙ୍କର । ବିଛାଟି ନଈ ସ୍ରୋତରେ ପଡ଼ିଯାଇ ପୁଣି ଉବୁଟୁବୁ ହେଲା । ଆଉ ଥରେ ତାକୁ ଟେକି ଆଣିଲେ କବୀର । ପୁଣି ସେଇ ଏକା ଅବସ୍ଥା । ବିଛା ଲାଙ୍ଗୁଡ ମାରିଦେଲା ଓ କବୀରଙ୍କ ହାତ ଛାଟି ହୋଇଗଲା । ସେଇଠି ନଈରେ ଗାଧୋଉଥିଲା ଅନ୍ୟ ଜଣେ ଲୋକ । ସେ କହିଲା– 'ତୁମେ ତ ଭଲ ବୋକା ଲୋକ ହେ । ବିଛାଟା ବାରମ୍ବାର ତୁମକୁ ଲାଙ୍ଗୁଡ ମାରୁଛି । ଅଥଚ ତୁମେ ତାକୁ ପାଣିରୁ ଉଦ୍ଧାର କରିବାକୁ ଚେଷ୍ଟା କରି ଚାଲିଛ ।' କବୀର କ'ଣ ଉତ୍ତର ଦେଲେ ଜାଣିଛ ? ସେ କହିଲେ, 'ସେ ତା' ଧର୍ମ କରୁଛି । ମୁଁ ମୋ ଧର୍ମ କରୁଛି । ତା' ଧର୍ମ ହୁଏତ ମୋ ପାଇଁ ଠିକ୍ ନୁହଁ, କିନ୍ତୁ ତା' ବୋଲି ମୁଁ କ'ଣ ମୋ' ଧର୍ମ ଛାଡ଼ିଦେବି ?'

କିଛି ନ କହି ଗୁମ୍ ମାରି ବସି ରହିଲା ଲିପିକା ।

ଏଥର ତାକୁ ଟିକିଏ ଆଦର କରିଦେଇ ଆଶୀଷ କହିଲା, 'ଅନ୍ୟମାନଙ୍କୁ ନିଜ ନିଜର ଧର୍ମ କରିବାକୁ ଦିଅ, ଲିପି । ସେମାନଙ୍କର ଚିନ୍ତାଧାରା କି ଭାବନାରେ ଯଦି ଆବିଳତା ଥାଏ, ସେକଥା ସେମାନେ ବୁଝିବେ । ସେଥିପାଇଁ ମୁଁ କାହିଁକି ଖରାପ ହେବି ? ମୋ' ଧର୍ମ କାହିଁକି ଛାଡ଼ିବି ?'

ମୁହଁ ଉଠେଇ ଶୁଖିଲା ସ୍ୱରରେ ଲିପିକା ପଚାରିଲା, 'ତୁମ ଧର୍ମ କ'ଣ ଖାଲି ବାହାର ଲୋକଙ୍କ ପାଇଁ ? ସ୍ତ୍ରୀ, ସଂସାର– ଏସବୁର କିଛି ମାନେ ନାହିଁ ?'

'କିଏ କହିଲା ସେକଥା ? ସଂସାର ଧର୍ମ ଠୁଁ ବଳି କ'ଣ ଆଉ କିଛି ଅଧିକ ଅଛି ? ଯଦି ସଂସାର ଧର୍ମଠୁଁ ବଳି ଆଉକିଛି ଥାଏ, ସେଇଟା ହେଲା ପତ୍ନୀ ଧର୍ମ ।

'କାଇଁ, ପତ୍ନୀ ଧର୍ମ ପାଳନର ଖଡିଚ୍ଛୁଆଁ ବି ଦେଖିଲିନି ଏପର୍ଯ୍ୟନ୍ତ !' ଲିପିକା ସ୍ୱର କିଛିଟା ନରମ ।

ଗାଲରେ ହାତ ଦେଇ ଆଶୀଷ ଭାବିହେଲା ଟିକିଏ । 'ସତ କଥା । ମୋର ଭୁଲ୍ ହେଇଗଲା । ଆଇ ପ୍ରମିସ୍ । ଆଜିଠୁଁ ପ୍ରଥମ ହେଉଛି ପତ୍ନୀ ଧର୍ମ । ତା'ପରେ ଆଉ ଯାହା ।'

'କେମିତି ପାଳନ କରିବ ପତ୍ନୀ ଧର୍ମ ?'

'ଉଁ ... କେମିତି ପାଳନ କରିବି... କେମିତି ପାଳନ କରିବି... ଆଶୀଷ ନିଜକୁ ନିଜେ ପଚାରି ହେଲା, 'ରାଇଟ୍ । ସବୁ ଦିନ ଗୋଡ ମୋଡି ଦେବି ।''

'ମୋ' ଗୋଡ ସହଜେ ବିନ୍ଧେନି ।' ଲିପିକା ଜଣେଇଲା ।

'ବିନ୍ଧେନି ? ତା'ହେଲେ... ତା'ହେଲେ ସବୁ ରବିବାର ସକାଳ ଜଳଖିଆ ମୁଁ କରିବି । ପୁରି ତରକାରି ନହେଲେ ପରଟ୍ଠା ଆଳୁ ଭଜା ।'

'ଠିକ୍ ତ ?' ଲିପିକା ପଚାରିଲା । ତା'ର ସର୍ବଗୁଣ-ସମ୍ପନ୍ନ ପତିଟିର ସବୁ ଗୁଣ ରୋଷେଇ ଘର କବାଟ ପାଖରେ ଶେଷ । ଡାଲି-ଚାଉଳ-ପରିବା ମିଶା ଖେଚେଡି ବ୍ୟତୀତ ସେ ଆଉ କିଛି ରାନ୍ଧି ଜାଣେନି । ସେଇ ମଣିଷ ପୁଣି ପୁରି ତରକାରି ଆଉ ପରଟା ଭଜାର କଥା ଦେଉଛି !

ଏଥର କାନ କୁଣ୍ଡେଇ ହେଲା ଆଶୀଷ । 'ଶିଖେଇ ଦେଲେ କରିଦେବି ।'

ଲିପିକା କିଛି କହିଲା ନାହିଁ । କେବଳ ତା ଓଠ କଣରେ ହସ ଟିକିଏ ଖେଳିଗଲା ।

ଡିଆଁ ମାରି ଖଟରୁ ଓହ୍ଲେଇ ପଡିଲା ଆଶୀଷ । 'କଫି ପିଇବ, ଲିପି ? ମୋ' ହାତ ତିଆରି କଫି ପିଇନ କେବେ ତୁମେ । 'କ୍ୟାଫେ କଫି ଡେ'ରେ ବି ଏମିତି କଫି ମିଳିବନି । ଆଜି କଫିରୁ ପତ୍ନୀ ଧର୍ମ ପାଳନ ଆରମ୍ଭ କରିବି । ... ରବିବାର ସକାଳ ଜଳଖିଆ କିଛି ଦିନ ପାଇଁ ମୁଲତବି ରହୁ । ନା କ'ଣ କହୁଛ ?'

କିଛି ନ କହି ଲିପିକା ଆଶୀଷର ଯିବା ବାଟକୁ ଚାହିଁ ରହିଥିଲା । ନୂଆ ଭାବରେ ସ୍ୱାମୀଟିକୁ ଚିହ୍ନିବାର ଚେଷ୍ଟା କରୁଥିଲା ସେ ।



# ହଜି ଯାଇଥିବା ଲିସା

‘ବାଏ, ହନି ।’

ସ୍ୱପ୍ନରେ ଭାସି ଆସିବା ଭଳି ଶାନ୍ତ ସ୍ୱରଟିଏ ଜନ୍‌କୁ ଛୁଇଁଯାଏ । ଏ କିନ୍ତୁ ସ୍ୱପ୍ନ ନୁହଁ, ତା’ ଜୀବନର ବାସ୍ତବ-ଚତ୍ର । କପାଳରେ ନରମ ଓଠର କୋମଳ ସ୍ପର୍ଶ ।

ଜନ୍ ଧୀରେ ଆଖି ଖୋଲେ । ‘ବାଏ, ଲିସା ।’ ଓଠରେ ହସ ଖେଳାଇ ପତ୍ନୀ ଲିସାକୁ ସେ ବିଦାୟ ଦିଏ । ହାତ ଟିକିଏ ହଲେଇଦେଇ କାନ୍ଧରେ ବଡ କଳାପର୍ସ୍ ଝୁଲେଇ ବାହାରି ଯାଏ ଲିସା । ଅଫିସ୍ ଯିବାକୁ ହେବ । କିଛି ସମୟ ପରେ ଗ୍ୟାରେଜ ଖୋଲା ଶବ୍ଦ । ପରେ ପରେ ଗାଡି ବାହାରି ଯାଏ । ପୁଣି ଯନ୍ତ୍ର-ଚାଳିତ ଗ୍ୟାରେଜ୍‌ଟି ବନ୍ଦ ହୋଇଯାଏ ।

ସମୟ ସେତେବେଳ ସକାଳ ସାଢେ ଛଅଟା ।

ଲିସାର ଏ ନିୟମିତ ରୁଟିନ୍ । ସୋମବାରଠାରୁ ଶୁକ୍ରବାର ପାଞ୍ଚ ଦିନ ଏଇ ରୁଟିନ୍‌ରେ ବ୍ୟତିକ୍ରମ ନାହିଁ । ଆଉ ଏଇ ପାଞ୍ଚ ଦିନ ଏଇମିତି ସୁନ୍ଦର ଭାବରେ ଜନ୍‌ର ସକାଳ ହୁଏ । ଅବଶ୍ୟ ୱିକ୍ ଏଣ୍ଡ୍ କଥା ଅଲଗା । ଶନି ରବି ଦୁଇଟା ଦିନ ପୃଥିବୀଯାକର ଆନନ୍ଦ ଆଣି ଲିସା ଠୁଳ କରିଦିଏ ତା’ ପରିବାର ସାମ୍ନାରେ । ସମସ୍ତଙ୍କ ମନଲାଖି ରୋଷେଇ, ବଗିଚାରୁ ଫୁଲ ତୋଳି ଆଣି ସଜା, ପିଲାଙ୍କୁ ନେଇ ସିନେମା, ବଜାର ବୁଲା– କିଛି ବାଦ୍ ଯାଏ ନାହିଁ ।

ଅବାକ୍ ହୋଇ ଜନ୍ ଭାବେ, କେଉଁଠୁ ଆସେ ଲିସା ଭିତରେ ଏତେ ଉତ୍ସାହ ? ଏତେ ଶକ୍ତି ? ଆଉ ଦୁଇ ବର୍ଷ ପରେ ଯେ ତାକୁ ପଚାଶ ହେବ ! ଜନ୍‌କୁ ବି । ଜନ୍ ଏବେଠାରୁ ଅବସରର ପ୍ରସ୍ତୁତି ଆରମ୍ଭ କରିଦେବାକୁ ବସିଲାଣି । ଅଥଚ ସ୍ତ୍ରୀଟି ‘ଅବସର’ ଶବ୍ଦ ଶୁଣିଲେ ହସି ହସି ଗଡିଯାଏ । ‘ମୋ ଅଭିଧାନରେ ସେ ଶବ୍ଦ ନାହିଁ, ଜନ୍ । ଯେତିକି ଦିନ ବଞ୍ଚିବି ଖାଲି କାମ କରିଯିବି । ଖୁସି ବାଣ୍ଟିଯିବି ।’

ବିଛଣାରୁ ଓହ୍ଲେଇ ଆସିଲା ସେ । ଡେରି ହେଉଛି । ନିଜେ ପ୍ରସ୍ତୁତ ହେବାକୁ ହେବ । ପିଲାମାନେ ଠିକ୍ ଭାବରେ ସ୍କୁଲ୍ ପାଇଁ ପ୍ରସ୍ତୁତ ହେଲେ କି ନାହିଁ, ତା’ ଦେଖିବାକୁ ପଡିବ । ଆଉ ତ ଅଳସୋଇଲେ ଚଳିବ ନାହିଁ ।

ଜନ୍ ଗାଧୋଇ ପଡି ନାଜ ଘରର [illegible] ଆସିଲା । ଖାଇବା ଟେବୁଲ୍ ଉପରେ ହାମୁଡି ପଡି ମନ ଦେଇ କ’ଣ ଲେଖୁ ଚାଲିଛି ବଡ ପୁଅ ରବିନ୍ ।

'କିରେ, କ'ଣ ଚାଲିଛି ସକାଳୁ ସକାଳୁ ? ସ୍କୁଲ୍ ବସ୍ ଟାଇମ୍ ହେଇଯିବ । କାଲି ହୋମ୍‌ୱାର୍କ କରି ନ ଥିଲୁ କି ?'

'କରିଥିଲି । ହେଲେ ସକାଳୁ ବୋଧହୁଏ ମମି ଥରେ ଦେଖି ନେଇଥିଲେ । ଏଇ ଦେଖନ୍ତୁ, ଏଠି ନୋଟ୍‌ଟିଏ ଲେଖି ଯାଇଛନ୍ତି– ଦୁଇ ନମ୍ବର ଅଙ୍କ ଭୁଲ ହେଇଛି । ଆଉ ଥରେ କର ।'

ଜନ୍ ଚକିତ ହେଲା । ସକାଳ ସାଢେ ଛଅଟା ବେଳେ ଅଫିସ୍ ଯିବା ଆଗରୁ ପିଲାଙ୍କ ସାଣ୍ଡୱିଚ୍ ତିଆରି କରି ରଖି ସାରିଛି ଲିସା । ପିଲାର ହୋମୱାର୍କ୍ ଉପରେ ଆଖି ବୁଲେଇ ନେବାକୁ ବି ତାକୁ ସମୟ ହେଇଛି । ଲିସା ଇଜ୍ ଗ୍ରେଟ୍ ! ସୁପର୍ ମମ୍ ଆଉ କାହାକୁ କହନ୍ତି !

ଅଥଚ ଏଇ ଲିସାକୁ ସେ ଯେତେବେଳେ ଏକୋଇଶ ବର୍ଷ ତଳେ ବାହା ହେଲା, ସେତେବେଳେ ସେ ମା' ହେବା କଥା ଭାବି ପାରି ନ ଥିଲା । ଭୟ ପାଉଥିଲା ।

'ଏବେ ପିଲାଟିଏ ଆମ ସଂସାରକୁ ଆଣିବା କଥା କୁହ ନାହିଁ, ଜନ୍ ।' ବାହାଘରର କେଇ ମାସ ପରେ ସେ କହିଥିଲା । 'ପିଲାଦିନରୁ ମୁଁ ମା'କୁ ହରାଇଛି । ବାପା ଆଉଥରେ ବାହା ହୋଇଯିବା ପରେ କେବଳ ହଷ୍ଟେଲରେ ରହି ରହି ମୋ ଦିନ କଟିଛି । ବାତ୍ସଲ୍ୟ ମମତା କ'ଣ, ପରିବାରର ବନ୍ଧନ କ'ଣ– ଏସବୁ ମୁଁ କିଛି ଜାଣିନି । ମୋର ଭୀଷଣ ଭୟ ଯେ ମୁଁ କେବେ ହେଲେ ଭଲ ମା'ଟିଏ ହେଇ ପାରିବିନି ।'

ଅହେତୁକ ଭୟ ! କିନ୍ତୁ କୌଣସି ଚାପ ପକାଇ ନ ଥିଲା ଜନ୍ । ବରଂ କହିଥିଲା, 'ମୁଁ ତ ସନ୍ତାନ ଆଶାରେ ତୁମକୁ ବାହାହେଇନି, ଲିସା । ତୁମେ ଯେବେ ଚାହିଁବ, ସେତେବେଳେ ଯାଇଁ ଆମେ ପିଲାଟିଏ ସଂସାରକୁ ଆଣିବା ।'

ଦୀର୍ଘ ଏଗାର ବର୍ଷ ଧରି ଲିସା ମା' ହେବାକୁ ସାହସ କରି ନ ଥିଲା । ଅବଶ୍ୟ ସେଥିପାଇଁ ସେମାନଙ୍କ ଜୀବନରେ କୌଣସି ଶୂନ୍ୟତା ନ ଥିଲା । ଲିସା ନିଜ ସଂସାରକୁ ପରିପୂର୍ଣ୍ଣ କରି ଦେଇଥିଲା । ଦୁଇ ଜଣଙ୍କର ନୂଆ ନୂଆ ଚାକିରି । ଚାକିରିରେ ନିଜର ସ୍ଥିତି ସୁଦୃଢ଼ କରିବାର ଇଚ୍ଛା ।

ତା'ରି ଭିତରେ ଦିନେ ଦୁହେଁ ନିଜ ନିଜର ସଞ୍ଚିତ ଅର୍ଥ ଏକାଠି କରି ନିଉ ଜର୍ସିରେ ଘରଟିଏ କିଣିଥିଲେ । ନୂଆ ଘର ସଜଡା ଆଉ ବ୍ୟସ୍ତ ଚାକିରି ଭିତରେ ଦୁହିଁଙ୍କର ଜୀବନ ସୁନ୍ଦର ଭାବରେ କଟିଯାଉଥିଲା ।

ଘର କିଣିବାର ଦୁଇଟା ବର୍ଷ ପରେ ବିଭିନ୍ନ କାରଣରୁ ଲିସାର କମ୍ପାନୀ ନିଜ ଅଫିସ୍ ନିଉ ଜର୍ସିରୁ ନ୍ୟୁୟର୍କ୍‌କୁ ଉଠେଇ ନେବାକୁ ଚାହିଁଲା ।

'ନ୍ୟୁୟର୍କ ! ତୁମେ ତା'ହେଲେ ଅନ୍ୟ ଚାକିରି ଖୋଜିବା ଆରମ୍ଭ କରି ଦିଅ ।'

ଜନ୍ କହିଥିଲା ।

'ପାଗଳ ହେଲ ! ଏଇ ଏବେ ମୋର ପ୍ରମୋସନ୍ ହେଇଛି । ଏତେ ବଢ଼ିଆ ଚାକିରି ଛାଡି ଦେବି ? ନ୍ୟୁ ୟର୍କ ଏମିତି କେତେ ଆଉ ବାଟ ଯେ !' ଲିସାର ଆପତ୍ତି ।

ଭାବି ଦେଖିଲେ, ନ୍ୟୁ ୟର୍କ ଖୁବ୍ ଦୂର ନୁହଁ । ରାସ୍ତାରେ ଗାଡି ଭିଡ ନ ଥିଲେ ଦେଢ ଘଣ୍ଟା ସମୟ ଲାଗେ । ଆମେରିକା ଭଳି ବିଶାଳ ଖୋଲା ମେଲା ଦେଶରେ ଦେଢ ଘଣ୍ଟାର ଦୂରତ୍ୱ କି ବା ଦୂରତ୍ୱ ? ତଥାପି କୁଣ୍ଠିତ ଭାବରେ ଜନ୍ ନିଉ ଜର୍ସିର ଘର ବିକ୍ରି କରି ଦେଇ ନ୍ୟୁୟର୍କରେ ଆପାର୍ଟମେଣ୍ଟ କିଣିବାର ପ୍ରସ୍ତାବ ଦେଇଥିଲା ।

'ଅସମ୍ଭବ ! ତୁମେ ଏକଥା ଭାବି ପାରିଲ କେମିତି, ଜନ୍ ? ତା'ଛଡା ଲାଭ କ'ଣ ? ତୁମକୁ ତ ସେଇ ଦେଢ ଘଣ୍ଟା ବାଟ ଗାଡି ଚଲେଇ ଆସିବାକୁ ହେବ । ତାହେଲେ ସବୁଜ ଲନ୍ ଓ ଗୋଲାପ ବଗିଚା ଘେରା ଘର ବିକ୍ରି କରି ଦେଇ ଦମ୍ ବନ୍ଦ ହୋଇ ଯାଉଥିବା ମାନ୍‌ହାଟାନ୍ ଆପାର୍ଟମେଣ୍ଟ କାହିଁକି ?'– ଲିସାର ଯୁକ୍ତି ଅକାଟ୍ୟ ।

ଏ ଅକାଟ୍ୟ ଯୁକ୍ତି ସାମ୍ନାରେ ଜନ୍‌କୁ ହାରମାନିବାକୁ ପଡିଲା । ଲିସା ନ୍ୟୁ ୟର୍କ ଯିବା ଆସିବା କରିବାକୁ ଲାଗିଲା । ସପ୍ତାହକୁ ପାଞ୍ଚ ଦିନ । ସେଥିପାଇଁ ତାକୁ ଘର ଛାଡିବାକୁ ହୁଏ ସାଢେ ଛଅଟାରେ । ହାତରେ ଅଧ ଘଣ୍ଟାଏ ସମୟ ନ ରଖି ଉପାୟ ନାହିଁ । ହାଇୱେ ୯୫ ଆଉ ଲିଙ୍କନ୍ ଟନେଲ୍ ଉପରେ କି ଭରସା ?

ଜନ୍‌କୁ ଖରାପ ଲାଗେ । ଏତେ ବେଶୀ ପରିଶ୍ରମ !

ଲିସା ହସି ଉତ୍ତର ଦିଏ, 'ବିଶ୍ୱାସ କର, ଭିଡରେ ଗାଡି ଚଲେଇ ଆସି ମୁଁ ଯେତେବେଳେ ମୋ ଅଫିସରେ ପାଦ ଦିଏ, ସବୁ କ୍ଳାନ୍ତି, ବିରକ୍ତି ଭୁଲି ହୋଇଯାଏ ।'

ଏକଥା ସତ । ବିରାଟ ୧୧୦ ମହଲାର ୱାର୍ଲ୍ଡ ଟ୍ରେଡ୍ ସେଣ୍ଟର୍ । ତା'ର ୭୧ ମହଲାରେ ଲିସାର ଅଫିସ୍ । ଝର୍କା ଦେଇ ଦେଖାଯାଏ ହଡ୍‌ସନ୍ ନଦୀ ଆଉ ଷ୍ଟାଚ୍ୟୁ ଅଫ୍ ଲିବର୍ଟି । ଆଖି ଫେରାଇ ହୁଏ ନାହିଁ । ତଥାପି ଜନ୍ ନିଶ୍ଚିନ୍ତ ହୋଇପାରେ ନାହିଁ । ସେଥିପାଇଁ ଲିସା ଅଫିସରେ ପହଞ୍ଚିବା ମାତ୍ରକେ ସ୍ୱାମୀକୁ ଫୋନ୍ କରି ଦିଏ । 'ହାଏ ହନି । ଭଲରେ ପହଞ୍ଚିଗଲି ।'

ତେବେ ଯାଇଁ ସ୍ୱସ୍ତିର ନିଶ୍ୱାସ ନିଏ ଜନ୍ ।

ବାହାଘରର ଦଶ ବର୍ଷ କଟିଗଲା । ହଠାତ୍ ଦିନେ ଲିସା ସନ୍ତାନଟିଏ ସଂସାରକୁ ଆଣିବା କଥା ଉଠେଇଲା । ସେଦିନ ଜନ୍‌ର କି ଆନନ୍ଦ ! ବର୍ଷେ ପରେ କୋଳକୁ ଆସିଲା ରବିନ୍ । ତା'ର ବର୍ଷେ ପରେ ବବି । ଦୁଇ ପୁଅକୁ କୋଳରେ ଧରି ଲିସା ଯେମିତି ପରିପୂର୍ଣ୍ଣା ହୋଇଗଲା । ଜନ୍ ଭାବିଥିଲା ଯେ ଏଥର ବୋଧହୁଏ ଲିସାର ଚାକିରି କରିବାରେ ଅସୁବିଧା ହେବ । କିନ୍ତୁ ଅନନ୍ୟା ଲିସା ନିଜ ଜୀବନକୁ ଏଭଳି

ସୁନ୍ଦର କରି ସଜାଡି ନେଲା ଯେ ନା ତା' ପରିବାର ଅବହେଳିତ ହେଲା, ନା ତା' ଚାକିରିରେ କୌଣସି ଅସୁବିଧା ସୃଷ୍ଟି ହେଲା ।

ଆଗ ଭଳି ସାଢେ ଛଅଟାରେ ଘର ଛାଡୁଥିଲା ସେ । କିନ୍ତୁ ଯିବା ଆଗରୁ ପିଲାଙ୍କର ଲୁଗା ଇସ୍ତ୍ରୀ, ହୋମୱାର୍କ ତଦାରଖ, ସାଣ୍ଡୱିଚ୍ ତିଆରି– ସବୁ କରି ଯାଉଥିଲା ସେ । ଅବଶ୍ୟ ସ୍କୁଲ୍ ବସ୍ ପର୍ଯ୍ୟନ୍ତ ପହଞ୍ଚେଇ ଦେବା ପୁଣି ସ୍କୁଲ୍‌ର ଡେ' କେଆର୍‌ରୁ ପାଞ୍ଚଟା ବେଳେ ପିଲାଙ୍କୁ ଆଣିବା ଦାୟିତ୍ୱ ଜନ୍‌ର ।

ଜନ୍ ମଣିଷ ହିସାବରେ ଭଲ, ହେଲେ ଉଚ୍ଚାକାଂକ୍ଷୀ ନୁହଁ, ପରିଶ୍ରମୀ ମଧ୍ୟ ନୁହଁ । ପାଠ ନ ପଢିଲେ ଭଲ ଚାକିରି ମିଳି ନ ଥାଆନ୍ତା, ସେଥିପାଇଁ ପଢିଥିଲା । ଭଲ ଚାକିରି ନ କଲେ ଜୀବନର ଛୋଟ ବଡ ଇଚ୍ଛା କେବଳ ଇଚ୍ଛାରେ ରହି ଯାଇ ଥାଆନ୍ତା, ସେଥିପାଇଁ ଚେଷ୍ଟା କରି ଭଲ ଚାକିରିଟିଏ ବି ଯୋଗାଡ କରିଥିଲା । ଆଉ ଟିକିଏ ପରିଶ୍ରମ କରିଥିଲେ ସେ କମ୍ପାନୀର ମ୍ୟାନେଜର, ଜେନେରାଲ୍ ମ୍ୟାନେଜର୍ ବା ଭାଇସ୍ ପ୍ରେସିଡେଣ୍ଟ ହୋଇ ପାରି ଥାଆନ୍ତା, କିନ୍ତୁ ତା' ଥିଲା ଜନ୍‌ର ଆଗ୍ରହ ବାହାରେ ।

ଅଥଚ ଠିକ୍ ତା'ର ବିପରୀତ ଲିସା । ନିଜ ଉପରର ସିଡିରେ ସବୁବେଳେ ଆଖି ତା'ର । ଥରେ ଲକ୍ଷ୍ୟ ସ୍ଥିର ହୋଇଗଲେ ସେ ନିଜକୁ ନିଃଶେଷ କରି କାମ କରିଯାଉଥିଲା । ବୃଥା ଯାଉ ନ ଥିଲା ତା' ପରିଶ୍ରମ । ଲିସାର ନିୟମିତ ଭାବରେ ପଦୋନ୍ନତି ହେଉଥିଲା । ତା' କମ୍ପାନୀରେ ସେ ଆସିଷ୍ଟାଣ୍ଟ ଜେନେରାଲ୍ ମ୍ୟାନେଜର୍ । କମ୍ କଥା ? ଜନ୍‌ର ସ୍ତ୍ରୀକୁ ନେଇ ବହୁତ ଗର୍ବ ।

ଫୋନ୍ ବାଜିଉଠିଲା । ଖାଲି କଫି କପ୍‌କୁ ଟେବୁଲ୍‌ରେ ରଖି ଜନ୍ ଫୋନ୍ ଉଠାଇଲା ।

'ହାଏ ହନି, ପହଞ୍ଚି ଗଲି ।'

'ଗୁଡ୍ ।' ଜନ୍ ହାତ ଘଡି ଉପରେ ଆଖି ବୁଲେଇଲା । ଆଠଟା ପାଞ୍ଚ ।

'ପିଲାଏ ଠିକ୍ ଭାବରେ ବ୍ରେକ୍‌ଫାଷ୍ଟ ଖାଇ ଯାଇଛନ୍ତି ତ ?' ମା'ଟିଏର ଉତ୍କଣ୍ଠା ।

'ଅଫ୍ କୋର୍ସ ।'

'ଆଉ ତୁମେ ?'

'ପ୍ରଥମ କପ୍ କଫି ଶେଷ କରୁଛି । ଆଉ କପେ କଫି ପିଇ ପନ୍ଦର କୋଡିଏ ମିନିଟ୍‌ରେ ବାହାରିବି । ନଅଟାରେ ରିଭ୍ୟୁ ମିଟିଙ୍ଗ୍ ଅଛି ବସ୍‌ଙ୍କ ସାଙ୍ଗରେ ।'

'ଅଲ୍ ଦ' ବେଷ୍ଟ । ... ବାଏ ।'

ଫୋନ୍ ରଖି ଦେଇ କଫି ପଟ୍‌ରୁ ଆଉ କପେ [illegible] ସାରି ଦେଲା ଜନ୍ । ସେଇଠି ଠିଆ ହେଇ ୱାଲ୍ ଷ୍ଟ୍ରିଟ୍ ଜର୍ଣ୍ଣାଲ ଉପରେ ଆଖି ବୁଲେଇ ନେଇ ସାଢେ ଆଠଟାରେ ଗ୍ୟାରେଜ୍‌ରୁ ଗାଡି କାଢିଲା । ଘଣ୍ଟା ଅଧେ ଯିବାକୁ କୋଡିଏ

ମିନିଟ୍ ଲାଗେ । ଠିକ୍ ଆଠଟା ପଚାଶରେ ସେ ପହଞ୍ଚିଗଲା ଅଫିସ୍ ।

ଏମିତିରେ ତା' ଅଫିସ୍ ଆରମ୍ଭ ସମୟ ନଅଟା । କିନ୍ତୁ ତା'ର କୋଡିଏ ପଚଶ ମିନିଟ୍ ଆଗରୁ ସମସ୍ତେ ଚାଲି ଆସନ୍ତି । ଛୋଟ ପନ୍ଦର ଜଣିଆ ଅଫିସ୍ । ନିଜ ନିଜ ଭିତରେ ସମ୍ପର୍କ ସେଥିପାଇଁ ବେଶ ସୁଦୃଢ । ସବୁଦିନ ଅଫିସରେ ପାଦ ଦେବା କ୍ଷଣି ଜନ୍‌ର କାନରେ ବାଜେ କମ୍ପ୍ୟୁଟର୍ କି ବୋର୍ଡ୍‌ର ଖୁଟ୍ ଖାଟ୍ ଶବ୍ଦ । ତାଜା କଫିର ମନ ମତାଣିଆ ସୁଗନ୍ଧ ତା' ଚାରିପଟେ ଖେଳାଇ ହେଇଯାଏ ।

ଆଜି କିନ୍ତୁ ସବୁ କେମିତି ନିସ୍ତବ୍ଧ । କଫିର ବାସ୍ନା ଅଛି, ହେଲେ କଫି ପିଉଥିବା ମଣିଷମାନଙ୍କର ହସ, କଥା କାନରେ ବାଜୁ ନାହିଁ ।

ଭିତର ଲବିରେ ଟେଲିଭିଜନ୍‌ଟା କିଏ ଚଳେଇ ଦେଇଛ ବୋଧହୁଏ । ହଠାତ୍ ଯାନ୍ତ୍ରିକ ସ୍ୱରଟିଏ କହି ଉଠିଲା, 'ଓ ମାଇଁ ଗଡ୍ ! ଓ ମାଇଁ ଗଡ୍ !'

ତା'ପରେ ଚହଳା ସ୍ୱରମାନଙ୍କର ସମ୍ମିଳିତ ଆର୍ତ୍ତନାଦ– 'ଓ ନୋ !', 'କ୍ୟାନ୍ ୟୁ ବିଲିଭ୍ ଦିସ୍ ?'

କ'ଣ ହେଇଛି ? କ'ଣ ଏମିତି ଅଘଟଣ ଘଟିଗଲା ଯେ ସମସ୍ତେ ସବୁ କାମଦାମ ଛାଡି ଦେଇ ଟି.ଭି ସାମ୍ନାରେ ଭିଡ଼ ଜମେଇଛନ୍ତି ? ଜନ୍ ଭିତର ଲବିକୁ ଚାଲିଗଲା । ଏବଂ ପାଦ ଦେଇ ସ୍ତବ୍ଧ ହୋଇଗଲା ଯେମିତି । ସାମ୍ନାରେ ଟେଲିଭିଜନ୍‌ର ପର୍ଦ୍ଦା । ପର୍ଦ୍ଦାରେ ଅତି ଚହଳା ୱାର୍ଲ୍ଡ୍ ଟ୍ରେଡ୍ ସେଣ୍ଟର୍ । କିନ୍ତୁ ନିଆଁ ? ଘନ କଳା ଧୂଆଁ ? ଏସବୁ କ'ଣ ? ସିନେମା ?

ନା, ସିନେମା ନୁହଁ । ଟେଲିଭିଜନ୍‌ର ନିଉଜ୍ ଚ୍ୟାନେଲ୍ ଏଇଟା । କିନ୍ତୁ ୱାର୍ଲ୍ଡ୍ ଟ୍ରେଡ୍ ସେଣ୍ଟର୍ ?

ଜନ୍‌କୁ ଚମକାଇ ତା' ମୋବାଇଲ୍ ଫୋନ୍‌ଟା ବାଜି ଉଠିଲା ।

'ଜନ୍ ହନି. . .' ଲିସାର ସ୍ୱର ଶାନ୍ତ । କିନ୍ତୁ ଶାନ୍ତ ସ୍ୱର ତଳର ଅଶାନ୍ତ ଭାବକୁ ଠିକ୍ ପଢି ନେଇ ପାରୁଛି ସେ ।

'କ'ଣ ହେଇଛି, ଲିସା ? ଟିଭିରେ ଏସବୁ କ'ଣ ଦେଖାଉଛି ? ବିବ୍ରତ ଭାବରେ ସେ ପଚାରି ଉଠିଲା ।

'ଏ ଟେରିବଲ୍ ଥିଙ୍ଗ୍ ହ୍ୟାଜ୍ ହ୍ୟାପେନ୍‌ଡ୍, ଜନ୍ । ନର୍ଥ ଟାୱାର୍‌ରେ ଉଡାଜାହାଜ ଧକ୍କା ହେଇଛି ...'

କେମିତି ଧକ୍କା ଦେବ ? ସହର ଭିତରକୁ ତ ବ୍ୟବସାୟିକ ଉଡାଜାହାଜ ଯିବାର ନିୟମ ନାହିଁ ।

ଲିସା କଥା ଶେଷ ହୋଇ ନ ଥିଲା । '...ଆମ ସାଉଥ୍ ଟାୱାର୍‌ରେ ଅବଶ୍ୟ

ଘୋଷଣା ହେଉଛି ଯେ ଆମର ଭୟ ପାଇବାର କିଛି ନାହିଁ । ତଥାପି ମୁଁ ସମସ୍ତଙ୍କୁ ୱାର୍ଲ୍ଡ ଟ୍ରେଡ୍ ସେଣ୍ଟରରୁ ବାହାରକୁ ଚାଲି ଯିବାକୁ କହି ଦେଇଛି ।' ଲିସାର ସବୁ ଦାୟିତ୍ୱ । ତା' ବସ୍ – କମ୍ପାନୀର ଜେନେରାଲ୍ ମ୍ୟାନେଜର– ଏବେ ଛୁଟିରେ ।

'ଠିକ୍ କରିଛ । ତୁମେ ଶୀଘ୍ର ତଳକୁ ଚାଲି ଆସ, ଲିସା ।'

ମୁହୂର୍ତ୍ତକ ପାଇଁ ଲିସା ଚୁପ୍ ହେଇଗଲା ।

'ଲିସା ... ଲିସା ହନି ...' ଜନ୍‌ର ସ୍ୱର ଆତଙ୍କିତ ।

'ଆଇ ଆମ୍ ସରି, ଡାର୍ଲିଙ୍ଗ୍ ।' ଲିସାର ସ୍ୱର ସରୁ ହୋଇ ଯାଇଛି । 'ମୁଁ ବାହାରି ଯାଇ ପାରିବିନି । ମୁଁ ଉପର ମହଲାକୁ ଯାଉଛି ।'

'ଉପରକୁ ! କ'ଣ କହୁଛ, ଲିସା ?'

'ମୋତେ ଯିବାକୁ ପଡିବ, ଜନ୍ । ଉପର ମହଲାର ସାଉଣ୍ଡ ପ୍ରୁଫ୍ ରୁମ୍‌ରେ ବସି ଆମ ଅଫିସ୍‌ର ଦଶଜଣ ଷ୍ଟାଫ୍ ଇଉରୋପ୍‌ର ଜଣେ କଷ୍ଟମର୍ ସାଙ୍ଗରେ ଭିଡିଓ କନ୍‌ଫରେନ୍‌ସ୍ କରୁଛନ୍ତି । ସେମାନେ ବୋଧହୁଏ ଜାଣନ୍ତି ନାହିଁ ଯେ ଏଭଳି ଅଘଟଣଟିଏ ଘଟିଛି । ମୁଁ ଆଗ ସେମାନଙ୍କୁ ତଳକୁ ପଠେଇବାର ବ୍ୟବସ୍ଥା କରେ । ତା'ପରେ ମୋ' କଥା ।'

'ଲିସା, ହନି, ତୁମେ ବାହାରି ଆସ ସେଠୁ । ପ୍ଲିଜ୍. . .। ପ୍ଲିଜ୍ ଡାର୍ଲିଙ୍ଗ୍ !'

'ମୁଁ ପାରିବିନି, ଜନ୍ । ... ଆଇ ଜଷ୍ଟ କ୍ୟାନ୍‌ନଟ୍ ଡୁ ଦ୍ୟାଟ୍. . . ଯାହା ବି ହେଇଯାଉ, ତୁମେ ମନେ ରଖ ଯେ ମୁଁ ତୁମକୁ ବହୁତ ଭଲ ପାଏ । ରବିନ୍ ଓ ବବିଙ୍କୁ ମୋ' ପ୍ରାଣଠାରୁ ଅଧିକ ଭଲ ପାଏ । ତୁମେମାନେ ମୋର ...' ଲାଇନ୍ କଟିଗଲା ।

ଜନ୍ ଯେମିତି ଅଥର୍ବ ହୋଇଯାଇଛି । ଅଦେଖା ଆଖିରେ ସେ ଚାହିଁ ରହିଛି ହାତର ମୋବାଇଲ୍ ଫୋନ୍‌କୁ । ଆଖି ଟେକି ଟେଲିଭିଜନ୍‌ର ପର୍ଦ୍ଦା ଆଡେ ଚାହିଁବାର ସାହସ ନାହିଁ । ମୁଣ୍ଡ ଭିତରେ କିଏ ଯେମିତି ହାତୁଡି ପିଟୁଛି । ଛାତି ଉପରେ ଲଦିଦେଇଛି ଲୁହା ପଥରର ପାହାଡଟିଏ । ଅଘଟଣର ଆଶଙ୍କାରେ ମ୍ରିୟମାଣ ହୋଇ ପଡୁଛି ଜନ୍ ।

'ଓ ଗଡ୍ , ନଟ୍ ଏଗେନ୍ !' ଆର୍ତ୍ତନାଦ କରି ଉଠିଲେ ସମସ୍ତେ ।

ଜନ୍ ଆଖି ଉପରକୁ ଉଠେଇଲା ।

ଏ କ'ଣ ? ଏ କ'ଣ ? ତା' ଆଶଙ୍କା ଯେ ସତ ହୋଇଯାଇଛି ଏହା ଭିତରେ ! ୱାର୍ଲ୍ଡ ଟ୍ରେଡ୍ ସେଣ୍ଟରର ସାଉଥ୍‌ଟାୱାର୍ ଯେ ହୁଡ୍‌ହୁଡ୍ ହୋଇ ଜଳିବାକୁ ଆରମ୍ଭ କରିଛି !

ଟେଲିଭିଜନ୍ କମେଣ୍ଟେଟର୍ କହୁଛନ୍ତି, 'ଦ୍ୱିତୀୟ ଉଡାଜାହାଜଟିଏ ୱାର୍ଲ୍ଡ ଟ୍ରେଡ୍ ସେଣ୍ଟର୍‌ର ଅନ୍ୟ ଟାୱାର୍‌ରେ ପିଟି ହୋଇଯାଇଛି । ସ୍ପଷ୍ଟ ଭାବରେ ଜଣାପଡୁଛି ଯେ ଏହା ଆତଙ୍କବାଦୀଙ୍କ ସୁପରିକଳ୍ପିତ ଯୋଜନା ।. . . ମୁଁ ନିଜ ଆଖିରେ ଯାହା ଦେଖୁଛି,

ତା' ବିଶ୍ୱାସ କରିପାରୁନାହିଁ । ମୋ ଆଖି ସାମ୍ନାରେ ଜଳି ଯାଉଛି ନ୍ୟୁୟର୍କର ୱାର୍ଲ୍ଡ୍ ଟ୍ରେଡ୍ ସେଣ୍ଟର୍ । ଆମେରିକାର ଗର୍ବ ୱାର୍ଲ୍ଡ୍ ଟ୍ରେଡ୍ ସେଣ୍ଟର୍ । ଯାହା ମନେ ହେଉଛି ସାଉଥ୍ ଟାଓ୍ୱାର୍‌ର ୭୮ ମହଲାରେ ଧକ୍କା ଦେଇଛି ଉଡାଜାହାଜଟି. . .'

୭୮ ମହଲା !

୭୮ ମହଲାରୁ ୭୨ ମହଲା ବେଶ୍ ବାଟ କି ?

'...ପ୍ଲେନ୍‌ରେ ହଜାର ହଜାର ଗ୍ୟାଲନ୍‌ର ଜାଳେଣି । ସାଉଥ୍ ଟାଓ୍ୱାର୍‌ରେ ବିସ୍ଫୋରଣ ଘଟିଛି ...'

ଲିସା ଯଦିବା ବାସ୍ତରୀ ମହଲାର ଅଫିସ୍‌କୁ ଯାଇଥାଏ, ତଥାପି ସେ ନିଶ୍ଚୟ ବାହାରି ଆସିପାରିଥିବ । ତା' ଲିସାର କିଛି ହେବ ନାହିଁ । କିଛି ନାହିଁ । ଜନ୍ ନିଜକୁ ନିଜେ କହି ଚାଲିଥିଲା ।

କେହି ଜଣେ ଜନ୍‌କୁ ଲବିର ଗୋଟାଏ ସୋଫାରେ ବସେଇ ଦେଲା । ଆଉ ଜଣେ ତା' ହାତରେ ଧରେଇ ଦେଲା ପାଣି ଗ୍ଲାସେ । ପୂରା ଦମ୍‌ରେ ଅଫିସ୍ ଭିତରେ ଏଆର୍‌କଣ୍ଡିସନର୍ ଚାଲିଛି, କିନ୍ତୁ ଗମ୍ ଗମ୍ ହୋଇ ଝାଳ ବୋହି ଚାଲିଛି ଜନ୍ ଦେହରୁ ।

'ଜିଜସ୍, ଏ କ'ଣ ହେଇଗଲା !' ସମସ୍ତଙ୍କର ପୁଣି ମିଳିତ ଆର୍ତ୍ତନାଦ ।

ଧୂଳି ଓ ଧୂଆଁର ପୃଥିବୀଟିଏ ସୃଷ୍ଟି କରି ଆଖି ସାମ୍ନାରେ ଭୁଷୁଡି ପଡୁଛି ୱାର୍ଲ୍ଡ୍ ଟ୍ରେଡ୍ ସେଣ୍ଟର୍‌ର ସାଉଥ୍ ଟାଓ୍ୱାର୍ । ଯେଉଁ ଟାଓ୍ୱାର୍‌ର ଏକସ୍ତରୀ ଓ ବାସ୍ତରୀ ମହଲାରେ ରହିଛି ଲିସାର ଅଫିସ୍ ।

'ମୋତେ ଯିବାକୁ ହେବ । ମୋତେ ନ୍ୟୁୟର୍କ ଯିବାକୁ ହେବ ।' ଜନ୍ ବିଳିବିଳେଇ ଉଠିଲା ।

ଜନ୍‌ର ବସ୍ ଫୋନ୍‌ରେ କାହା ସାଙ୍ଗରେ କଥା କହୁଥିଲେ । ଫୋନ୍ ରଖି ଦେଇ ସେ କହିଲେ, 'ଲାଭ ନାହିଁ, ଜନ୍, ନ୍ୟୁୟର୍କକୁ ଯିବାର ସବୁ ରାସ୍ତା ବନ୍ଦ ହୋଇଯାଇଛି । ଟ୍ରେନ୍, ଟନେଲ୍, ବ୍ରିଜ୍ – ସବୁ କିଛି । ତୁମେ ବରଂ ଘରକୁ ଚାଲି ଯାଅ । ଲିସା ଯଦି କ'ଣ କେମିତି କରି ଘରକୁ ଚାଲି ଆସନ୍ତି ?'

ସତ କଥା । ଜନ୍ ଘରକୁ ଫେରିଆସିଲା । ସାମ୍ନା ଟେବୁଲ୍‌ରେ ଫୋନ୍ ଓ ମୋବାଇଲ୍ ଫୋନ୍ ରଖି ସେ ଅପେକ୍ଷା କରି ରହିଲା । ୱାର୍ଲ୍ଡ୍ ଟ୍ରେଡ୍ ସେଣ୍ଟର୍‌ର ଗୋଳମାଳରେ ଲିସାର ଫୋନ୍ ନିଶ୍ଚୟ ହଜି ଯାଇଛି । କୋଉଠି ଖସି ପଡିଛି । ହେଲେ ବାହାରୁ କୋଉଠୁ ନିଶ୍ଚୟ ଫୋନ୍ କରିବ ସେ । ଫୋନ୍ ନ କରି ରହିପାରିବ ନାହିଁ । କହିବ, 'ହାଏ ହନି, ଆଇ ଆମ୍ ସେଫ୍ । ମୁଁ ଠିକ୍ ଅଛି । ଚିନ୍ତା କରିବନି ।'

ଫୋନ୍ ଆସୁ ନ ଥିଲା ।

ସ୍କୁଲ୍‌ର କିଏ ଜଣେ ଆସି ପିଲାଙ୍କୁ ଘରେ ପହଞ୍ଚାଇଦେଲା । ଜନ୍‌ର ପଡୋଶିନୀ ରବିନ୍ ଓ ବବିଙ୍କୁ ନିଜ ଘରକୁ ନେଇଗଲେ । ସେମାନଙ୍କ ଖବର ବୁଝିବା ଭଳି ଜନ୍‌ର ମାନସିକ ଅବସ୍ଥା କୋଉଠି ଥିଲା ? ମନ କହୁଥିଲା ଗୋଟିଏ କଥା କେବଳ– ଫୋନ୍ କର, ଲିସା । ଫୋନ୍ କର ।

ଫୋନ୍ ଆସିଥିଲା ବେଶ୍ ରାତିରେ । ଲିସାର ନୁହଁ । ଲିସା ଅଫିସ୍‌ରେ କାମ କରୁଥିବା ହେଲେନ୍‌ର । ଯିଏ କି ସକାଳବେଳା ବାସ୍ତରି ମହଲାର ସାଉଣ୍ଡ ପ୍ରୁଫ୍ ରୁମ୍‌ରେ ବସି ଭିଡିଓ କନ୍‌ଫରେନ୍‌ସ୍ କରୁଥିଲା ।

'ମୋ ଲିସାକୁ ଦେଖିଛ, ହେଲେନ୍ ?' ଜନ୍ ଛାତିଏ ଆଶା ନେଇ ପଚାରିଥିଲା ।

ହେଲେନ୍ କିଛି ସମୟ ନିରବ ରହି କହିଥିଲା, 'ସିଡିରେ ଓହ୍ଲେଇ ଆସିବା ବେଳେ ମୁଁ ଥରଟିଏ ପଛକୁ ଚାହିଁ ଦେଇଥିଲି । ଅଫିସ୍ ରୁମ୍‌ର ଅଟୋମ୍ୟାଟିକ୍ କବାଟକୁ ପିଠିରେ ଠେଲି ଧରି ଲିସା ଜଣ ଜଣ କରି ସମସ୍ତଙ୍କୁ ବାହାରକୁ ପଠାଉଥିଲେ । ... ଲିସା ନ ଥିଲେ ଆମେ କେହି ଆଉ ବଞ୍ଚି ନ ଥାଆନ୍ତୁ, ଜନ୍ । ମୁଁ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରୁଛି, ସେ ଶୀଘ୍ର ଘରକୁ ଫେରି ଆସନ୍ତୁ ।'

ସେଦିନ ଥିଲା ମଙ୍ଗଳବାର । ସେପ୍ଟେମ୍ବର ଏଗାର ତାରିଖ, ଦୁଇ ହଜାର ଏକ । ତା'ପରେ ଦଶ ଦିନ କଟିଗଲାଣି । ଈଶ୍ୱର ହେଲେନ୍‌ର ପ୍ରାର୍ଥନା ଶୁଣି ନାହାନ୍ତି । ଜନ୍ ଆଉ ପିଲାଙ୍କ ଆଖି ଲୁହର କୌଣସି ପ୍ରଭାବ ପଡିନି ତାଙ୍କ ଉପରେ । ଘରକୁ ଆଉ ଫେରିନି ଲିସା ।

ନ୍ୟୁୟର୍କକୁ ରାସ୍ତା ଖୋଲିବା ପରେ ଜନ୍ ସେଠିକି ଯାଇଥିଲା । ସବୁ ରାସ୍ତା, ସବୁ ହସ୍‌ପିଟାଲ୍, ସମସ୍ତ ଆଶ୍ରୟସ୍ଥଳୀ ସେ ଖୋଜିଥିଲା ଆଶା ନେଇ । କୋଉଠି ବି ତାକୁ ଲିସା ମିଳି ନ ଥିଲା । ଶେଷରେ ଛାତିକୁ ପଥର କରି ସେ ଯାଇଥିଲା ଧ୍ୱଂସସ୍ତୁପ ଭିତରୁ ଉଦ୍ଧାର କରାଯାଇଥିବା ମୃତ ଦେହମାନଙ୍କ ଉପରେ ଆଖି ବୁଲେଇ ଆଣିବାକୁ ।

ନା, ତା' ଭିତରେ ବି ଲିସା ନ ଥିଲା ।

ଟେଲିଭିଜନ୍‌ର ଜଣେ ରିପୋର୍ଟର୍ ଛଳ ଛଳ ଆଖିରେ ଜନ୍ ହାତରେ ଥିବା ଲିସାର ଫୋଟୋକୁ କ୍ୟାମେରାରେ ତୋଳି ନେଇଥିଲେ । ଟେଲିଭିଜନ୍ ପର୍ଦ୍ଦାରେ ସେ ବାରମ୍ବାର ଦେଖାଇ ଥିଲେ ସେଇ ଫୋଟୋକୁ । ଯଦି କେହି ହଜିଯାଇଥିବା ଲିସାର କୌଣସି ସନ୍ଧାନ ଆଣି ଦେଇପାରନ୍ତି ।

ହେଲେ ଏ ପର୍ଯ୍ୟନ୍ତ କୌଣସି ଖବର ମିଳି ନାହିଁ ।

ଆଉ ଏବେ ବି ସବୁଜ ଲନ୍ ଓ ଗୋଲାପ ବଗିଚା ଘେରା ଘର ସାମ୍ନାରେ ମହମବତୀ ଜଳାଇ ଦୁଇ ପୁଅଙ୍କୁ ଜାକି ଧରି ଜନ୍ ଲିସା ପାଇଁ ଅପେକ୍ଷା କରି ବସିରହିଛି ।

# ତାଲିମ

କାଳୀପୂଜା ଆଗ ଶନିବାର ବିଦିଶା ଚାଲିଗଲା । କେବଳ ସତ୍ୟ ଜୀବନରୁ ନୁହଁ, ଚାକିରି, ସହର, ଦେଶ ଛାଡି ସେ ଚାଲିଗଲା ସୁଦୂର ଅଷ୍ଟ୍ରେଲିଆକୁ । ମାନସିକ ଅବସାଦର ଘେରରୁ ବଞ୍ଚାଇବା ପାଇଁ ବଜ୍ରାହତ ସତ୍ୟ ସେତେବେଳେ ନିଜକୁ ବହୁତଥର ଆଶ୍ୱାସନା ଦେଇଥିଲା– ଘଟଣାଟି କ୍ଷଣିକ ରାଗର ପରିଣତି ନୁହଁ । ସେଇଟି ବିଦିଶାର ସୁପରିକଳ୍ପିତ, ସୁଚିନ୍ତିତ ଯୋଜନା । ସେଦିନର କ୍ରୋଧ, କଟୂକଥା – ସବୁ ନାଟକ । କ୍ଷଣିକ ରାଗରେ ଦୁଇ ବର୍ଷର ସମ୍ପର୍କ ଭାଙ୍ଗି ଦେଇହୁଏ, କିନ୍ତୁ ପାସ୍‌ପୋର୍ଟ୍, ଭିସା ବନ୍ଦୋବସ୍ତ କରି ହୁଏ ନାହିଁ । ସେସବୁ ସମୟସାପେକ୍ଷ ବିଷୟ । ଯୋଗାଡ କରି ଆଗକୁ ପାଦ ବଢାଇବାକୁ ହେଲେ ବେଶ୍ କିଛି ମାସ ଲାଗିଯାଏ । ସମ୍ପର୍କ କାଟିଦେବା ମାତ୍ରକେ ଉଡ଼ାଜାହାଜରେ ବସି ଦକ୍ଷିଣ ଗୋଲାର୍ଦ୍ଧର ଦେଶଟିଏକୁ ଚାଲି ଯାଇହୁଏ ନାହିଁ । ସିନେମାରେ ହେଲେ ହେଉଥିବ, କିନ୍ତୁ ବାସ୍ତବ ଜୀବନରେ ସେମିତି ହୁଏ ନାହିଁ ।

ତଥାପି ବାଧୁଥିଲା ସତ୍ୟକୁ । ବିଦିଶା କହି ଯାଇଥିବା କଥାଗୁଡିକ କଣ୍ଟା ଭଳି ଛାତି ଭିତରେ ଗଳିଯାଇଥିଲା ଯେମିତି ।

ସେଦିନ ଦିପହରେ ସତ୍ୟ ଘରକୁ ଚାଲି ଆସିଥିଲା ବିଦିଶା । କୌଣସି ଭଣିତା ନ କରି କହିଥିଲା, 'ମୁଁ ରେଜିଗ୍‌ନେସନ୍ ଦେଇ ଦେଇଛି ।'

ଇସ୍ତଫା ! କାହିଁକି ?' ଅବାକ୍ ଭାବରେ ସତ୍ୟ ପଚାରିଥିଲା ।

'ବାସ୍ – ଦେଇଦେଲି । କେଇଟା ଟଙ୍କା ପାଇଁ ଏଭଳି ପରିଶ୍ରମ କରିବାର କିଛି ମାନେ ହୁଏ ?'

'ହେଲେ ଏବେ କରିବ କ'ଣ ?' ବିଦିଶାର ଦରମା ଟଙ୍କା ଉପରେ ଯେ ସାନ ଦୁଇ ଭାଇ, ବିଧବା ମା' ନିର୍ଭରଶୀଳ, ସେକଥା ସତ୍ୟର ଅଜଣା ନ ଥିଲା ।

'ପାଇଛି ଆଉ ଗୋଟାଏ ଚାକିରି ।' ବେପରୱା ସ୍ୱରରେ ବିଦିଶା ଉତ୍ତର ଦେଇଥିଲା ।

'ଓ ଆଚ୍ଛା ।. . . କୋଉ ଅଫିସ୍‌ରେ ?'

'ନା, ଏଇ ସହରରେ ନୁହଁ, ବହୁତ ଦୂରରେ ।'

'ଏ ସହର ଛାଡ଼ି ଦେବ ! ତା'ହେଲେ ଆମର କ'ଣ ହେବ ? ମୋ' ଠୁଁ ତୁମେ ଦୂରେଇ ରହିବ ?' ସତ୍ୟ ବ୍ୟସ୍ତ ହେଇ ପଡ଼ିଥିଲା । ହେଲେ ବିଦିଶାର ଆଖି ମୁହଁରେ ଦୁଃଖର ସାମାନ୍ୟ ଛିଟା ମଧ୍ୟ ନ ଥିଲା । ନିଜକୁ ଯେ ସେତେବେଳେ ସେ ପ୍ରସ୍ତୁତ କରୁଥିଲା । ଝକମକି ପଥର ଦେଇ ନିଜ ଭିତରେ ନିଆଁ ଜଳାଉଥିଲା । ବେଶୀ ସମୟ ଲାଗି ନ ଥିଲା । ନିଆଁ ଝୁଲ ଝରାଇ ସେ ଉତ୍ତର ଦେଇଥିଲା, 'ଦୂରେଇ ଯିବି, ମାନେ ? ଏବେ କ'ଣ ପାଖରେ ଅଛି ?'

'ସେମିତି କାହିଁକି କହୁଛ, ବିଦିଶା ? ଆମ ଭଲ ପାଇବା, ଆମର ଦୁଇ ବର୍ଷର ସମ୍ପର୍କ. . .'

'ସମ୍ପର୍କ ! କି ସମ୍ପର୍କ ? ତୁମ ଭଳି ଆଙ୍ଗୁଠି ଟିପ ମାପି ମାପି ଚାଲିବାକୁ ଭଲ ପାଇବା କୁହାଯାଏନାହିଁ, ଭୟ କୁହାଯାଏ । ଦୁଇବର୍ଷଟା ବା ଏମିତି କ'ଣ, ଦୁଇଶହବର୍ଷ ଚାଲିଗଲେ ବି କିଛି ହେବନି । ତୁମଦେଇ କିଛି ହେବନି ।' – ବିଦିଶାର ସ୍ୱର ତିକ୍ତ ।

'ସେମିତି କୁହନି, ବିଦିଶା ।'

'କାହିଁକି କହିବିନି ? ଆଜି ସବୁ କହିବି ।... ତୁମକୁ ତ କିଛି କହି ଆସେ ନାହିଁ । ତେଣୁ ମୋତେ ହିଁ କହିବାକୁ ହେବ ।'

'ମୁଁ ସବୁ କହିବି, ବିଦିଶା । ସବୁ ।'

'କ'ଣ କହିବ ?' ବିଦିଶା ସ୍ୱରରେ ବିଦ୍ରୂପ । 'କୋଉ ଲେଖକଙ୍କର ନୂଆ ବହିର କାହାଣୀ ? ନା ଅଫିସ୍‌ର ଜର୍ମାନୀ ପ୍ରୋଜେକ୍ଟ୍‌ର ଖବରାଖବର ? ହୁଏତ ଏସବୁ କିଛି ବି ନୁହଁ, ଆମ ଦୁର୍ନୀତିଗ୍ରସ୍ତ ସମାଜର ଚର୍ଚ୍ଚମା ।'

ବିଦିଶା ମିଛ କହିନି । ଦେଖାହେଲେ ଏଇ ଭଳି କଥା ହିଁ ତ କହିଥାଏ ସତ୍ୟ । ଅଫିସ୍ କଥା, ଦେଶର ସମସ୍ୟା କଥା, ତେବେ ଅଧିକାଂଶ ସମୟରେ କେବଳ ନୂଆ ପଢ଼ିଥିବା ବା ପଢ଼ୁଥିବା ବହିର କଥା । କଳ୍ପନାପ୍ରବଣ ଭଲ ପାଇବା କଥା ଯେ ସେ ଆଦୌ କହେ ନାହିଁ, ତା' ନୁହଁ । ତେବେ ସ୍ୱଚ୍ଛନ୍ଦ ଭାବରେ ସେସବୁ କଥା ସତ୍ୟ ଓଠକୁ ଠିକ୍ ଆସେ ନାହିଁ ।

'ମୁଁ ଚେଷ୍ଟା କରିବି । କଥା ଦେଉଛି, ଦିଶା ।'

'ଥାଉ ଥାଉ ।' ସତ୍ୟର କଥା ଅଧାରୁ ବନ୍ଦ କରେଇ ଦେଇ ବିଦିଶା ଉତ୍ତର ଦେଇଥିଲା, 'ତୁମର ହାତେ ମାପି ଚାଖଣ୍ଡେ ଚାଲିବାର ପ୍ରେମ ମୋ ଅଣ-ଜେଜେ, ପଣ-ଜେଜେଙ୍କ ଅମଳରେ ଠିକ୍ ଥିଲା, ଏକବିଂଶ ଶତାବ୍ଦୀରେ ନୁହଁ ।'

ଏକବିଂଶ ଶତାବ୍ଦୀରେ ପ୍ରେମ କେମିତି ହୁଏ ?

ଢୋକ ଗିଳି ବିଦିଶାର ହାତ ଧରି ସତ୍ୟ କହିଥିଲା, 'ଚାଲ ଦିଶା, ଆମେ ଏଇ ମାସରେ ବାହା ହେଇଯିବା । ତୁମେ କହିଲେ ଘରଲୋକଙ୍କୁ ଜଣାଇବା । ନହେଲେ କୋର୍ଟରେ ବାହା ହେବା ପାଇଁ ବି ମୁଁ ରାଜି ।'

ହାତ ଛିଞ୍ଚାଡି ଦେଇ ଚାଲି ଯାଉ ଯାଉ ବିଦିଶା କହିଥିଲା, 'ବାହା ! ତମକୁ ! ହାଃ । ତା' ଅପେକ୍ଷା ବରଂ ଭଲ ଦୂର କୋଉ ଗ୍ରହକୁ ଚାଲିଯାଇ ଏକା ଏକା ରହିବା । . . .ଆଗ କଥା କହି ଶିଖ, ସପ୍ରତିଭ ହେବା ଶିଖ, ତା'ପରେ ସମ୍ପର୍କ ଯୋଡିବ । ବାହା ହେବ ।'

ବିଦିଶା ଚାଲିଗଲା ।

ସତ୍ୟ ଭାବିଥିଲା ପର ଦିନ, ଅର୍ଥାତ୍ ରବିବାର ଦିନ ସକାଳୁ ଯାଇ ବିଦିଶାର ମାନ ଭଞ୍ଜନ କରିବ । ତାକୁ ବୁଝେଇ ଦେବ । ଯାଇଥିଲା ବି । ହେଲେ ବିଦିଶା ପେଇଙ୍ଗ୍ ଗେଷ୍ଟ ହେଇ ରହିଥିବା ପରିବାରର କର୍ତ୍ତ୍ରୀ ତାକୁ ଅବାକ୍ ଭାବରେ ଦେଖୁ ଦେଖୁ ଜଣେଇ ଥିଲେ, 'ବିଦିଶା ତ କାଲି ରାତିରେ ଚାଲିଗଲା ।'

ହଠାତ୍ ଏମିତି ଚାଲିଗଲା ? ବିଦିଶା ଘରେ କିଛି ସମସ୍ୟା ହେଇଛି ନା କ'ଣ ? ସେଇ ଉଦ୍‌ବିଗ୍ନତା ଯୋଗୁଁ ସତ୍ୟକୁ ସେ କେତେ କେତେ କଥା କହିଗଲା କି ଆଗ ଦିନ ? 'କୁଆଡେ ଚାଲିଗଲା ବିଦିଶା ? ଗାଁ କୁ ?' ସତ୍ୟ ପଚାରିଥିଲା ।

'ଏ ମା', ତମେ ଜାଣନି ? ବିଦିଶା ତମକୁ କହିକରି ଯାଇନି ?... ସେ ତ ଅଷ୍ଟ୍ରେଲିଆ ଚାଲିଗଲା । ସିଡ୍‌ନି ନା କ'ଣ ଏମିତି ଜାଣ ସହରଟାର ନାଁ । ସେଠି ତା'ର କୋଉ ମାଉସୀ ଝିଅ ଭଉଣୀ ଅଛି ଯେ ସେ ପରା ଡକେଇ ନେଲା... ।'

ନିଜ ଘରକୁ ଫେରି ଆସି ଖଟ ଉପରେ ପଡି ଯାଇଥିଲା ସତ୍ୟ । ଅଭ୍ୟାସବଶତଃ ଟେଲିଭିଜନର ରିମୋଟ୍‌ଟା ବି ଟିପି ଦେଇଥିଲା । ବୋକାଙ୍କ ଭଳି ଟେଲିଭିଜନ୍‌ର ନିଉଜ୍-ଚ୍ୟାନେଲ୍ ଦେଖୁଦେଖୁ କିଭଳି ଏକ ଶୂନ୍ୟତା ନେଇ ସେ ବିଦିଶା କଥା ଭାବିଥିଲା । ଚାଲିଗଲା ସେ ! ଅଷ୍ଟ୍ରେଲିଆ !

ଏଇଭଳି ନିଜ ଭିତରେ କଥା ଲୁଚେଇ ରଖି ବଡ଼ ବଡ଼ ନିଷ୍ପତ୍ତି ଯିଏ ନେଇପାରେ, ସେଇ କି ଏକବିଂଶ ଶତାବ୍ଦୀର ଯୋଗ୍ୟ ? ବିଦିଶା ପୂର୍ବ ଦିନ କହି ଯାଇ ଥିବା କଥା ସତ୍ୟ ଗଭୀର ଭାବରେ ଚିନ୍ତା କରିଥିଲା ।

ହୁଏତ ସବୁ ସତ । ବିଦିଶାର କଥା ହିଁ ଠିକ୍ । ସତ୍ୟର ଜୀବନ ଏବଂ ଜୀବନ ଯାତ୍ରାର ଦର୍ଶନ ପ୍ରାଚୀନ । ସେଥିରେ ମଧ୍ୟଯୁଗୀୟ ରକ୍ଷଣଶୀଳତା ନ ଥାଇପାରେ, କିନ୍ତୁ ଆଧୁନିକତାର ଘୋର ଅଭାବ । ଅଠେଇଶ ବର୍ଷ ବୟସରେ କ'ଣ କେହି ଘର-ଅଫିସ୍-ଘର ହୋଇ ରହେ ? ଛୁଟିଦିନର ସନ୍ଧ୍ୟାମାନ ବହି ଦୋକାନରେ

କଟାଇ ଦିଏ ? ଭଲ ପାଇବାର ପ୍ରସ୍ତାବ ସମ୍ଭାବିତ ବାଳିକା ବନ୍ଧୁ ସାମ୍ନାରେ ଚୋଳି ଦେବା ପାଇଁ ଛଅ ମାସ ନେଇଯାଏ ? ପୁଣି ହୃଦୟର ସମ୍ପର୍କ ସହିତ ଶାରୀରିକ ସମ୍ପର୍କ ଯୋଡି ଦେବାରେ ଆହୁରି ବର୍ଷଟିଏ ଗଡେଇ ଦେଇପାରେ ?

ନା, ସତ୍ୟ ଭିତରେ ଉଚ୍ଚାକାଂକ୍ଷା ନାହିଁ । ବିଦ୍ୟୁତର ଚମକ ନାହିଁ । ଏଭଳି ଜଣକ ସାଙ୍ଗରେ ବିଦିଶା କେମିତ ସମ୍ପର୍କ ରଖି ଥାଆନ୍ତା ? ନିଜ ଭବିଷ୍ୟତ ଯୋଡି ଦେଇ ଥାଆନ୍ତା ? ସେଇଥିପାଇଁ ନା ଚାକିରିରୁ ଇସ୍ତଫା ଦେଇ ନିଜ ଜୀବନକୁ ଫାଷ୍ଟ ଟ୍ରାକ୍‌ରେ ସାମିଲ କରି ନେବା ପାଇଁ ସେ ଚାଲିଗଲା ସିଡ୍‌ନି । ସମ୍ପର୍କୀୟ ଭଉଣୀ ଭିଣେଇଙ୍କ କାନ୍ଧରେ ଭରା ଦେଇ ଉପର ପାହାଚକୁ ଉଠିଯିବା ପାଇଁ ।

ଟେଲିଭିଜନ୍ ବନ୍ଦ ନ କରି କିଛି ନ ଖାଇ ସେଦିନ ଶୋଇ ଯାଇଥିଲା ସତ୍ୟ ।

ପର ଦିନ ଅବଶ୍ୟ ସେ ଅଫିସ୍ ଯାଇଥିଲା । ନିଜ କାମ ଠିକ୍ ଭାବରେ କରିଥିଲା । କିନ୍ତୁ ଘରକୁ ଫେରିବା ମାତ୍ରକେ ବିଛଣାରେ ଗଡି ଯାଇ ପୁଣି ରିମୋଟ୍ ଟିପିଥିଲା । ସବୁ ଦିନର ଅଭ୍ୟାସରେ ଖଟ ପାଖ ଟେବୁଲରେ ଥିବା ବହିଟାକୁ ଉଠାଇ ନେଇଥିଲା ସେ । କିନ୍ତୁ ଚେଷ୍ଟା କରି ମଧ୍ୟ ହାଲୁକା ବହିଟାରେ ମନ ଦେଇପାରି ନ ଥିଲା ।

ଏଇମିତି ଏକା ନିୟମରେ କଟିଯାଇଥିଲା ବେଶ୍ କିଛି ସପ୍ତାହ । ତା'ରି ଭିତରେ ଶୀତ ଋତୁ ଚାଲିଗଲା । ବସନ୍ତକୁ ସ୍ୱାଗତ ଜଣାଇ ତାଙ୍କ ଛୋଟ ସହରରେ ବସନ୍ତୋତ୍ସବ ବି ପାଳିତ ହୋଇଗଲା ।

ହେଲେ ସତ୍ୟର ସେଇ ଅଫିସ୍-ଘର-ଟେଲିଭିଜନ୍‌ର ରୁଟିନ୍ ।

ଏହାରି ଭିତରେ ଦିନେ ଅଫିସ୍‌ର ନିୟମ ବି ବଦଳିଗଲା ।

ଏତେବର୍ଷ ଧରି ନଅଟାରୁ ଛଅଟା ପର୍ଯ୍ୟନ୍ତ ଚାଲୁଥିବା ଅଫିସ୍ ସମୟ କମ୍ପାନୀ ମାଲିକଙ୍କର ଠିକ୍ ପସନ୍ଦ ହେଲା ନାହିଁ । ତାଙ୍କର ମନେ ହେଲା ଯେ ଅଫିସ୍ ସମୟରେ ରାସ୍ତାରେ ହେଉଥିବା ଭିଡ କମ୍ପାନୀର ତିନି ଶହ ଲୋକଙ୍କ ସ୍ୱାସ୍ଥ୍ୟ ପାଇଁ ଏବଂ କମ୍ପାନୀର ମୁନାଫା ପାଇଁ ସୁରୁଚକର ନୁହଁ । ବାସ୍ – ଅଫିସ୍‌ର ସମୟ ବଦଳିଗଲା । ସକାଳ ସାଢେ ସାତଟାରୁ ସାଢେ ଚାରିଟା । ଭୋର୍‌ରୁ ଉଠିବାରେ ଅସୁବିଧା ହେଉଥିବା କେତେଜଣ ନୂଆ ସମୟ ନେଇ ସାମାନ୍ୟ ଆପତ୍ତି କରିଥିଲେ । କିନ୍ତୁ ଶତକଡା ଅଶୀ ପ୍ରତିଶତ ସେଆର୍ ନିଜ ମୁଠିରେ ରଖିଥିବା ମାଲିକଙ୍କ କଥା ହିଁ ବେଦର ଗାର । ଅଫିସ୍‌ର ନୂଆ ସମୟ ଚାଲୁ ହେଇଗଲା ।

ପିଲାଦିନରୁ ଅନ୍ଧାର ଥାଉ ଥାଉ ଉଠି ପଡିବା ସତ୍ୟର ଅଭ୍ୟାସ । ସେଥିପାଇଁ ସକାଳ ସାଢେ ସାତଟା ବେଳେ ଅଫିସ୍ ପହଞ୍ଚିବାରେ ତା'ର କିଛି ଅସୁବିଧା ହେଇ

ନ ଥିଲା । ଅସୁବିଧା ହୋଇଥିଲା ଅଫିସ୍ ଶେଷ ହେବାର ସମୟ ନେଇ । ଯେତେ ଡେରି ଡେରି କରି ନିଜ ଟେବୁଲ୍‌ରୁ ଉଠିଲେ ମଧ ପାଞ୍ଚଟା ପରେ ଅଫିସ୍ ଭିତରେ ବସି ରହିବାର କୌଣସି ଯଥାର୍ଥ କାରଣ ନ ଥିଲା । ଆଉ ତା'ପରେ ସତ୍ୟ ସାମ୍ନାରେ ଯେମିତି ଲମ୍ବି ରହୁଥିଲା ଗୋଟାଏ ଯୁଗ । ସମୟ କଟାଇବା କାଠିକର ହୋଇ ପଡିଥିଲା ତା' ପାଇଁ ।

ବେଶ୍ କିଛି ଦିନ ବିଦିଶା କଥା ଭାବି ଭାବି ମନ ଖରାପ କରି କରି ସନ୍ଧ୍ୟାମାନ କଟିଯାଇଥିଲା । କିନ୍ତୁ ଆଉ କେତେ ଦିନ ?

ସେଦିନ ପୁରୁଣା କ୍ରିକେଟ୍ ମ୍ୟାଚ୍‌ଟିଏ ଚାଲିଥିଲା ଛୋଟ ପର୍ଦ୍ଦା ଉପରେ । ସତ୍ୟ ଦେଖି ମଧ ଦେଖୁ ନ ଥିଲା । ମନ ଭିତରେ ଖେଳି ବୁଲୁଥିଲା ହଜାର ପ୍ରଶ୍ନ ।

କ'ଣ ଏମିତି ଅଭାବ ରହି ଯାଇଥିଲା ଯେ ତା' ଭିତରେ, ତାକୁ ବିଦିଶା ନିଜର ଉପଯୁକ୍ତ ମନେ କଲା ନାହିଁ ? କଥା କହିବା ଶୈଳୀର ଅଭାବ ? ପ୍ରାଣ-ସତ୍ତାର ଅଭାବ ? ନା ଅପରକୁ ମୋହିତ କରିବା ବ୍ୟକ୍ତିତ୍ୱର ଅଭାବ ?

ହୁଏତ ମିଶାମିଶି ହେଇ ସବୁ କିଛି ।

ହେଲେ କେମିତି ସତ୍ୟ ପୂରଣ କରିବ ସେସବୁ ଅଭାବ ? କିଏ ହାତ ଧରି ଶିଖେଇ ଦେବ ତାକୁ ?

ଗୋଟାଏ ହୋସ୍‌ରେ ଉଠିଥିଲା ସେ । ଟେଲିଭିଜନ୍ ବନ୍ଦ କରି ଦେଇ ଅଧା-ପିଇଥିବା ଚାହା କପ୍‌କୁ ଆଡେଇ ଦେଇ ଚାଲି ଯାଇଥିଲା ବାହାରକୁ । ନିଜ ଜୀବନରେ ବିଦ୍ୟୁତର ଚମକ ଆଣିବାର ଚାବିକାଠି ତାକୁ ଖୋଜି ନେବାକୁ ହେବ । ଅନ୍ତତଃ ଆଉ ଜଣେ ବିଦିଶା ତାକୁ ଯେମିତି କହି ପାରିବ ନାହିଁ ଯେ ତା' ଜୀବନରେ ଅଗ୍ନି ସ୍ଫୁଲିଙ୍ଗ ନାହିଁ । ସତ୍ୟ ମଣିଷଟା ବିରକ୍ତିକର । ଆଧୁନିକ ସମାଜର ଅଭିଧାନରେ ନିହାତି ବୋରିଙ୍ଗ୍ ମଣିଷ ।

ହେଲେ କୋଉଠି ଖୋଜିବ ସେ ପ୍ରେମର ପରିଭାଷା ?

ସ୍କୁଟର୍ ଧରି ରାସ୍ତାରେ ରାସ୍ତାରେ ଘୂରିଥିଲା ସତ୍ୟ । ଆଖିରେ ପଡିବା ଭଳି ଏ ସହରଟିରେ କିଛି ନାହିଁ । ରଙ୍ଗହୀନ । ଅନେକଟା ତା' ନିଜ ଭଳି ।

ପ୍ରାଣସତ୍ତାର ସନ୍ଧାନ ଏଠି କୋଉଠି ମିଳିବ ତାକୁ ? ଆଉ ଠିକ୍ ସେତିକି ବେଳେ ତା' ଆଖିରେ ପଡିଥିଲା ବଗିଚାଟି । ହଳଦିଆ ଟିଣ ଉପରେ କଳା ଅକ୍ଷରରେ ଲେଖା ହେଇଥିବା ନାଁ ଟି ଖରାବର୍ଷା ମାଡରେ ବେଶ୍ ହାଲୁକା ହୋଇ ଯାଇଛି, ହେଲେ ଭିତରଟା ସୁନ୍ଦର । ଫୁଲରେ ସଜେଇ ହୋଇ ରହିଛି ।

ସତ୍ୟ ସ୍କୁଟରରୁ ଓହ୍ଲେଇଲା । ହଳଦିଆ ସାଇନ୍‌ବୋର୍ଡ୍ ପାଖକୁ ଯାଇ ନାଁ ଟି

ପଢ଼ିବାର ଚେଷ୍ଟା କଲା । 'କମଳ କାନନ' ।

କମଳ କାନନ ? ଏଇ ତାହେଲେ ସେଇ 'କମଳ କାନନ' ? ତା' ଘରର ଏତେ ପାଖରେ ?

ସତ୍ୟ ଫାଟକ ଠେଲି ଭିତରେ ପାଦ ଦେଇଥିଲା ।

ନୂଆ ସହରକୁ ବଦଳି ହେଇ ଆସିବାର ତିନି ବର୍ଷ ଭିତରେ ବେଶ୍ କେତେ ଥର 'କମଳ କାନନ' ନାଁ ତା' କାନରେ ପଡିଛି, କିନ୍ତୁ ବଗିଚାଟି ଖୋଜି ନେଇ ଥରେ ଘୂରି ଆସିବାର ସ୍ପୃହା କେବେ ହେଇନି । ପ୍ରଥମ ପ୍ରଥମ ତ କାମରେ ସେ ଏତେ ବ୍ୟସ୍ତ ରହିଯାଉଥିଲା ଯେ ଘର-ଅଫିସ୍ ବାହାରର ପୃଥିବୀ ଆଡକୁ ଆଖି ତୋଳି ଚାହିଁବା କଥା ସେ ଆଦୌ ଭାବି ପାରି ନ ଥିଲା । ଆଉ ଛଅ ମାସ ପରେ ତା'ର ଯେତେବେଳେ ବିଦିଶା ସାଙ୍ଗରେ ପରିଚୟ ହେଲା, ସେତେବେଳେ ତା' ପୃଥିବୀ ବିଦିଶାମୟ ହୋଇଗଲା । କମଳ କାନନ ଭଳି ତୁଚ୍ଛ କଥା ଚିନ୍ତାର ପରିସର ଭିତରକୁ ଆସିବ ବା କାହିଁକି ?

ଅଥଚ ଦେଖ, ତା' ଭଡା ଘରଠୁଁ ମାତ୍ର ଦେଢ଼ ଦୁଇ କିଲୋମିଟର୍ ଦୂର ବଗିଚାଟି । ଘର ଫାଟକ ପାଖରୁ ଡାହାଣକୁ ବଙ୍କି ଯାଇ ରାସ୍ତା ଶେଷରେ ଥିବା ପଲିଟେକ୍‌ନିକ୍ କଲେଜର ବିରାଟ ପରିସରକୁ ଘୂରିଗଲେ ହେଲା ।

ଏଇ ରାସ୍ତା ଦେଇ ଅଗଣନ୍ତି ଥର ସତ୍ୟ ସ୍କୁଟର୍‌ରେ ଯାଇଛି । କମ୍ପାନୀ ବସ୍‌ରେ ଅଫିସ୍ ଯାଇଛି । କିନ୍ତୁ ବଗିଚାଟି ଯେ ଏତେ ବିଶାଳ, ସେକଥା କୌଣସି ଦିନ ବୁଝିପାରିନାହିଁ । ରାସ୍ତା ପାଖ ବଗିଚାର ଗୋଟାଏ ଅଂଶ କେବଳ ଏତେ ଦିନ ତା' ଆଖିରେ ପଡିଥିଲା । ହେଲେ ବଗିଚାଟି ଲମ୍ବି ଲମ୍ବି ପଲିଟେକ୍‌ନିକ୍ କଲେଜର ପାଚେରି କଡ଼ ଦେଇ ଗଳି ଶେଷ ପର୍ଯ୍ୟନ୍ତ ଚାଲିଯାଇଛି । ଗଳିର ଶେଷ ଆଡକୁ ପାହାଡ଼ ଆକୃତିର ବିରାଟ ପଥର । ପଥର ଉପରେ ଥୁଣ୍ଟା ଗଛଟିଏ । ଫୁଲ କଢ଼ି କଥା ଦୂରେ ଥାଉ, ଶୁଖିଲା ପତ୍ରଟିଏ ବି ନାହିଁ । ବସନ୍ତ ସ୍ପର୍ଶରେ ମଧ୍ୟ ରୂପ ବଦଳାଇ ନାହିଁ ଗଛଟି ।

ପଥର ସାମ୍ନାର ଛୋଟ ରାସ୍ତା ଦୁଇ ଧାରରେ ଅନେକ ବେଞ୍ଚ୍ । ଅଧିକାଂଶ ବେଞ୍ଚରେ ଅଧିକାର ଜମେଇ ବସିଛନ୍ତି କମ୍ ବୟସର ଯୁଗଳ ମୂର୍ତ୍ତିମାନ । ପଲିଟେକ୍‌ନିକ୍ କଲେଜର ଛାତ୍ରଛାତ୍ରୀ ଯେ ଅଧିକାଂଶ, ତା' ବେଞ୍ଚ୍ କଡ଼ରେ ରହିଥିବା ବ୍ୟାଗ୍ ଓ ବ୍ୟାକ୍‌ପ୍ୟାକ୍‌ମାନ ସୂଚେଇ ଦେଇଥିଲା । କଲେଜ ଦିନରେ ଥରେ ଦେଖିଥିବା ମୁମ୍ବାଇର ବ୍ୟାଣ୍ଡ୍ ଷ୍ଟାଣ୍ଡ୍ କଥା ସତ୍ୟର ମନେ ପଡିଯାଇଥିଲା । କିନ୍ତୁ ଏଠି ବ୍ୟାଣ୍ଡ୍ ଷ୍ଟାଣ୍ଡର ଦୃଷ୍ଟିକଟୂ ହେବା ଭଳି ଘନିଷ୍ଠତା ତା' ଆଖିରେ ପଡି ନ ଥିଲା । ପାଖାପାଖି

ବସିଥିବା ଯୁଗଳ ମୂର୍ତ୍ତିମାନଙ୍କ ମଧ୍ୟରୁ କେହି କେହି ପରସ୍ପରର ହାତରେ ହାତ ରଖୁଥିଲେ ଯାହା । ହୁଏତ ଛୋଟ ସହରର ଅଲିଖିତ ସମ୍ଭ୍ରମ ଭାଙ୍ଗିବା ସାହସ ସେମାନଙ୍କର ନ ଥିଲା ।

ବିଦିଶା ବାରମ୍ବାର ଆଙ୍ଗୁଠି ଦେଖାଇ କହିଥିବା ଏକବିଂଶ ଶତାବ୍ଦୀ କାହିଁ ?

ସେତେବେଳ ପର୍ଯ୍ୟନ୍ତ ଦୁଇ ତିନୋଟି ବେଞ୍ଚ୍ ଖାଲି ପଡିଥିଲା । ଚାହିଁଥିଲେ ସତ୍ୟ ଗୋଟିକ ଉପରେ ବସି ପାରିଥାଆନ୍ତା । କିନ୍ତୁ ସେଦିନ ସେ ସେଭଳି ନ କରି ବଡ଼ ବଡ ପାଦ ପକାଇ ଚଢି ଯାଇଥିଲା ପଥର ଉପରକୁ । ଥୁଣ୍ଟା ଗଛ ତଳେ ଗୋଡ଼ ଲମ୍ବେଇ ବସି ଯାଇ ପୃଥିବୀ ପର୍ଯ୍ୟବେକ୍ଷଣ କରିଥିଲା ।

ସେଇ ପ୍ରଥମ । ତା' ପରଠୁଁ ନିୟମ କରିବା ଭଳି ପ୍ରାୟ ସବୁଦିନ ଅଫିସ୍ ପରେ ସେ 'କମଳ କାନନ'କୁ ଚାଲି ଯାଉଥିଲା ଆଉ ଥୁଣ୍ଟା ଗଛ ମୂଳେ ବସି ରହୁଥିଲା ସନ୍ଧ୍ୟା କଟିଯିବା ପର୍ଯ୍ୟନ୍ତ । ପରେ ହୁଏତ ଦିନେ ସେ ପରବର୍ତ୍ତୀ ପର୍ଯ୍ୟାୟକୁ ଯିବ । ପ୍ରେମର ପରିଭାଷା ଶିଖିବାକୁ ଚେଷ୍ଟା କରିବ । ଏବେ ଏଇ ପର୍ଯ୍ୟବେକ୍ଷଣ ହିଁ ଯଥେଷ୍ଟ ।

ଚାରିଆଡେ ଆଖି ବୁଲାଉ ବୁଲାଉ ସତ୍ୟର ଦିନେ ଦିନେ ବେଶ କୌତୁହଳ ହେଉଥିଲା । ବଗିଚାର ନାଁଟି କମଳ କାନନ ରଖିଲା କିଏ ? ଯେଉଁ ଜମି ଉପରେ ବଗିଚାଟି ତିଆରି ହେଇଛି ସେଇଟାର ମାଲିକ କି ଥିଲେ କେହି ଜଣେ କମଳ ବାବୁ ? କିମ୍ବା ହେଇପାରେ, ନାଁ ଟି ଆସିଛି 'କମଳିନୀ' ଶବ୍ଦରୁ – ମାଲିକଙ୍କର ପତ୍ନୀ, କନ୍ୟା କିମ୍ବା ଆପଣାର କେହି । କିଏ ଜାଣେ, ହୁଏତ ଏସବୁ କିଛି ନୁହଁ । ବଗିଚାର ନାଁ ବୋଲି ହିଁ କିଛି ନ ଥିଲା । ଦକ୍ଷିଣ ପଟେ ଶୁଖି ଆବର୍ଜନାମୟ ହୋଇ ଯାଇଥିବା ଗଡିଆଟି ହୁଏତ ଏକଦା ଥିଲା ପଦ୍ମ ପୋଖରୀ । ତାକୁଇ ଦେଖି କେହି ଜଣେ ହାଲୁକା ଭାବରେ କହି ଦେଇଥିବ – କମଳ କାନନ । ଏବଂ ପରେ ପଦ୍ମ-ପୋଖରୀର ଅସ୍ତିତ୍ୱ ହଜି ଯିବା ପରେ ବି ସେଇ ନାଁ ଟି ରହିଯାଇଥିବ ।

ପୋଖରୀର ଛୋଟ ଭଉଁରୀ ଭଳି ସତ୍ୟର ମନ ଖେଳାଇ ଖେଳାଇ ଯାଏ ଦିନେ ଅଧେ । କିନ୍ତୁ ତା'ର ଏକାଗ୍ର ଦୃଷ୍ଟି ବଗିଚାର ଯୁଗଳ ମୂର୍ତ୍ତିମାନଙ୍କ ହାବଭାବ, ଆଚରଣ ଉପରେ ଥାପି ହୋଇରହେ ସବୁବେଳେ । ପ୍ରାୟ ସବୁ ଦିନ ବଗିଚାକୁ ଆସି ଆସି ଅଧିକାଂଶ ମୁହଁ ତା'ର ଚହ୍ନା ହୋଇସାରିଥାଏ । ସବୁ ଦିନ ଯେ ସତ୍ୟ କେବଳ ଚହ୍ନା ମୁହଁ କିମ୍ବା ଚହ୍ନା ଯୋଡିମାନଙ୍କୁ ଦେଖେ ତା' ନୁହଁ । ବେଳେ ବେଳେ ପରିବର୍ତ୍ତନ ଆସେ । ଏଇ ଯେମିତି ନୀଳ ବ୍ୟାକ୍‌ପ୍ୟାକ୍ ଧରି ଆସୁଥିବା ନିଶୁଆ ପିଲାଟା । ବେଶ୍ କିଛି ସପ୍ତାହ ଧରି ସେ ଚଷମା ପିନ୍ଧା ଗୋରୀ ଝିଅଟିଏ

ସାଙ୍ଗରେ ଆସି ବସୁଥିଲା । ତା'ପରେ ଦିନା କେତେ ଉଭାନ । ପୁଣି ଦେଖାଦେଲା ଶ୍ୟାମଳୀ ଲମ୍ବା ବେଣୀ ଝିଅଟିଏର ହାତ ଧରି । ଏବେ ସେ ଝିଅ ଗଲାଣି କୁଆଡେ । ଆଜି କାଲି ନୀଳ ବ୍ୟାକ୍‌ପ୍ୟାକ୍ ନିଶୁଆ ପିଲାଟି ବେଞ୍ଚ୍‌ରେ ବସୁଛି ଜିନ୍ ଟି-ସାର୍ଟ୍ ପିନ୍ଧା ଝିଅଟିଏ ସାଙ୍ଗରେ । ଗତ କାଲି ତ ବେଶ୍ ସାହସୀ ହୋଇ ପଡିଥିଲା ସେ । ଏପାଖ ସେପାଖକୁ ଥରେ ଚାହିଁ ଝିଅଟିର ମୁହଁ ପାଖକୁ ମୁହଁ ନେଇ ଆସିଥିଲା ଗଭୀର ପ୍ରେମ୍‌ରେ । ଶେଷ ମୁହୂର୍ତ୍ତରେ ଅବଶ୍ୟ ଆଉ କିଛି ହେଲା ନାହିଁ । ଝିଅଟି ଆଖିଠାରରେ ଚଣାବାଦାମବାଲାକୁ ଦେଖାଇ ଘୁଞ୍ଚିଯାଇଥିଲା ସାମାନ୍ୟ ।

ନୀଳ ବ୍ୟାକ୍‌ପ୍ୟାକ୍ ନିଶୁଆ ପିଲାଟି ଭଳି ବାଳିକା ବନ୍ଧୁ ବଦଳାଉଥିବା ମଣିଷ ଏଠି ଅବଶ୍ୟ ଅନେକ କମ୍ । ଚହ୍ଲା ଯୋଡି ମାନଙ୍କ ଭିତରେ ଖୁବ୍ କମ୍ ପରିବର୍ତ୍ତନ ଦେଖେ ସତ୍ୟ । ଏକାଠି ଆସନ୍ତି । ଖାଲି ଥିବା ବେଞ୍ଚ୍‌ରେ ହାତ ଧରାଧରି ହେଇ ବସନ୍ତି । ବାଦାମବାଲାକୁ ପାଖକୁ ଡାକି ଚନାବାଦାମ ଖାଆନ୍ତି । ଚନାବାଦାମ ଚୋପା ବେଞ୍ଚ୍ ଚାରି ପଟେ ପକାଇ ଚପ୍ ଚପ୍ କଥା ହେଇ ହେଇ ବଗିଚାରୁ ବାହାରିଯାଆନ୍ତି । କି କଥା କହନ୍ତି ସେମାନେ ? କଲେଜ କଥା ? ଘର କଥା ? ନା କେବଳ ପ୍ରେମର କଥା ? କେମିତି ?

ଶୁଣିବାକୁ ହେବ । ସତ୍ୟକୁ ଶିଖିବାକୁ ହେବ ।

ସେଦିନ ଆଉ ଥୁଣ୍ଟା ଗଛ ମୂଳରେ ବସିଲା ନାହିଁ ସତ୍ୟ । ହାତରେ ବହିଟିଏ ଧରି ବସିଲା ଗୋଟାଏ ବେଞ୍ଚରେ । ପାଖ ବେଞ୍ଚର ଦୁଇ ଜଣ ଫିସ୍ ଫିସ୍ କରି କଥା କହି ହସି ଗଡି ଯାଉଛନ୍ତି । ସେମାନଙ୍କ କଥା ଶୁଣିବାକୁ ଅସୁବିଧା ନାହିଁ । ହେଲେ ହସ ବନ୍ଦ କରି କଥା କହିଲେ ସିନା !

ହସ ବନ୍ଦ ହେଲା ।

'ଯା ବେ ଯା । ମିଛୁଆ !' ପ୍ରେମିକା କଣ୍ଠରେ ଏ କି ଭାଷା ! ବହି ଉପରୁ ଆଖି ତୋଳିଲା ସତ୍ୟ । ଭୁଲ୍ ଶୁଣିନି ସେ । ପାଖ ବେଞ୍ଚର କମ୍ ବୟସୀ ଝିଅଟି ହିଁ କଥାଟି କହିଲା ।

'ମିଛ ନୁହଁ । ପ୍ରମିସ୍ । ତୋ ଦେହ ଛୁଇଁ କହିବି ?'

ପୁଅଟିକୁ ଠେଲି ଦେଇ ଝିଅଟି ପୁଣି କହିଲା, 'ଧେତ୍ । ଘୁଞ୍ଚି କରି ବସ୍ । ଖାଲି ଚାନ୍ସ୍ ମାରିବା ଉପରେ ଅଛୁ । କ୍ୟାମ୍ପସ୍ ରିକ୍ରୁଟ୍‌ମେଣ୍ଟ ହେଇଗଲା । ଚାକିରି ପାଇଗଲୁ । ଏଥର ଆସି ବାପାଙ୍କ ସାଙ୍ଗରେ କଥା କହ !'

'କହିବି । କହିବି ।'

'କେବେ ଆଉ କହିବୁ ? ମୁଁ ଜାଣେ ତୋ'ର ହିମ୍ମତ ନାହିଁ ।'

'କିଏ କହିଲା ହିମ୍ମତ ନାହିଁ ? ଦେଖେଇବି ହିମ୍ମତ ? ଦେଖେଇବି ?' ଝିଅକୁ ପାଖକୁ ଟାଣି ଆଣିବାର ଚେଷ୍ଟା କଲା ସେ ।

'ଧେତ୍ ।' ପୁଣି ହସି ହସି ଗଡିଗଲେ ସେମାନେ ।

ଏଭଳି ସାବଲୀଳ 'ତୁ ତା'ର ସମ୍ପର୍କ କ'ଣ ଆଧୁନିକ ଯୁଗର ? ହୁଏତ ଏ ଦୁଇଜଣ କ୍ଲାସ୍‌ମେଟ୍ । ବନ୍ଧୁତ୍ୱ ବଢି ବଢି ପ୍ରେମ ହେଇଛି । ସେଇଥିପାଇଁ କଥାବାର୍ତ୍ତାର ଧରଣ ଏଇଭଳି ।

କିନ୍ତୁ ସବୁଦିନ ବାଲ୍‌ରେ ଗୋଲାପଟିଏ ଲଗେଇ ଆସୁଥିବା କଜ୍ଜଳବତୀ କନ୍ୟାର କଥାଗୁଡାକ ବି ଯେ ସତ୍ୟ ପାଇଁ ଅବୋଧ ! କଜ୍ଜଳବତୀ କନ୍ୟାଟିକୁ ଲମ୍ୱାବାଳ ଟୋକାଟିଏ ସାଙ୍ଗରେ ପ୍ରାୟ ନିୟମିତ ଦେଖେ ସତ୍ୟ । ହେଲେ ସେମାନେ ବେଞ୍ଚ୍‌ରେ ବସନ୍ତି କମ୍ । ହାତରେ ହାତ ରଖି ବଗିଚାରେ ଘୂରି ବୁଲନ୍ତି କେବଳ ।

ସେଥିପାଇଁ ସେଦିନ ସେମାନଙ୍କୁ ତା' ପାଖ ବେଞ୍ଚରେ ବସିଯିବାର ଦେଖି ସତ୍ୟ ଅବାକ୍ ହେଲା । ମୁହୂର୍ତ୍ତକ ଭିତରେ ଅବଶ୍ୟ ବୁଝିଗଲା ଯେ ଆଜି ଯୋଡିଟିର ମନ ଫଟାଫଟି ହେଇଛି । ଅଭିମାନ ମିଶା ଯୁକ୍ତି ଚାଲିଛି ଦୁହିଁଙ୍କର । ତେବେ କାନେଇବାର ଆବଶ୍ୟକତା ନାହିଁ । ବଡ ପାଟିର କଥା ପରିଷ୍କାର ଭାବରେ ଶୁଣି ପାରୁଛି ସତ୍ୟ ।

'ଫରିଦାକୁ ଏମିତି କମେଣ୍ଟ୍ ଦେବା କ'ଣ ଦରକାର ଥିଲା ?' ଝିଅଟି ଚ୍ୟାଲେଞ୍ଜ୍ କରିବା ସ୍ୱରରେ ପଚାରିଲା । 'ଆର ସପ୍ତାହରେ ପ୍ରାର୍ଥନାକୁ ବି ସେଇ ଏକା ଭଳି କମେଣ୍ଟ୍ କରିଥିଲ । ମୁଁ ଭାବିଲି ଥରକ କଥା– ଛାଡ । ହେଲେ ବାରମ୍ୱାର ସେଇ ଏକା ଭଳି... ଛିଃ । ନାକ କଟିଗଲା ମୋର ସାଙ୍ଗମାନଙ୍କ ପାଖରେ ।'

ସତ୍ୟ ଆଶ୍ଚର୍ଯ୍ୟ । ଏମିତି ନିରୀହ ନିରୀହ ଦିଶୁଥିବା ଲମ୍ୱା ବାଳ ପିଲାଟି ଅନ୍ୟ ଝିଅଙ୍କୁ କମେଣ୍ଟ୍ ମାରେ ?

'ଫଟୋଟା ଭଲ ହେଇଛି, ସେଇ କଥା ଖାଲି ଲେଖିଲି । ଏଥିରେ ମହାଭାରତ ଅଶୁଦ୍ଧ ହୋଇଗଲା ?'

ବାପ୍‌ରେ, ପୁଅଟାର ଦମ୍ କେତେ ! ସେ ଯେ ଅନ୍ୟ ଝିଅଙ୍କୁ ଚଠି ଲେଖେ, ସେଇ କଥା ପୁଣି କହୁଛି ତା' ବାଳିକା ବନ୍ଧୁକୁ ?

'ଫଟୋ ଭଲ ହେଇଛି ବୋଲି ଲେଖିଥିଲେ ମୋର କହିବାର କିଛି ନ ଥିଲା, ହେଲେ ଲେଖିଲ – ୟୁ ଲୁକ୍ ସେକ୍‌ସି । ଛିଃ ।'

କଜ୍ଜଳବତୀ କନ୍ୟା ଜାଣିଲା କେମିତି ପୁଅଟି ଏଭଳି ଭାଷାରେ ଅନ୍ୟ ଝିଅମାନଙ୍କୁ ଚଠି ଲେଖିଲା ବୋଲି ? ସେମାନେ କ'ଣ ତା' ପାଖରେ ଅଭିଯୋଗ

କଲେ ? ସତ୍ୟ ବୁଝୁ ନ ଥିଲା ।

'ତୋ ଫଟୋ ଦେଖି ଦୀପକ ସେଇ କଥା ଲେଖି ନ ଥିଲା ? ଲେଖି ନ ଥିଲା – ହେ ସେକ୍‌ସି, ତୁମ ଡ୍ରେସ୍ ବହୁତ ସୁନ୍ଦର ?'

ସତରେ ସବୁ ତା' ପାଇଁ ଅବୋଧ । କିଏ କ'ଣ ଚଟି ଲେଖିଲା, କେମିତି ଜାଣିପାରୁଛନ୍ତି ଏମାନେ ?

'କ'ଣ ହେଇଗଲା ସେଇଠୁ ? ସେତେବେଳେ ତ ସେ ମୋ ବୟଫ୍ରେଣ୍ଡ ଥିଲା ।'

'ଠିକ୍ ଅଛି ।' ଲମ୍ୱା ବାଳର ମୁହଁ ରାଗରେ ଲାଲ ହେଇଗଲା । ବାଳତକ ପଛକୁ ଛାଟି ଦେଇ କହିଲା, 'ମୁଁ ଏବେ ଯାଉଛି ଇଣ୍ଟରନେଟ୍ କ୍ୟାଫେକୁ । ଫେସ୍‌ବୁକ୍‌ରେ ଲେଖିଦେବି– ମୋ ଗାର୍ଲଫ୍ରେଣ୍ଡ୍ ଶେଫାଳୀ ହିଁ ସେକ୍‌ସି । ଆଉ ସମସ୍ତେ ଅନ୍-ସେକ୍‌ସି ।. . . ହବ ତ ?'

'ହୁଁ ! କଥା !' ହମ ହମ ହୋଇ ଚାଲିଗଲା ଗୋଲାପ ଲଗା ଶେଫାଳୀ । ପଛେ ପଛେ ଲମ୍ୱା ବାଳ ।

ଏମାନଙ୍କ ପ୍ରେମ ତା' ହେଲେ 'ଫେସ୍‌ବୁକ୍' ମାଧ୍ୟମରେ ହୁଏ ! ସତ୍ୟ ହସିବ କି କାନ୍ଦିବ ବୁଝି-ପାରିଲା ନାହିଁ । ତା'ର ମନେ ପଡି ଯାଇଥିଲା ବର୍ଷକ ତଳର କଥା । ସେ ଭାବାବେଗରେ ଦିନେ ବିଦିଶାକୁ କହିଦେଇଥିଲା – 'ସାତ ଦିନ ପାଇଁ ଗାଁ କୁ ଯାଉଛ, ମୋତେ ଚିଠି ଲେଖିବ ।'

'କେମିତି ଲେଖିବି ? ଆମ ଘରେ କମ୍ପ୍ୟୁଟର୍ ନାହିଁ । ଆଖ ପାଖ କାହା ଘରେ ବି ନାହିଁ ।'

'ଇ-ମେଲ୍ କଥା ମୁଁ କହୁନି । ଚିଠି । ପୋଷ୍ଟ ଅଫିସ୍ ତ ଥିବ ଗାଁ ରେ ।'

'ଚିଠି !! ଆଜିକାଲି କିଏ ଲେଖେ ଚିଠି ? ମୋ ଚିଠି ତୁମ ପାଖରେ ପହଞ୍ଚିବା ଆଗରୁ ମୁଁ ଫେରି ଆସିଥିବି । ମୁଁ ବରଂ ଏସ୍.ଏମ୍.ଏସ୍. କରି ଦେବି । ହେଲା ?'

କିଛି ନ କହି ସତ୍ୟ ମୁଣ୍ଡ ଟୁଙ୍ଗାରି ଦେଇଥିଲା ସେଦିନ । ମନ ଭିତରେ କେଉଁଠି କିନ୍ତୁ ଟିକିଏ ଖଟକା ରହିଯାଇଥିଲା । ନିଜକୁ ଅବଶ୍ୟ ସାନ୍ତ୍ୱନା ଦେଇ କହିଥିଲା– ବିଦିଶା ଭୁଲ କହିନି । ଆଜିକାଲି ଚଠି ଆଉ ସମୟ ଅନୁସାରେ ପହଞ୍ଚେ କୋଉଠି ?

କିନ୍ତୁ ସେ ଯାହା ଦେଖୁଛି ଆଧୁନିକ ଯୁଗର ଧରଣ ଧାରଣ ବିଦିଶାଠୁଁ ବି ପାଦେ ଆଗକୁ ଯାଇସାରିଲାଣି । ଆଜିକାଲି ଦୁଇ ତିନି ବର୍ଷରେ ଜେନେରସନ୍

ବଦଳେ ବୋଧହୁଏ । ଏସ୍.ଏମ୍.ଏସ୍. ରହିଗଲାଣି କାହିଁ ପଛରେ । ଆଜିକାଲି 'ଟ୍ୱିଟର୍', 'ଫେସ୍‌ବୁକ୍' ମାଧ୍ୟମରେ ପ୍ରକାଶ୍ୟ ଭାବରେ ଭଲପାଇବାର ଘୋଷଣା କରିବାକୁ ହୁଏ । ଭଲପାଇବାକୁ ଆଗେଇ ନେବାକୁ ହୁଏ । ବିଶ୍ୱମୟ କରିବାକୁ ହୁଏ ।

ସତ୍ୟର ମୁଣ୍ଡ ବିନ୍ଧି ଉଠିଥିଲା । ସ୍କୁଟର୍ ଧରି ଘରକୁ ଫେରିବା ବେଳେ ସେ ମନକୁ ମନ କହିଥିଲା– ଆଉ ଯିବନି ସେ କମଳ କାନନକୁ । ଏ ଜେନେରସନ୍ ଭିନ୍ନ । ଅଠେଇଶ ବର୍ଷ ବୟସରେ ସତ୍ୟ ତଳ ପାହାଚରେ ରହି ଯାଇ ସାରିଲାଣି । ନୂଆପିଢିଠୁଁ କିଛି ଶିଖିବା ତା' ପକ୍ଷରେ ସମ୍ଭବନୁହଁ । କ'ଣ ଦରକାର ସେଠିକି ଯିବା ?

ଅଥଚ ଦିଲ୍ଲୀରେ ସାତ ଦିନର ଟ୍ରେନିଙ୍ଗ୍ କରି ସାରି ସେ ଯେତେବେଳେ ତା' ସହରକୁ ଫେରିଲା, ପାଦ ଦୁଇଟା ଟାଣି ହେଇଗଲା କମଳ କାନନ ଆଡକୁ । ଇଚ୍ଛା ଆଉ ମନ-ଢୋର୍‌ର ଟଣାଟଣିରେ ସମୟ ଟିକିଏ ଗଡିଗଲା, କିନ୍ତୁ ଅନ୍ଧାର ହେବା ଆଗରୁ ସେ ଠିକ୍ ଯାଇ ପହଞ୍ଚିଗଲା ବଗିଚା ପାଖରେ ।

ସ୍କୁଟର୍ ପାର୍କ କରୁ କରୁ ଥରେ ଚାରିଆଡେ ଆଖି ବୁଲାଇ ଆଣିଲା ସେ । ଆରେ ! ବଗିଚାର ଫାଟକ ଠେଲି ଭିତରେ ପାଦ ଦେଉଥିବା ଯୋଡିଟିକୁ ଦେଖିବା କ୍ଷଣି ହଠାତ୍ ମନ ଖୁସୀ ହେଇଗଲା ତା'ର । ପ୍ରେମ କରୁଥିବା କଲେଜର ଛାତ୍ରଛାତ୍ରୀ ଏମାନେ ଯେ ନୁହନ୍ତି, ବିବାହିତ ଦମ୍ପତ୍ତିଟିଏ । ନବ ବିବାହିତ ଦମ୍ପତ୍ତି ପୁଣି ।

'କମଳ କାନନ୍'ରେ ପଲିଟେକ୍‌ନିକ୍‌ର ଛାତ୍ରଛାତ୍ରୀମାନେ ଯେ କେବଳ ଆସନ୍ତି, ତା' ନୁହଁ । ବେଶ୍ କେତେ ଜଣ ବୟସ୍କ ଲୋକ ମଧ୍ୟ ଆସନ୍ତି ଏଠିକି । କିନ୍ତୁ ନବ-ବିବାହିତ ଦମ୍ପତ୍ତି ସତ୍ୟ ଏଠି କେବେ ଦେଖିନି ।

ଯୋଡିଟି ଯେ ନୂଆ ବାହା ହେଇଛନ୍ତି, ସେମାନଙ୍କର ବେଶ ପୋଷାକ, ହାବଭାବରୁ ପରିଷ୍କାର ଜଣା ପଡିଯାଉଥିଲା ।

ବସନ୍ତ ଶେଷ ନ ହେଉଣୁ ଜୋର ଗରମ ପଡି ସାରିଲାଣି ଏଠି । ଅଥଚ ସ୍ତ୍ରୀଟିର ଦେହରେ ଗାଢ ନୀଳ ରଙ୍ଗର ସିଲ୍‌କ୍ ଶାଢି । ପରିପାଟୀରେ ମଧ୍ୟ କୌଣସି ଅଭାବ ନାହିଁ । ମ୍ୟାଚଇଙ୍ଗ୍ ବ୍ଲାଉଜ୍ । ବ୍ଲାଉଜ୍‌ର ପଛ ବେକରେ ଚଳଚ୍ଚିତ୍ର ତାରକାର ଅନୁକରଣରେ କେତେ ରକମର ଫିତା ବନ୍ଧା । ଗୋଟିଏ ହାତରେ ଦୁଇ ଅଢେଇ ଡଜନ ଚକିମିକି କରୁଥିବା ଚୁଡି । ଆଉ ଅନ୍ୟ ହାତର କଟଟିରେ ସୁନେଲୀ ଘଡି ସାଙ୍ଗରେ ନାଲି ସୂତା ବନ୍ଧା । ଓଠରେ ଗାଢ ଲିପ୍‌ଷ୍ଟିକ୍ । ମୁହଁରେ ପ୍ରସାଧନ । ସୁନ୍ଦର ସିନ୍ଦୁର ଟେଲିଭିଜନ୍ ସିରିୟାଲ୍‌ର ନାୟିକାମାନଙ୍କ ଭଳି କପାଳକୁ ଓହ୍ଲେଇ ଆସିଛି । ସତେ ଯେମିତି ପବ୍ଲିକ୍ ପାର୍କ ନୁହଁ, କୌଣସି ବାହାଘରକୁ ଆସିଛି ପତ୍ନୀଟି ।

ପ୍ରାୟ ସତ୍ୟ ବୟସର ପତିଟି ବା କମ୍ କୋଉ ଗୁଣରେ । ଦେହରେ ଆକାଶୀ

ରଙ୍ଗର ସ୍ୟାଟିନ୍ ସାର୍ଟ୍ । ସାର୍ଟ ସାଙ୍ଗରେ ମ୍ୟାଚ୍ କରି ନୀଳ ଜିନ୍ ପ୍ୟାଣ୍ଟ୍ । ଡାହାଣ ହାତର କଚଟିରେ ସ୍ତ୍ରୀ ଭଳି ନାଲି ସୂତା ବନ୍ଧା । ବାଁ ହାତରେ ଘଣ୍ଟା । ଆଉ ଆଙ୍ଗୁଠିରେ ଦିଇଟା ସୁନା ମୁଦି ।

ଏମାନେ ଘରର କବାଟ ବନ୍ଦ କରି ଦେଇ ଭିତରେ ରହିବା କଥା । କିମ୍ବା ସହରର କୌଣସି କ୍ୟାଫେକୁ ବା ରେଷ୍ଟୋରାଁକୁ ଯିବା କଥା । କିଛି ନହେଲେ ଦୋକାନକୁ ଯାଇ କିଣାକିଣି କରିବା କଥା । ସର୍ବସାଧାରଣ ବଗିଚାରେ ଏମାନେ କରୁଛନ୍ତି କ'ଣ ?

ତେବେ ସତ୍ୟ ପାଇଁ ଭଲ ।

ଆଗେଇ ଯାଉଥିଲେ ସେମାନେ । ବୋଧହୁଏ ଖାଲି ବେଞ୍ଚର ଅନୁସନ୍ଧାନରେ । କିନ୍ତୁ ନିବିଷ୍ଟ ଭାବରେ କିଛି ଗୋଟାଏ କଥା ଚାଲିଥିଲା ସେମାନଙ୍କର ।

ସେମାନଙ୍କଠାରୁ କିଛିଟା ଦୂରତ୍ୱ ରଖି ଚାଲିଲା ସତ୍ୟ । କଥା କିଛି ତା' କାନକୁ ଯାଉ ନ ଥିଲା, କିନ୍ତୁ ସେ ଅବାକ୍ ହୋଇ ଦେଖୁଥିଲା ଯୋଡିଟିର ନିବିଷ୍ଟ କଥାର ଧରଣକୁ ।

କ'ଣ ଏତେ କଥା ଥାଏ କହିବାକୁ ? ବିଦିଶା ସାଙ୍ଗରେ ସେ କାହିଁକି ବେଶୀ କଥା କହି ପାରୁ ନ ଥିଲା ?

ନୂଆ ବାହା ହେଇଥିବା ଦମ୍ପତି, ସବୁ କଥା ତ ନୂଆ ହେଇଥିବ । ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ନିଜକୁ ନିଜେ ସାନ୍ତ୍ୱନା ଦେବା ଭଳି କହିଲା ସତ୍ୟ । ହୁଏତ ପତିଟି କହୁଥିବ ତା' ପରିବାର କଥା, ତା' ଚାକିରି କଥା, ସାଙ୍ଗମାନଙ୍କ କଥା । ଆଉ ସ୍ତ୍ରୀଟି ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ପାଇଁ କହୁଥିବ ପୋଲିସ୍ ଚାକିରି କରି ନାଁ କରିଥିବା ବଡ ଭାଇ ବା ଭିଣେଇଙ୍କ କଥା । କିମ୍ବା ବାହାଘରରେ ଦାମୀ ଉପହାର ଦେଇଥିବା ମଧ୍ୟ-ପ୍ରାଚ୍ୟ ନିବାସୀ କୋଉ କକେଇ ବା ମାମୁଙ୍କ କଥା ।

ହଠାତ୍ କାହିଁକି ସତ୍ୟର ବହୁତ କୌତୁହଳ ହେଲା କାନ ପାତି ସେମାନଙ୍କର କଥା ଶୁଣିବା ପାଇଁ । ଜୋର୍‌ରେ ପାଦ ପକାଇଲା ସେ । ବଗିଚା ଭିତରେ ବସିବାର ଜାଗା ଖୋଜି ଖୋଜି ସେମାନେ ଚାଲିଛନ୍ତି । ପଛରେ କିଛିଟା ଦୂରତ୍ୱ ରଖି ଚାଲିଛି ସତ୍ୟ । ଦୂରତ୍ୱ ଯଦି ସାମାନ୍ୟ କମ୍ ହୋଇ ଯାଇ ପାରନ୍ତା, ତା'ହେଲେ କାନରେ ସେମାନଙ୍କର ଗପସପର କିଛି ଅଂଶ ତା' କାନରେ ପଡନ୍ତା । ଖୁସି ଗପ ଠିକ୍ ନୁହଁ, ଖୁବ୍ ଅନ୍ତରଙ୍ଗ ଭାବରେ କୌଣସି ଆଲୋଚନା । ଏଇଟା ହୁଏତ ଭଲ ପାଇବାର ପ୍ରକୃତ ରୂପ ଯାହା କି ସତ୍ୟର ଅଜଣା ରହିଯାଇଛି ।

ସତ୍ୟ ନିଜର ଗତି ସାମାନ୍ୟ ବଢେଇଲା । ହୁଏତ ବିନା ଦୌଡ଼ରେ ସେମାନଙ୍କ

କଥା ଶୁଣିବା ଭଳି ପାଖାପାଖି ସେ ଆସି ପାରି ନ ଥାଆନ୍ତା, କିନ୍ତୁ ରହିଗଲେ ଦମ୍ପତିଟି । ଚନାବାଦାମବାଲାଠୁଁ ଠୁଙ୍ଗାଏ ଚନାବାଦାମ କିଣିଲେ ସେମାନେ । ଏଥର ଯାଅ । ଯାଅ । ପୁଣି ମନେ ମନେ ସତ୍ୟ ସେମାନଙ୍କୁ ତାଗିଦା କଲା । ଏମିତି ଯଦି ବାଦାମବାଲା ପାଖରେ ବେଶୀ ସମୟ ରହିଯିବେ, ତା'ହେଲେ ସତ୍ୟ ସେମାନଙ୍କୁ ଟପିଯିବାକୁ ବାଧ ହେବ । ଏବେ ଯାହାବା ଭାବଭଙ୍ଗୀ ଟିକିଏ ଆଖିରେ ପଡୁଛି, ସେତକ ବି ଉହ୍ୟ ରହିଯିବ । ଯାଅ । ଯାଅ ।

ନା, ହାତରେ ଚନାବାଦାମ ଠୁଙ୍ଗା ଧରି ଠିଆ ହୋଇ ରହିଗଲେ ସେମାନେ । କିଛି ସମୟ ଆଗର କଥା ଚାଲିଛି । ଦୁହିଁଙ୍କ ଆଖି ଦୁହିଁଙ୍କ ଉପରେ । ବଗିଚାର ଲୋକ ଭିଡ ଆଖିରେ ଯେମିତି ପଡୁନି ।

ଆଉ ଉପାୟ ନାହିଁ ସତ୍ୟର । ଟପି ଯିବାକୁ ହେବ ଏଥର । ସେମାନଙ୍କ ପାଖ ଦେଇ ଚାଲି ଯାଉ ଯାଉ ହଠାତ୍ ପତ୍ନୀଟିର ସ୍ୱର ତା' କାନରେ ପଡିଲା । 'ଯାଃ, ଏମିତି କିଏ କରେ ? ନା ଏମିତି କିଏ କହେ !'

'ମୁଁ କ'ଣ ଆଉ ମିଛ କହୁଛି ! ସେ କହିଲା ପରା ।'

'ତମେ ଠିକ୍‌ରେ ଶୁଣି ନ ଥିବ ମ । କି ବୁଝି ନ ଥିବ ।'

'ମୋ କଥାରେ ବିଶ୍ୱାସ ହେଉନି ?'

କି କଥା ? ନିଜର ନିଷ୍ଠାପତା ପ୍ରମାଣ କରିବାକୁ ଯାଇ କୋଉ ବନ୍ଧୁର ପ୍ରେମ କାହାଣୀ ? ନା, ନିଜ ପ୍ରେମ କାହାଣୀକୁ ରଙ୍ଗଦେଇ ଅବତାରଣା କରୁଛି ସ୍ୱାମୀଟି ?

ନା, ସତ୍ୟ ପକ୍ଷରେ ଆଉ ଅଧିକ କିଛି ଶୁଣିବା ସମ୍ଭବ ହେବ ନାହିଁ ।

'ବାବୁ, ବାଦାମ ।' ନବବିବାହିତା ଦମ୍ପତିଙ୍କୁ ଚିନା ବାଦାମ ବିକ୍ରି କରି ସାରି ତା' ପାଖକୁ ଚାଲି ଆସି ଆଶାୟୀ ଆଖିରେ ପଚାରିଲା ସତର ଅଠର ବର୍ଷର ଚିନାବାଦାମବାଲାଟି ।

'ଦେ ।' ପକେଟରୁ ଟଙ୍କା କାଢିଲା ସତ୍ୟ ।

ହାତରେ ଚନାବାଦାମ ଠୁଙ୍ଗାଟି ଧରି ସେ ଚାଲିଗଲା ତା'ର ନିର୍ଦ୍ଧାରିତ ସ୍ଥାନକୁ । ପଥର ଉପରେ ଥିବା ଥୁଣ୍ଟା ଗଛ ତଳକୁ । ଦମ୍ପତିଟି ଏବେ ମଧ ସେଇଠି ଠିଆ ହୋଇ କଥା କହୁଛନ୍ତି । ହୁଏତ ସେଇଠୁ ଫେରିଯିବେ ସେମାନେ । ଉପାୟ କ'ଣ ଅଛି ? ପାର୍କ୍‌ର ସବୁ ବେଞ୍ଚ୍ ଆଜି ଭର୍ତ୍ତି ।

ହେଲେ ନା, ଫେରି ଗଲେନି ଯୋଡିଟି । ଧୀର ପାଦରେ ଚାଲିଛନ୍ତି ପାର୍କ୍ ଶେଷକୁ । ସେମାନଙ୍କୁ ଜଣା ନାହିଁ ଯେ ଆଉ ଟିକିଏ ଘୁରିଗଲେ ବଗିଚା ଶେଷ ।

ଆରେ, ଆରେ... ଚକିତ ହୋଇଗଲା ସତ୍ୟ । ଦମ୍ପତିଟି ଯେ ପଥର ଆଡକୁ

ମୁହାଁଇଲେଣି ! ସତ୍ୟ ଯେମିତି ସେମାନଙ୍କ ଆଖିରେ ହିଁ ପଡୁନି । କିମ୍ବା ଖାତିର ହିଁ ନାହିଁ । ସତ୍ୟଠୁଁ ଅଳ୍ପ ଛାଡି ବସିଲେ ସେମାନେ ।

ଆଉ ସେମାନଙ୍କ କଥା ଶୁଣିବାରେ ଅସୁବିଧା ନାହିଁ । ସତ୍ୟ ଓଠରେ ସାମାନ୍ୟ ହସ ଖେଳିଗଲା । ପାଟିରେ ବାଟୁଳି ବାଜୁନି ସେମାନଙ୍କର । ଏମିତି କଥା କହି ଚାଲିଛନ୍ତି ଯେମିତିକି ଆସନ୍ତା କାଲି କଥା କହିବା ଚଳଣୀଟା ଉଠିଯିବ । ଆଉ ହସ ? ହସ ନୁହଁ ସତେକି ହସର ଝରଣା । ଆଖି ନ ଥିବା ମଣିଷଟିଏ ବି ଦୃଢ ଭାବରେ କହିଦେବ, ଆଉ ଯାହା ଥାଉ ନ ଥାଉ ଭଲ ପାଇବାର ଅଭାବ ଅନ୍ତତଃ ଦୁହିଁଙ୍କ ପାଖରେ ନାହିଁ ।

ସତ୍ୟର ଆଜି ବାସ୍ତବରେ ତାଲିମ ହେବ । ସଜାଗ ହୋଇ ବସିଲା ସେ ।

'ତମେ ମୋତେ ଆଉ ଥରେ ମୂଳରୁ କହ, କ'ଣ ହେଲା ।' ସ୍ୟାଟିନ୍ ସାର୍ଟ ଆଖିରେ ଆଖି ରଖି ସ୍ତ୍ରୀ ପଚାରିଲା ।

'କାହିଁକି କହିବି ?' ସ୍ୱାମୀ ସ୍ୱରରେ ଅଭିମାନ । 'ତୁମେ ତ ମୋର କୋଉ କଥା ବି ବିଶ୍ୱାସ କରୁନ ।'

ସ୍ତ୍ରୀ ଘୁଞ୍ଚି ଆସିଲା ପାଖକୁ । ହାତକୁ ଜାବୁଡି ଧରି କହିଲା, 'ତମ କଥା ପୁଣି ବିଶ୍ୱାସ କରିବିନି ତ ଆଉ କାହା କଥା ବିଶ୍ୱାସ କରିବି ? ... କୁହନା କ'ଣ ହେଲା ସେଦିନ ।'

'ସତରେ ଶୁଣିବ ?'

'ଶୁଣିବି । ଶୁଣିବି ।' ସ୍ତ୍ରୀ ଆଖିରେ ଆଗ୍ରହ ।

ବିଦିଶା ବି ହୁଏତ ଏଇମିତି ଆଗ୍ରହରେ ଚାହିଁଥିବ ସତ୍ୟ ମୁହଁରୁ ମିଠା ମିଠା ଚିତ୍ତାକର୍ଷକ କଥା ଶୁଣିବାକୁ । ହେଲେ ସେଭଳି କଥା କହିବାର ଶୈଳୀ ସତ୍ୟକୁ ଜଣାଥିଲା କୋଉଠି ? ସ୍ୟାଟିନ୍ ସାର୍ଟ ବୋଧହୁଏ ପ୍ରିୟାକୁ ମୋହିତ କରିବା ଭଳି କଥା କହିବାରେ ଦକ୍ଷ । ସେଇଥିପାଇଁ ନା ସ୍ତ୍ରୀଟି ମୁହଁରେ ଆଗ୍ରହ । ଓଠରେ ହସ ।

କ'ଣ କଥା କହୁଛି ସ୍ୟାଟିନ୍ ସାର୍ଟ ? ସତ୍ୟ ସାମାନ୍ୟ ଡାହାଣକୁ ଘୁଞ୍ଚି ଆସିଲା ।

'ବୁଝିଲ, ଅଟୋରେ ଯାଉଥିଲା ଲୋକଟା । ସିଗ୍‌ନାଲ୍ ପାଖରେ ଯେମିତି ରହିଛି, ପଛରୁ ଦି ଦି'ଟା ମଟର୍‌ସାଇକେଲ୍‌ରେ ଆସି ତା' ଉପରକୁ ଝାମ୍ପିପଡିଲେ ତିନିଜଣ । ଲୋକଟା କୁଆଡେ ତାଙ୍କର ଭଉଣୀକୁ ପ୍ରେମ କରୁଥିଲା । ଅଟୋରୁ ଟାଣି ଆଣି ତାକୁ ସେ କି ମାଡ ! ରକ୍ତାକ୍ତ କରି ଦେଲେ ବିଚାରାଟାକୁ ସେମାନେ ।'

'ସତେ ? ମରିଗଲା ଲୋକଟା ?'

'ଦେଖଣାହାରୀ ଅଟକେଇ ଦେଇ ନ ଥିଲେ ମରିଯାଇଥାଆନ୍ତା ।'

'ଉଃ ମା', ମୁଣ୍ଡ ଫାଟି ଯାଇଥିଲା ? ଗୋଡ ହାତ ଭାଙ୍ଗି ଯାଇଥିଲା ?' ସ୍ତ୍ରୀଟିର ଆଖିରେ ଯେଉଁ ଭାବଟା ଥିଲା, ତା'ସମବେଦନା ନୁହଁ, ନିଛକ କୌତୁହଳ ।

'ହାତଟା ଯେମିତି ବଙ୍କି କରି ଥିଲା, ଭାଙ୍ଗିଥିଲା ନିଶ୍ଚୟ । ମୁଣ୍ଡ ଫାଟିଥିଲା କି ନାହିଁ କହିପାରିବିନି । ହେଲେ ଆଖିଟା ରକ୍ତ ଜୁଡୁବୁଡୁ । କିଏ ଜାଣେ ଆଖି ଥିଲା କି ଯାଇଥିଲା !'.

ଉଠିଗଲା ସତ୍ୟ । ନା, ଆଉ ବସି ପାରିବନି ଏଠି । ମାଡ ! ରକ୍ତ !! ସେ ଏତେଦିନ ଧରି ଜାଣିଥିଲା ଯେ ଆକାଶ, ବିହଙ୍ଗ, ଜହ୍ନ, ବସନ୍ତ ନେଇ ପ୍ରେମାଳାପ ହୁଏ । ହେଲେ ଏଠି ତ ଅନ୍ୟରକମର ଆବେଗ !

ଦମ୍ପତ୍ତିଟିର ପାଖ ଦେଇ ଚାଲି ଯାଉ ଯାଉ ତା' ଆଖିରେ ଠିକ୍ ପଡିଥିଲା ସ୍ତ୍ରୀଟିର ବିଭୋର ଦୃଷ୍ଟି ।

ଏଇ ତା'ହେଲେ ଏକବିଂଶ ଶତାବ୍ଦୀର ପ୍ରେମ !

ବିଦିଶା ଠିକ କହିଥିଲା । ସେ ଅଯୋଗ୍ୟ । ଆଧୁନିକ ଯୁଗର ଅଯୋଗ୍ୟ ମଣିଷ ।

ବାହାରେ ବେଶ ଅନ୍ଧାର ହୋଇସାରିଲାଣି । କମିଗଲାଣି ରାସ୍ତାର ଭିଡ । ଏବେ ଘରକୁ ଯାଇ ଘଣ୍ଟାଏ ଦୁଇ ଘଣ୍ଟା ଟେଲିଭିଜନ୍ ଦେଖି ପାଖ ଦୋକାନରୁ ଆସିଥିବା ଟିଫିନ୍ କ୍ୟାରିଅର୍‌ର ରୁଟି ତରକାରି ଖାଇ ସତ୍ୟ ଶୋଇ ଯାଇପାରିବ । କଟି ଯିବ ଦିନଟାଏ ।

ହେଲେ କ'ଣ ଯେ ହେଲା, ଗୋଟାଏ ହୋସ୍‌ରେ ସେ ସ୍କୁଟର୍ ବୁଲାଇଲା ଅନ୍ୟ ଆଡକୁ । କଚେରି ପାଖରେ ନୂଆ ହେଇ ବହି ଦୋକାନଟିଏ ଖୋଲିଛି । ସତ୍ୟ ଶୁଣିଛି ରାତି ଡେରି ଯାଏ ଖୋଲା ରହେ ସେଇଟି । ଆଜି ମନ ଭରି ସମୟ କଟେଇବ ସେଠି ସେ । ବହୁତ ହେଇଗଲା ଭଲପାଇବାର ତାଲିମ । ନିଜ ପୃଥିବୀରେ ଏଥରକ ଆନନ୍ଦରେ ରହିବ ସେ । ତା' ଜୀବନରେ ଆବଶ୍ୟକତା ନାହିଁ କୌଣସି ବିଦିଶାର ।

ନୂଆ ବହିର ମାଦକ ଭରା ନିଶାରେ ସମୟ କଟି ଯାଉଥିଲା ସତ୍ୟର ।

'ଏକ୍‌ସ୍‌କ୍ୟୁଜ୍ ମି ।'

ସତ୍ୟ ଆଖି ଉଠାଇଲା । ସାମ୍ନାରେ ଉତ୍କଣ୍ଠା ନେଇ ଠିଆ ହେଇଛନ୍ତି ଜଣେ । ଦେହରେ ସାଲୁଆର୍ କମିଜ । ମୁହଁରେ ଟୋପାଟିଏ ଛଡା ଆଉ କୌଣସି ପ୍ରସାଧନ ନାହିଁ ।

'କୁହନ୍ତୁ ।'

'ଆପଣ କ'ଣ ଏ ସବୁ ତକ ବହି କିଣିବେ ?' ସତ୍ୟ ପାଖରେ ରଖା-

ହେଇଥିବା ବହି ଥାକକୁ ଦେଖାଇ ଝିଅଟି କହିଲା ।

ଏ କି ଅଦ୍ଭୁତ ପ୍ରଶ୍ନ ? ସେ ବହିତକ କିଣିବ କି ନ କିଣିବ, ସେଥିରେ ଝିଅଟିର ଯାଏ ଆସେ କ'ଣ ? 'କାହିଁକି ପଚାରୁଛନ୍ତି ?'

'ନା, ମାନେ ...' ହଠାତ୍ ଲଜ୍ଜିତ ହୋଇ ପଡିଲା ଝିଅଟି । 'ମାନେ ... ଆପଣ ଗ୍ରାହାମ୍ ଗ୍ରିନ୍‌ଙ୍କର ଏଇ ଯୋଉ ବହିଟା ରଖିଛନ୍ତି, ସେଇଟା ମୋର ଦରକାର ଥିଲା । ସେଲ୍‌ସ୍ ଗାର୍ଲ୍ ଜଣକ କହିଲେ ଦୋକାନରେ ଏଇ ଏକମାତ୍ର କପି । ... ମୋର କାଲି କ୍ଲାସ୍ ଅଛି ।'

'କ୍ଲାସ୍ ?'

'ମୁଁ ଇଂଲିଶ ପଢାଏ ।'

'ଆପଣ ଲେକ୍‌ଚରର୍ !'

'ହଁ । ... କାହିଁକି ?'

'ଆଦୌ ଜଣା ପଡୁନାହାନ୍ତି । ଛାତ୍ରୀ କହି ଦେଇଥିଲେ ବି ମୁଁ ବିଶ୍ୱାସ କରିଯାଇ ଥାଆନ୍ତି । ... ନେବେ ଯଦି ନିଅନ୍ତୁ ବହିଟା । ମୁଁ ପରେ କେବେ କିଣି ନେବି । ମୋର ତ ଆଉ କାଲି କ୍ଲାସ୍ ନାହିଁ ।' ସତ୍ୟ କେବେଠୁଁ ଏଇଭଳି କଥା କହିଲାଣି !

ହସିଲା ଝିଅଟି । 'ଥ୍ୟାଙ୍କ୍‌ସ୍ । ... ଏଇ ବହିଟା ଆଉଟ୍ ଅଫ୍ ପ୍ରିଣ୍ଟ୍ । କେବେଠୁଁ ଖୋଜୁଛି । ଏହା ଭିତରେ ଦୋକାନକୁ ଆସିବ ବୋଲି ମୋର ମନେ ହୁଏ ନାହିଁ ।'

'ଓ ।'

'ଦେଖନ୍ତୁ, ମୋର ଖାଲି ଏଇ ସପ୍ତାହକ ପାଇଁ ବହିଟା ଦରକାର । ତା'ପରେ ମୁଁ ବହିଟା ଗୋଟାଏ ପ୍ୟାକେଟ୍‌ରେ ରଖି ଏଠି କ୍ୟାଶିଅର୍‌ଙ୍କୁ ଦେଇ ଦେଇ ଯିବି । ଆପଣ ଆସି ବରଂ ତାଙ୍କଠୁଁ ନେଇ ଯିବେ । ଆପଣଙ୍କ ନାଁ – ?'

'ମୁଁ ସତ୍ୟ । – ଆପଣ ?'

'ମୋ ନାଁ ସୁବର୍ଣ୍ଣା ।'

'ଆଚ୍ଛା, ଆପଣ କ'ଣ ପଢାନ୍ତି ?'

'ଟ୍ୱେଣ୍ଟିଏଥ୍ ସେଞ୍ଚୁରି ଫିକ୍‌ସନ୍ ।'

'ସତରେ ? ଗ୍ରିନ୍ ଛଡା ଆଉ କୋଉ କୋଉ ଲେଖକଙ୍କ ବହି ଅଛି କୋର୍ସ୍‌ରେ ?'

'ନା, ଏଗୁଡାକ ଠିକ୍ କୋର୍ସ୍‌ର ବହି ନୁହଁ । ମୁଁ କେତେଟା ଉଦାହରଣ ମୋ' କ୍ଲାସ୍‌କୁ ଦେବାକୁ ଚାହେଁ ।... ହେଲେ, ଆପଣ ଏସବୁ କାହିଁକି ପଚାରୁଛନ୍ତି ?

ଆପଣଙ୍କର ବି ଏଇଥିରେ ଇଣ୍ଟରେଷ୍ଟ କି ?'

'ହଁ ।'

'ସତରେ ?' ଉଲ୍ଲସିତ ଭାବରେ ସୁବର୍ଣ୍ଣା ପଚାରିଲା, 'ଆପଣ ବି କ'ଣ କଲେଜରେ ପଢାନ୍ତି ?'

'ନା । ମୁଁ ଇଞ୍ଜିନିଅର୍ । ମେକାନିକାଲ୍ ଇଞ୍ଜିନିଅର୍ ।'

'ଇଞ୍ଜିନିଅର୍ ହେଇ ଲିଟେରେଚର୍‌ରେ ଏତେ ଆଗ୍ରହ କେମିତି ?'

'ବାପାଙ୍କର ଆଗ୍ରହ ଥିଲା । ବହି କିଣି ଘରେ ଗଦାଉ ଥିଲେ । ପିଲା ଦିନରୁ ପଢି ପଢି ଆଗ୍ରହ ହେଇଯାଇଛି ।'

'ମୋର ବି ଠିକ୍ ସେଇ ଏକା କଥା । ବାପାଙ୍କ ଯୋଗୁଁ ...'

ଦୁହିଁଙ୍କର କଥା ଯେମିତି ଶେଷ ହେଉ ନ ଥିଲା । ଏଣେ ଦୋକାନ ବନ୍ଦ କରିବାକୁ ଦୋକାନ ମାଲିକ ବ୍ୟସ୍ତ ହୋଇ ପଡିଲେଣି । ଯିବାକୁ ହେବ ।

ବହିଗୁଡିକର ଟଙ୍କା ଦେଇ ସତ୍ୟ ଓ ସୁବର୍ଣ୍ଣା ବାହାରକୁ ଆସିଲେ । ହାତରେ ଚାବି ଧରି ନିଜର ସ୍କୁଟି ପାଖକୁ ଯାଉ ଯାଉ ସୁବର୍ଣ୍ଣା କହିଲା, 'ମୁଁ ଆସନ୍ତା ଶନିବାର ବହିଟା ରଖି ଦେଇ ଯିବି କ୍ୟାଶିଅର୍‌ଙ୍କ ପାଖରେ । ଆପଣ କିନ୍ତୁ ମନେ କରି ନେଇ ଯିବେ ।'

'କ୍ୟାଶିଅର୍ କାହିଁକି ? ଶନିବାର ଦିନ ମତେ ହିଁ ଦେଇ ଦେବେ ବହିଟା ।'

'ଆପଣଙ୍କୁ ! କେମିତି ?' ଅବୁଝା ଭାବରେ ସତ୍ୟ ମୁହଁକୁ ଚାହିଁଲା ସୁବର୍ଣ୍ଣା ।

'ବହି ଦୋକାନ ପାଖରେ ଏଇ କ୍ୟାଫେଟା ଦେଖୁଛନ୍ତି ? ଏଇଟା ବି ନୂଆ ହେଇଛି ଏଠି । ଶନିବାର ଦିନ ଚାରିଟା ବେଳେ ଯଦି ଏଠିକି ଆସନ୍ତେ, ତା'ହେଲେ ମୋ ହାତରେ ବହିଟା ଦେଇ ଦେଇ ପାରନ୍ତେ । ଏକାଠି କପେ କପେ କଫି ବି ପିଆ ହେଇ ଯାଆନ୍ତା ।'

କଥାଟି କହି ଦେଇ ସତ୍ୟ ନିଜେ ଆଶ୍ଚର୍ଯ୍ୟ । ଏଇଭଳି କଥା କହିବା ତାକୁ ଶିଖାଇଲା କିଏ ?



# ପ୍ରଶ୍ନ

ହୁସେନ୍ ସାଗର ଉପରେ ସକାଳର ସୂର୍ଯ୍ୟକିରଣ ତୀର୍ଯ୍ୟକ୍ ଭାବରେ ଆସି ପଡିବା ପୂର୍ବରୁ ଶୁଭ୍ରାର ଦିନ ଆରମ୍ଭ ହୋଇଯାଏ । ଆଖି ଖୋଲିବା ପର ମୁହୂର୍ତ୍ତଠାରୁ, ଭଲ କରି ସକାଳ ହେବାର ଢେର୍ ଆଗରୁ, ସେଇ ଯେଉଁ ତାକୁ ଟେକି ନେଇ ସିଂହାସନ ଉପରେ ବସେଇ ଦିଆ ହୁଏ, ଆଉ ଓହ୍ଲେଇବାର ସୁଯୋଗ ନ ଥାଏ ତା'ର ରାତି ଡେରି ପର୍ଯ୍ୟନ୍ତ । କିଏ ଆସି କୁର୍ନିସ୍ କରିଯାଏ ତ କିଏ ପୁଣି ମୁଣ୍ଡ-ନୁଆଁଇ ତା'ର ବିଚାର ମାନି ନିଏ । କିଏ ପୁଣି ଅର୍ଜି ପେସ୍ କରେ, ଆଉ କିଏ ଦୁଇ ହାତ ପାତି ମହାରାଣୀଙ୍କ ଶୁଭ ଦୃଷ୍ଟି ପାଇବା ଆଶାରେ ଆଶାୟୀ ହୋଇ ବସି ରହେ । ଗତ କେତେ ବର୍ଷ ଧରି ଚାଲିଛି ଏଇମିତି, ଏହା ଭିତରେ ବନ୍ଦ ହେବାର କୌଣସି ସୁରାକ୍ ମଧ୍ୟ ସେ ପାଇ ନାହିଁ ।

ଶୁଭ୍ରା ଜାଣେ ଯେ ସେ ଆଙ୍ଗୁଠି ନ ଉଠେଇଲେ, ଆଖି ନ ଟେକିଲେ, ପତ୍ରଟିଏ ବି ହଲିବନି ତା' ସାମ୍ରାଜ୍ୟରେ । ପ୍ରଥମ ପ୍ରଥମ ଆଶ୍ଚର୍ଯ୍ୟ ଲାଗୁଥିଲା, ସ୍ୱପ୍ନ-ଅଙ୍କା ଛବି ଭଳି ମନେ ହେଉଥିଲା ସବୁ କିଛି, ହେଲେ ଏବେ ନିୟମରେ ପଡିଯାଇଛି । ତା'ଛଡା ଭଲ ଲାଗେନି ବୋଲି ସେ ଛାତିରେ ହାତ ରଖି କହିପାରିବ କି ?

ତା' ବୟସ ଏବେ ଛବିଶ । ବାହାହେଇ ଏ ଘରକୁ ସେ ଯେତେବେଳେ ଆସିଲା, ସେତେବେଳେ ତା' ବୟସ ବାଇଶ । ବାଇଶ-ପୂର୍ବର ଜୀବନ ସାଙ୍ଗରେ ବାଇଶ-ପରର ଜୀବନ ତୁଳନା କରି ସେ ବେଳେବେଳେ ଅବାକ୍ ହୁଏ । ଏଭଳି ପରିବର୍ତ୍ତନ ଯେ ତା'ଭଳି ଜଣଙ୍କ ପୃଥିବୀରେ ସମ୍ଭବ, ସେକଥା ହୁଏତ ସ୍ୱୟଂ ଭଗବାନ୍ ଆସି ତାକୁ କହି ଯାଇଥିଲେ, ସେ ବିଶ୍ୱାସ କରି ନ ଥାଆନ୍ତା । ବଙ୍କା ହସଟିଏ ହସି ଦେଇ କଥା ଆଡେଇ ଦେଇଥାଆନ୍ତା । ଅବାକ୍ ହେବାର କିଛି ନାହିଁ, ବାରବର୍ଷ କାଳ ଗୋଟିଏ ଆବଦ୍ଧ ଅନ୍ଧକାର କୋଠରୀ ଭିତରେ ରହିଯିବା ପରେ ଆଲୁଅର ସାମାନ୍ୟ ଆଭାସ ଅବିଶ୍ୱାସ୍ୟ ମନେ ହୁଏ । ଆଉ ଏଠି ତ ହାଲୋଳମୟ ଜଗତ !

ଶୁଭ୍ରାକୁ ଯେତେବେଳେ ଦଶ ବର୍ଷ ବୟସ, ସେତେବେଳେ ହଠାତ୍ ଦିନେ ତା' ବାପା ପଙ୍ଖାରୁ ଝୁଲି ଆତ୍ମହତ୍ୟା କରିଦେଲେ । କିଏ କହିଲା ଡିପ୍ରେସନ୍‌ରେ ଭୋଗୁଥିଲା ବିଚରା, କିଏ କହିଲା ପର ସ୍ତ୍ରୀ ସାଙ୍ଗରେ ସମ୍ପର୍କ ଥିଲା, ଆଉ ପୁଣି

କିଏ କହିଲା ଅଫିସ୍‌ରେ ଟଙ୍କା ଗୋଳମାଳ କରିଥିଲା – ଏବେ ଧରା ପଡି ଜେଲ୍ ଯିବାର ଭୟ ରହିବାରୁ ଲଜ୍ଜାରେ ଏଇ କାମଟି କଲା । ସତ ମିଛ ଜାଣିବା ବୟସ ଶୁଭ୍ରାର ସେତେବେଳେ ନ ଥିଲା, ତେବେ ସେ ଏତିକି ବୁଝିଗଲା ଯେ ଏତେଦିନ ସେମାନେ ଯେଉଁ ମଧ୍ୟବିତ୍ତ ବର୍ଗରେ ରହି ଆସିଥିଲେ ତା' କେବଳ ବାପାଙ୍କ ଚାକିରି ଜୋର୍‌ରେ । ଏବେ ତାକୁ ଓ ତା' ମା' କରୁଣାଙ୍କୁ ସେ ପାହାଚରୁ ତଳକୁ ଖସି ଆସିବାକୁ ହେବ । ବେଶ୍ ବେଶ୍ ତଳକୁ । ଦାରିଦ୍ର୍ୟର ଘେର ଭିତରକୁ ।

ମାତ୍ର କେଇଟା ଦିନ ଭିତରେ ଶୁଭ୍ରାର ପୃଥିବୀ ବଦଳି ଗଲା । ଯା'ର ତା'ର କଥାରୁ ସେ ବୁଝିଗଲା ଯେ ବାପାଙ୍କ ରୋଜଗାର ଯେ କେବଳ ବନ୍ଦ ହୋଇଗଲା, ତା' ନୁହଁ, ଯାହା ସଞ୍ଚୟ ଥିଲା, ବା ଯାହା ସବୁ ମିଳିବାର ଥିଲା, ସେ ଆଶା ମଧ୍ୟ ଗଲା । ଆତ୍ମହତ୍ୟା ଯୋଗୁଁ ଇନ୍‌ସ୍ୟୁରାନ୍‌ସ୍ କମ୍ପାନୀ ଟଙ୍କା ଦେଲା ନାହିଁ । ଅଫିସ୍‌ର ଗୋଳମାଳ ଯୋଗୁଁ ବାକୀ ରହିଥିବା ଟଙ୍କା ମଧ୍ୟ ଅଫିସ୍‌ରୁ ମିଳିଲା ନାହିଁ । ଚାକିରି ଜୀବନ କାଳ ଭିତରେ କିଛି ସଞ୍ଚୟ ଥିଲା, ସେତକ ବାପା ଆତ୍ମହତ୍ୟା କରିବାର କିଛି ସପ୍ତାହ ଆଗରୁ ଦୂର ସହରରେ ରହୁଥିବା ଜଣେ ଅନାତ୍ମୀୟା ମହିଳାଙ୍କ ନାମରେ କରି ଦେଇଥିଲେ ।

ମା'ଙ୍କୁ ପଚାରିବାକୁ ଯାଇଥିଲା ସେ – 'ମା', ରକ୍ଷିତା କ'ଣ ?'– ହେଲେ ମା'ଙ୍କର ରଙ୍ଗହୀନ ମୁହଁକୁ ଦେଖି ସେକଥା ସେଇଠି ରହି ଯାଇଥିଲା ।

ଶୁଭ୍ରାର ମା'ଙ୍କର ଚାକିରି କରିବାଭଳି ଯୋଗ୍ୟତା ନ ଥିଲା, ପର ଘରେ ବାସନ ମାଜି ବା ରୋଷେଇ କାମ କରି ଚଳିବା ପାଇଁ ମାନସିକ ପ୍ରସ୍ତୁତି ମଧ୍ୟ ନଥିଲା । ଗାଁରେ ରହୁଥିବା ଦୁଇଭାଇଙ୍କର ଭିକ୍ଷାକୁ ଆଶ୍ରୟ କରି ତାଙ୍କର ଦିନ କଟିଯାଇଥିଲା । ମୁଣ୍ଡ ଉପରେ ଛୋଟିଆ ହେଉ ପଛକେ ପୂର୍ବପୁରୁଷଙ୍କର ଚାଳଟିଏ ରହିଯାଇଥିଲା, ସେଇ ଯାହା ଭରସା । ଦେହର ପୋଷାକ ଦୁଇରୁ ତିନି କେବେ ହେଉ ନ ଥିଲା, ପାଦ ପାଇଁ ହଳଟିଏ ଚଟି, ସୀମିତ ଶାଗ ପଖାଳର ନିୟମିତ ରୁଟିନ୍ – ତା'ରି ଭିତରେ ଯେ ଶୁଭ୍ରାର ପାଠ ବନ୍ଦ ହେଲା ନାହିଁ, ସେଇଟା ହିଁ ଆଶ୍ଚର୍ଯ୍ୟର କଥା ।

ବି.ଏ. ପରୀକ୍ଷାର କିଛି ଦିନ ପରେ କେବେ ଭଲ-ମନ୍ଦ ପଚାରୁ ନଥିବା ବସୁଧା ମାଉସୀ ହଠାତ୍ କରି ଆସି ପହଞ୍ଚିଥିଲେ ତାଙ୍କ ଘରେ । ନିଜ ମାଉସୀ ନୁହଁ, ସାଇ ପଡିଶାରେ ଘର ବୋଲି ମାଉସୀ ଡାକିବା କଥା । ସେ ଆସିଥିଲେ ବାହାଘର ପ୍ରସ୍ତାବ ନେଇ । ତାଙ୍କ ଭାଇର ପୁଅ । ପରିବାରଟି ସ୍ୱଚ୍ଛଳ, ନିଜ ବ୍ୟବସାୟ ଅଛି, ହାଇଦ୍ରାବାଦ୍‌ରେ ରହନ୍ତି । କେବଳ ଭଲ ଝିଅଟିଏ ଦରକାର ସେମାନଙ୍କର । ଜାତି, ଗୋତ୍ର, ସାମାଜିକ ସ୍ଥିତି – ଏସବୁରେ ସେମାନଙ୍କର ବିଶ୍ୱାସ ନାହିଁ ।

କରୁଣା ମୁହଁ ଘୁରାଇ ନେଇଥିଲେ । ଶଙ୍ଖା ସିନ୍ଦୁର କିଣିବାର ସାମର୍ଥ୍ୟ ନାହିଁ, ସେ ପୁଣି ଝିଅର ବାହାଘର କରିବେ !

'ତୁମେ ବାହାଘର କରିବ ନାହିଁ, କରୁଣା ନାନୀ, ସେମାନେ କରିବେ । କହିଲି ପରା କେବଳ ଭଲ ଝିଅଟିଏ ଦରକାର ସେମାନଙ୍କର । ଆଉ ଶୁଭ୍ରାକୁ ତ ମୁଁ ସେଇ ପିଲାଦିନରୁ ଦେଖୁଛି । ତା'ରି ବିଷୟରେ ମୁଁ କହିଥିଲି ଭାଇ ଭାଉଜଙ୍କୁ । ସବୁ ଶୁଣି ସେମାନଙ୍କର ବହୁତ ଆଗ୍ରହ ।'

'ପୁଅଟି କରେ କ'ଣ ?'

ବସୁଧା ମୁହଁରେ ସାମାନ୍ୟ ଇତସ୍ତତଃତା । 'ଚାକିରି କରେ ନାହିଁ । ମୋ' ଭାଇ ଭାଉଜ ସଂସ୍ଥାଟିଏ ଚଳାନ୍ତି । କୋଟୀ କୋଟୀର ବ୍ୟବସାୟ ନ ହେଲେ ବି ବହୁତ ଭଲ ଚାଲେ । ପୁଅଟି ସେଥିରେ ପାର୍ଟନର୍ । କଲେଜ ମାଡିଛି, ହେଲେ ବେଶୀ ଗୁଡାଏ ପଢିନି । ଠିକ୍ କ'ଣ କରେ କହି ପାରିବି ନାହିଁ । ତେବେ ସବୁ ତ ତା'ର ।'

ବ୍ୟବସାୟୀ ପରିବାରରେ ଏଇଭଳି ହିଁ ଚାଲେ । କରୁଣା ନିଶ୍ଚିନ୍ତ ହେଲେ ।

'ଏବେ ତୁମେ ରାଜି ହେଲେ କଥା ଆଗେଇବ ।'

କଥା ଆଗେଇଲା । ସରୋଜ ଆଉ ତାଙ୍କ ସ୍ତ୍ରୀ ଅଞ୍ଜଳି ଦିନେ ଆସି ଶୁଭ୍ରାକୁ ଦେଖିଗଲେ । ତା'ର କିଛି ଦିନ ପରେ ସେମାନେ ଆସିଲେ ଆଉ ଥରେ । ଏଥର ପୁଅ ସିଦ୍ଧାର୍ଥକୁ ନେଇ । ବାପା ମା'ଙ୍କର ବାଧ୍ୟ ସନ୍ତାନ ସିଦ୍ଧାର୍ଥ । ଥରେ ମୁଣ୍ଡ ଟେକି ତାକୁ ଦେଖିଥିଲା ଯାହା । ବାକୀ ନିଷ୍ପତ୍ତି ବାପା ମା'ଙ୍କର । ବାହାଘର ସ୍ଥିର ହୋଇଗଲା ।

ଶୁଭ୍ରା ଏ ଯାବତ୍ ଦେଖି ଶୁଣିଥିବା କାହାଣୀ ବାହାରର ପରିସ୍ଥିତି । ଚୋରା ଚାହାଣି ନାହିଁ, ଉଚ୍ଛ୍ଵଳତା ନାହିଁ, ଯୌବନର ଉଦ୍ଦାମତା ନାହିଁ । ନିର୍ବିକାର ପୁରୁଷ ସିଦ୍ଧାର୍ଥ । କରୁଣାଙ୍କ ଆଖିରେ ମଧ୍ୟ ପଡିଥିଲା କଥାଟା । ହେଲେ ସେ ବେଶୀ ଚିନ୍ତା କରି ନ ଥିଲେ । ସିଦ୍ଧାର୍ଥର ଚେହେରା ସୁନ୍ଦର । ସ୍ୱଭାବ ଥଣ୍ଡା । ପ୍ରକୃତ ସିଦ୍ଧାର୍ଥ । ସବୁବେଳେ ସେ ଯେମିତି ତପସ୍ୟାରେ ବସିଛି । ଖୁବ୍ କମ୍ କଥା କହେ । ପାଟିତୁଣ୍ଡ, ହୋ ହଲ୍ଲା – କିଛି ନାହିଁ । ଲୋକଙ୍କ ସାଙ୍ଗରେ ମିଶିବାକୁ, କଥା କହିବାକୁ ସେ ବେଶୀ ପସନ୍ଦ କରେ ନାହିଁ । ବହି, ଟିଭି, ବୁଲାବୁଲି – ଏସବୁରେ ବି ଆଗ୍ରହ କମ୍ । ସବୁବେଳେ ଆଖି ବନ୍ଦ କରି କ'ଣ ଯେମିତି ଭାବି ହେଉଥାଏ ।

କ୍ଷତି ନାହିଁ – କରୁଣା ନିଜ ଅଭିଜ୍ଞତାରୁ ନିଜକୁ କହିଥିଲେ । ସ୍ତ୍ରୀ ଉପରେ ହାକିମାତି କରିବା ଅପେକ୍ଷା, ସାଙ୍ଗ ସାଥୀଙ୍କ ସହିତ ଆଡ୍ଡା ମାରିବା ଅପେକ୍ଷା ଏସବୁ ଢେର୍ ଭଲ ।

ଆଉ ଶୁଭ୍ରା ? ସରୋଜ, ଅଞ୍ଜଳିଙ୍କ ସ୍ନେହରେ, ସ୍ନେହୋପହାରରେ ସେ

ସେତେବେଳେ ଭାସି ଯାଇସାରିଛି । ତଳେଇ କରି ଭାବିବା ପାଇଁ ଆଗ୍ରହ ନାହିଁ ।

ବାହାଘର ହେଇଗଲା । ବାହାଘର ପରେ ହନିମୁନ୍‌ରେ ଯିବା କଥା ଶୁଭ୍ରା ସିଦ୍ଧାର୍ଥ ପାଖରେ ଉଠେଇଥିଲା । ସମସ୍ତେ ଯାଆନ୍ତି । ସାମର୍ଥ୍ୟ ତ ଅଛି, ସେମାନେ ଯିବେନି କାହିଁକି ?

ନା । ସିଦ୍ଧାର୍ଥ ଗୋଟିଏ ଶବ୍ଦରେ ମନାକରିଦେଇଥିଲା । ଆଲୋଚନା ବନ୍ଦ । ନୂଆ ସ୍ତ୍ରୀଟିର ଯେ ମନ ଭଣା ହେଲା, ସେ କଥା ତା' ଆଖିରେ ପଡିଲା ନାହିଁ ।

ଖୁବ୍ ଶୀଘ୍ର ଶୁଭ୍ରା ତା' ସ୍ୱାମୀଟିକୁ ବୁଝିଗଲା । ଏ ମଣିଷର ନିଜ ବାହାରର ପୃଥିବୀରେ ସମ୍ପୂର୍ଣ୍ଣ ଅନାଗ୍ରହ । କିନ୍ତୁ ତା'ର ନିଜ ପୃଥିବୀଟା ବା କ'ଣ ? ଖାଇବା, ଶୋଇବା, ବଗିଚାରେ ବା ବାଲ୍‌କନିରେ ଆଖି ବନ୍ଦ କରି ବସି ରହିବା ଏବଂ କଦାପି କ୍ୱଚିତ୍ ଶୁଭ୍ରାର ଶରୀରକୁ ଖୋଜିବା । ସେ ସମ୍ପର୍କରେ ପ୍ରେମ ନାହିଁ, ଆଦିମତା ନାହିଁ, ନିଜର ଭାବ ବି ନାହିଁ । ବ୍ୟବସାୟରେ ଆଗ୍ରହ ରଖିବା କଥା ମିଛ । କାଗଜ କଲମରେ ସେ ପାର୍ଟନର୍, କିନ୍ତୁ ଦିନଟିଏ ସେ ଅନୁଷ୍ଠାନରେ ପାଦ ରଖେ ନାହିଁ ସିଦ୍ଧାର୍ଥ । କୌଣସି କାରବାରରେ ତିଳେମାତ୍ର ଆଗ୍ରହ ଦେଖାଏ ନାହିଁ ।

ଚୁପ୍ ହେଇରହିବା ଝିଅ ସେ ନୁହଁ । ହେଲେ କ'ଣ ଯେ ହେଲା, ଶୁଭ୍ରା ଏ ବିଷୟରେ କୌଣସି ଆଲୋଚନା ଶାଶୂ, ଶ୍ୱଶୁରଙ୍କ ସାଙ୍ଗରେ କରିପାରିଲା ନାହିଁ । କିଛି ଲଜ୍ଜା, କିଛିଟା ପୁଣି ବଢି ଆସିଥିବା ପାରମ୍ପରିକ ପରିବାରର ସମ୍ଭ୍ରମ । ସେ ନିଜକୁ ବୁଝେଇବାକୁ ଚେଷ୍ଟା କରିଥିଲା । ସବୁ ପୁରୁଷ କ'ଣ ନାଟକ, ଉପନ୍ୟାସ କିମ୍ବା ରୋମାଣ୍ଟିକ୍ ଚଳଚ୍ଚିତ୍ରର ନାୟକ ଭଳି ପୁରୁଷୋତ୍ତମ ହୋଇପାରନ୍ତି ? ଅନେକ ହୁଅନ୍ତି ଆଡ଼ବାୟା, ଅଥବା ଆତ୍ମକୈନ୍ଦ୍ରିକ । ତା' ଭାଗ୍ୟରେ ସେଇଭଳି ମଣିଷଟିଏ ଜୁଟିଛି । ଉପାୟ ନାହିଁ – ଚଳେଇ ନେବାକୁ ହେବ ।

ତେବେ ଡେଣାରେ ମୁହଁ ଗୁଞ୍ଜି ଆଖି ଲୁହ ଝରେଇବା, କିମ୍ବା ମୁହଁ ଶୁଖେଇ ବସି ରହିବାର ଅବସର ନାହିଁ । ସରୋଜ ଆଉ ଅଞ୍ଜଳି ଯେ ସେତେବେଳେ ତାକୁ ନେଇ ବିଭୋର ! ଯଦି କେହି ଆସି କହିଦେଲା– ବୋହୂକୁ ତ ବେଶ୍ ମୁଣ୍ଡରେ ବସେଇଛନ୍ତି ? – ତା' ଉପରକୁ ଝାମ୍ପି ପଡୁଥିଲେ ମଧ୍ୟ-ବୟସ୍କ ଦମ୍ପତିଟି ।

'ବୋହୂ ! ଏଠି ବୋହୂ କିଏ ? ଶୁଭ୍ରା ତ ଆମ ଝିଅ । ଆମ ମା' । ଦେଖିପାରୁନ, ସେ ନ ଥିଲେ ଆମ ଘର ଅଚଳ । ଆମେ ଅଚଳ । ଆମର ସବୁ କିଛି ମୂଲ୍ୟହୀନ । ଅନ୍ୟଜଣଙ୍କ ପରିବାରରେ ଜନ୍ମ ହୋଇ ବଢିଲା ବୋଲି ସେ ସେମାନଙ୍କର ହେଇଗଲା ? ଆମର କେହି ନୁହଁ ?'

ବାହାରର ଲୋକ ହସନ୍ତି । କିଏ କିଏ ଅସହଣି ଲୋକ କହନ୍ତି– ଢଙ୍ଗ !

ହେଲେ ଶୁଭ୍ରା କେଇଟା ଦିନ ଭିତରେ ବୁଝି ଯାଇଥିଲା ଯେ ସରୋଜ, ଅଞ୍ଜଳିଙ୍କ କଥା ସେମାନଙ୍କ ହୃଦୟର ପ୍ରତିଫଳନ କେବଳ । ସେଠି ମିଛ ନାହିଁ, ଆବିଳତା ନାହିଁ– ନିଚ୍ଛକ ସ୍ନେହ । କେମିତି ସେମାନଙ୍କ ପାଖରେ ତାଙ୍କ ପୁଅ ବିରୁଦ୍ଧରେ ଅଭିଯୋଗ କରି ଥାଆନ୍ତା ସେ ?

ବାହାଘରର କେଇ ମାସ ପରେ ଦିନେ ସରୋଜ ତାକୁ କହିଲେ, 'ମା' ରେ, ତୁ ଘରେ କାହିଁକି ବସି ରହିବୁ ? ପାଠଶାଠ ପଢ଼ିଛୁ । ଆ, ଆମ ସାଙ୍ଗରେ କାମ କର ।'

ମନର ଆନନ୍ଦକୁ ବାନ୍ଧି ରଖି ଶୁଭ୍ରା କହିଥିଲା, 'ବାପା, ସାଧାରଣ ବି.ଏ. ଡିଗ୍ରୀଟା ନେଇ ମୁଁ ଆପଣ ଦୁଇ ଜଣଙ୍କ ସାଙ୍ଗରେ କାମ କରିବି କେମିତି ?'

ସରୋଜ ଆଉ ଅଞ୍ଜଳି ହାଇଦ୍ରାବାଦ୍‌ର ଗୋଟିଏ କଲେଜରେ ଅଙ୍କ ପଢ଼ାଉଥିଲେ । ଭଲ ଶିକ୍ଷକ ହିସାବରେ ଦୁଇ ଜଣଙ୍କର ସହରରେ ଯଥେଷ୍ଟ ସୁନାମ ଥିଲା । ସେଥିପାଇଁ ଟ୍ୟୁସନ୍ ପଢ଼ିବା ଆଶାରେ କାହିଁ କୋଉଠୁ ଆସି ପହଞ୍ଚୁଥିଲେ ଛାତ୍ର-ଛାତ୍ରୀମାନେ । ସମସ୍ତଙ୍କୁ ପଢ଼େଇବା ସମ୍ଭବ ନ ଥିଲା । ସେଥିପାଇଁ ଦିନେ ବିରାଟ ଗୋଟାଏ ନିଷ୍ପତ୍ତି ନେଲେ ଦୁଇ ଜଣ । ଚାକିରିରୁ ଇସ୍ତଫା ଦେଇ କୋଚିଙ୍ଗ୍ କ୍ଲାସ୍‌ଟିଏ ଆରମ୍ଭ କରିଦେଲେ । ପ୍ରଥମରୁ ଦୁଇ ଜଣ ଗୋଟାଏ ବିଷୟରେ ଏକମତ ଥିଲେ । ଆଜିକାଲି ପାଠ ନାଁରେ ଯେଉଁ ସବୁ ନାଟ ଚାଲିଛି, ସେସବୁଠୁ ଦୂରରେ ରହିବେ ସେମାନେ । ବ୍ୟବସାୟ ହେବ, କିନ୍ତୁ ସତ୍ ଭାବରେ । ସେମାନଙ୍କ ସଂସ୍ଥାରେ ସେ ଦୁଇ ଜଣଙ୍କୁ ଛାଡ଼ି ଦେଲେ ଆଉ ତିନି ଜଣ ପାର୍ଟ ଟାଇମ୍ ଶିକ୍ଷକ ମଧ୍ୟ ଅଛନ୍ତି । ତା' ଶାଶୂ ଶ୍ୱଶୂରଙ୍କ ଭଳି ଶିକ୍ଷା ପାଇଁ ଜୀବନ ଉତ୍ସର୍ଗ କରି ଦେଇଥିବା ମଣିଷ ତିନି ଜଣ । କିନ୍ତୁ ଏଇ ପାଞ୍ଚଜଣଙ୍କ ମେଳରେ ଶୁଭ୍ରା କରିବ କ'ଣ ? ଅଙ୍କର ଜଗତରୁ ସେ ବହୁତ ଦୂରରେ । ସେଇଥିପାଇଁ ପଚାରି ଦେଲା – ଆପଣଙ୍କ ସାଙ୍ଗରେ କାମ କରିବି କେମିତି ମୁଁ ?

ସରୋଜ ହସିଥିଲେ, 'ଆମ ସଂସ୍ଥାରେ ପାଠ ପଢ଼ାଇବାଟା କ'ଣ ଏକମାତ୍ର କାମ ? ପ୍ରଶାସନିକ କାମ ନାହିଁ ?'

'ବୁଝିଲୁ ରେ ମା,' ଅଞ୍ଜଳି ବୁଝାଇ କହିଥିଲେ, 'ତୋ ବାପାଙ୍କୁ କି ମତେ ଏଇ ବୁଝାବୁଝି କାମ ଭଲ ଲାଗେ ନାହିଁ କି ଆମ ଦ୍ୱାରା ଭଲରେ ହୁଏ ନାହିଁ । ଆଶା ଥିଲା, ସିଦ୍ଧାର୍ଥ ଦିନେ ଦାୟିତ୍ୱ ନବ । ହେଲେ ଦେଖୁଛୁ ତ ତା'ର ସେଥିରେ ଟିକେ ହେଲେ ଆଗ୍ରହ ନାହିଁ । ... ତୁ ଯଦି ସେଇ କାମଟା ବୁଝନ୍ତୁ, ତା'ହେଲେ ଆମେ ନିଶ୍ଚିନ୍ତ ଭାବରେ କେବଳ ପଢ଼ାଇବାରେ ମନୋନିବେଶ କରି ପାରନ୍ତୁ ।'

ଏ କାମ ଶୁଭ୍ରା ପାରିବ । ଭଲରେ ପାରିବ । ତା'ର ଆଗ୍ରହ ଅଛି, କ୍ଷମତା ଅଛି, ଆଉ ସବୁଠାରୁ ବଡ କଥା, ଅଦ୍ଭୁତ ଦାମ୍ପତ୍ୟର ଅଣନିଶ୍ୱାସୀକର ପରିସ୍ଥିତିରୁ ମୁକ୍ତି ପାଇବାର ସମ୍ଭାବନା ଅଛି । ସେ କୋଚିଙ୍ଗ୍ କ୍ଲାସ୍ ଚଳେଇବା ଦାୟିତ୍ୱ ନିଜ ହାତକୁ ନେଇଗଲା ।

ଦେଖୁ ଦେଖୁ କଟିଗଲା ତିନି ବର୍ଷ ।

ଏହା ଭିତରେ ପିଲା ନାହିଁ । ପିଲାପିଲି ନ ହେବାର ଶୋକ ବି ଶୁଭ୍ରାର ନାହିଁ ।

ଦିନେ ଅଞ୍ଜଳି ତାକୁ ଡାକି ପାଖରେ ବସାଇଲେ । 'ମା' ରେ, ଟିକିଏ କୋଉ ଗାଇନିକ୍‌କୁ ଦେଖାଇବା ? ବେଳେ ବେଳେ ପ୍ରେଗ୍‌ନାନ୍‌ସି ପାଇଁ ସମୟ ଲାଗେ, ତଥାପି ବିଶେଷଜ୍ଞଙ୍କୁ ଦେଖେଇ ଦେଲେ ଭଲ ।'

'ଦରକାର ନାହିଁ, ମା' ।'

'କାହିଁକି କହୁଛୁ ?'

ଶୁଭ୍ରା ମନରେ ସାମାନ୍ୟ ଇତସ୍ତତଃତା ଆସିଲା । ଶାଶୂଙ୍କୁ ସତ କଥା କହିବା ଉଚିତ କି ?

'ମୁଁ ସାବଧାନ ଅଛି ।'

'ମାନେ ? ... ପିଲ୍ ଖାଉଛୁ ?'

'ହଁ ।' ସଂକ୍ଷେପରେ ସେ ଉତ୍ତର ଦେଲା ।

'କାହିଁକି ? ବାହାଘରର ତିନି ବର୍ଷ ତ ହେଇଗଲାଣି ।' ଅଞ୍ଜଳି ବିବ୍ରତ ।

'ପିଲା କ'ଣ ହେବ, ମା' ?'

'ପିଲାଟିଏ ଆମର ଦରକାର ନାହିଁ ? ଏ ଘରେ ବୁଲିବ, ଦୌଡିବ, ଗୁଲୁଗୁଲୁ ହେଇ କଥା କହିବ ।'

'ଯଦି ନ କହେ ?'

'ନ କହେ ମାନେ ?'

ଆଖି ତଳକୁ କଲା ଶୁଭ୍ରା । 'ପିଲାଟିଏ ଆମ ସଂସାରକୁ ନ ଆସିଲେ ଭଲ । . . . ପିଲାଟି ଯଦି ତା' ବାପା ଭଳି ହୁଏ ?'

କଥା ହଜିଗଲା ଅଞ୍ଜଳିଙ୍କର । ଶୁଭ୍ରା ମଧ୍ୟ ଆଉ ଅଧିକ ଆଲୋଚନା କଲା ନାହିଁ ଏ ବିଷୟରେ । ତେବେ ତା' ପରଠାରୁ ଆଉ ଏ କଥା କେବେ ହେଲେ ଉଠିଲା ନାହିଁ । ଅନ୍ତତଃ ଶ୍ୱଶୁର ଘରେ ନୁହଁ ।

ହେଲେ ବାରମ୍ବାର ପ୍ରଶ୍ନ କଲେ ଶୁଭ୍ରାର ମା' କରୁଣା ।

ଶୁଭ୍ରା ତା' ମା'ଙ୍କ ପାଖରେ ଯାଇ ବେଶୀ ଦିନ ରହିପାରେ ନାହିଁ, କିନ୍ତୁ

ବେଶୀ ଥର ପାଇଁ ଯାଏ ସେ । ହାଇଦ୍ରାବାଦ୍‌ରୁ ଭୁବନେଶ୍ୱର– ବାଟ ଦୂର ନୁହଁ । ଦୁଇ ତିନି ମାସରେ ଥରେ ସେ ଯାଇ ଘୂରି ଆସେ । ଆଉ ପ୍ରତି ଥର ସେଇ ଏକା କଥା– ପିଲାଟିଏ କେବେ ହେବ ? ଦିନେ ବିରକ୍ତିରେ ତା' ପାଟିରୁ ମିଛ କଥାଟିଏ ବାହାରି ଗଲା । 'ପିଲା ହେବନି, ମା' । ମୋର ଦୋଷ ରହି ଯାଇଛି ।'

ନଡିଆ କୋରୁ କୋରୁ କରୁଣାଙ୍କର ହାତ ଅଟକି ଯାଇଥିଲା ସେଦିନ । ମୁହଁରେ ସ୍ପଷ୍ଟ ଆତଙ୍କ । ପାଟି ଭିତରଟା ଶୁଖିଲା । ରୋଷେଇ ଘରେ, ଏମିତିକି ତାଙ୍କର ଛୋଟ ଦୁଇ ବଖରା ଘରେ ସେଇ ଦୁଇ ଜଣଙ୍କ ଛଡା ଆଉ କେହି ନଥିଲେ ବି ପ୍ରାୟ ଫିସଫିସ୍ ସ୍ୱରରେ ସେ ଝିଅକୁ ପଚାରିଲେ, 'ଏକଥା ତୋ ଶାଶୂ ଜାଣନ୍ତି ?'

ଶୁଭ୍ରା ଆସ୍ତେ ମୁଣ୍ଡ ଟୁଙ୍ଗାରିଲା । ମା'ଙ୍କ ଆଖିରେ ଆଖି ନ ରଖି ପୂର୍ବ ପଟ କାନ୍ଥରେ ଦିନକୁ ଦିନ ବଢି ବଢି ଯାଉଥିବା ଫଟା ଦାଗଟା ଆଡେ ଚାହିଁ ସେ କହିଲା, 'ଶାଶୂ ଜାଣନ୍ତି । ଶ୍ୱଶୁର ବି ଜାଣନ୍ତି ।'

'କେହି କିଛି କହି ନାହାନ୍ତି ?'

'କହିବାର କ'ଣ ଅଛି ?'

ଝିଅର ଶାଶୂ ଶ୍ୱଶୁର ଭଲ ମଣିଷ– ଏଇ କେତେ ବର୍ଷ ଭିତରେ ଜାଣିସାରିଛନ୍ତି କରୁଣା । ନିଜେ ପରଖି ନେଇଛନ୍ତି । ନିଜର ଅସୁସ୍ଥ ଶରୀର ନେଇ ସେ ସହର ବାହାରକୁ ବେଶୀ ଯିବା ଆସିବା କରନ୍ତି ନାହିଁ । ସାମର୍ଥ୍ୟ ବା ଥାଏ କୋଉଠୁ ? ହେଲେ ଯେତେବେଳେ ଝିଅ ବାହାଘରର ବର୍ଷେ ପରେ ସରୋଜ, ଅଞ୍ଜଳି ଥରେ ଆସି ହାଇଦ୍ରାବାଦ ବୁଲି ଯିବା କଥା କହିଥିଲେ, ସେ ନିଜକୁ ଅଟକାଇ ପାରି ନ ଥିଲେ । ଝିଅର ସଂସାର ଦେଖିବାର ଲୋଭ ତାଙ୍କ ଗୋଡରେ ପର ଲଗାଇ ଦେଇଥିଲା ।

ଭୁବନେଶ୍ୱର ଛାଡି ଯିବା ଆଗରୁ ସେ ଅଞ୍ଜଳିଙ୍କୁ ପାଖ ଏସ୍.ଟି.ଡି ବୁଥ୍‌ରୁ ଫୋନ୍ କରି କହିଥିଲେ, 'ସମୁଦୁଣୀ, ଆସିବି । କିନ୍ତୁ ଆପଣଙ୍କ ଘରେ ରହି ପାରିବି ନାହିଁ । ଝିଅ ଘରେ ରହିବା, ଖାଇବା ନେଇ ଆମର କେତେ କଟକଣା, ତା' ଆପଣମାନେ ନିଶ୍ଚୟ ଜାଣନ୍ତି ।'

'ଯେ କି କଥା ! ଏସବୁ ହେଲାଣି କୋଉ ମାନଧାତା ଅମଳର ଚଳଣି । ଆଜିକାଲି କିଏ ଏସବୁ ମାନେ ନା କ'ଣ ?'

'ତଥାପି ...'

ଅଞ୍ଜଳିଙ୍କ ହାତରୁ ଫୋନ୍ ଛଡାଇ ନେଇଥିଲେ ସରୋଜ । 'ଆଚ୍ଛା ସମୁଦୁଣୀ, ଆପଣ ଝିଅ ଘରକୁ ଆସୁଛନ୍ତି ବୋଲି କାହିଁକି ଭାବୁଛନ୍ତି ? ଏଠି ଆପଣଙ୍କ ଝିଅ

ସ୍ୱାଇଁଙ୍କ ଛଡା ଆଉ ଦୁଇ ଜଣ ମଣିଷ ବି ରହନ୍ତି । ନହେଲେ ମୁଁ ଆଜିଠୁଁ ଧରି ନେବି ଯେ ବସୁଧା ଭଳି ଆପଣ ମଧ୍ୟ ମୋର ଜଣେ ଭଉଣୀ । ଭାଇ ଘରେ ଆସି ରହିବାରେ ନିଶ୍ଚୟ ଆପଣଙ୍କର କୌଣସି ଆପତ୍ତି ନାହିଁ ।'

କରୁଣା ବିଭୋର ହୋଇଯାଇଥିଲେ ।

ଗତ ତିନି ଚାରି ବର୍ଷ ଭିତରେ ଆତଙ୍କିତ ହେବା ଭଳି ମନକୁ କୌଣସି ବିଷୟ ଆସିନି, ତେବେ ଏକମାତ୍ର ପୁଅର ଯଦି ସନ୍ତାନ ନ ହୁଏ, ଆଉ ସେଥିପାଇଁ ଦାୟୀ ଯଦି ପରଘରୁ ଆସିଥିବା ଝିଅଟି ହୁଏ, ତା'ହେଲେ ମଣିଷମାନଙ୍କର ମନୋଭାବ ବଦଳିଯିବାରେ କେତେ ସମୟ ଲାଗିବ ? ଯଦି ସେମାନେ ପୁଅକୁ ବାଧ୍ୟ କରନ୍ତି ସ୍ତ୍ରୀକୁ ଛାଡପତ୍ର ଦେଇ ଆଉ ଥରେ ବାହା ହେବାକୁ ? ଯଦି ଘରୁ ବାହାର କରି ଦିଅନ୍ତି ତାଙ୍କ ଶୁଭ୍ରାକୁ ?

ଆଗ ଭଳି ଆତଙ୍କିତ ସ୍ୱରରେ କରୁଣା ପଚାରିଲେ, 'ଏ ବିଷୟ ନେଇ ସେମାନେ ଅସନ୍ତୁଷ୍ଟ ହୋଇ ନାହାନ୍ତି ? ମାନେ ... ବଂଶରକ୍ଷା କଥା ଉଠୁଛି ଯେଉଁଠି ...'

'ନା, ମା', କେହି ଅସନ୍ତୁଷ୍ଟ ନୁହନ୍ତି । ବଂଶରକ୍ଷା ପ୍ରଶ୍ନ ଉଠିଲେ ପିଲାଟିଏ ପୋଷ୍ୟ ନେଇଯିବି । ଅନାଥାଳୟର ତ ଅଭାବ ନାହିଁ ।'

'ସିଦ୍ଧାର୍ଥଙ୍କର ମତ କ'ଣ ?'

'ସେ ତ ନିର୍ବିକାର ମଣିଷ । ତାଙ୍କର କୋଉଥିରେ କିଛି ଯାଏ ଆସେ ନାହିଁ ।'

କରୁଣାଙ୍କ ମନରେ ତଥାପି ଅସ୍ୱସ୍ତି ରହିଗଲା, ହେଲେ ସେ ଆଉ କଥା ବଢେଇ ନଥିଲେ । ପରେ ଆଉ ସେ ବିଷୟରେ କୌଣସି କଥା ଉଠେଇ ନ ଥିଲେ ।

ଦିନ ଗଡି ଚାଲିଲା । କୋଚିଙ୍ଗ୍ କ୍ଲାସ୍‌ର ଦାୟିତ୍ୱରେ ଦିନକୁ ଦିନ ଅଧିକ ବାନ୍ଧି ହୋଇ ପଡିଲା ଶୁଭ୍ରା । ହାଇଦ୍ରାବାଦ୍‌ରେ ବେଶ୍ କିଛି ଲୋକ ଜାଣି ନେଇଥିଲେ ଯେ ଏଇ ସଂସ୍ଥାରେ ପ୍ରକୃତ ଜ୍ଞାନଦାନ ହୁଏ । ସେଥିପାଇଁ ଆବେଦନପତ୍ରର ସଂଖ୍ୟା କିଛି କମ୍ ନୁହଁ । କିନ୍ତୁ ସମସ୍ତଙ୍କୁ ତ ସ୍ଥାନ ଦେଇ ହୁଏ ନାହିଁ । ସ୍ଥାନ ଦେବା ସପକ୍ଷରେ ମଧ୍ୟ ନୁହନ୍ତି ସରୋଜ, ଅଞ୍ଜଳି ।

'ଗୋରୁ ଗୁହାଳ ଭଳି କ୍ଲାସ୍‌ମାନ କରି ଦେଲେ ଲାଭ କ'ଣ ? ସତରେ କ'ଣ କେହି କିଛି ଶିଖିବେ ?'

ସେମାନଙ୍କର ଏଭଳି ମନୋଭାବ ଆହୁରି ପ୍ରଶଂସା ପାଏ । ଆହୁରି ଅଧିକ ଅଭିଭାବକ ସେମାନଙ୍କର ସନ୍ତାନମାନଙ୍କୁ ସଂସ୍ଥାରେ ଭର୍ତ୍ତି କରିବାକୁ ଆବେଦନ କରନ୍ତି ।

ଆବେଦନ ପତ୍ର ଯାଞ୍ଚ କରିବା ଦାୟିତ୍ୱ ଶୁଭ୍ରାର । ହାଇସ୍କୁଲ ଛାତ୍ରଛାତ୍ରୀଙ୍କୁ

ବାଛିବା କଠିନ ନୁହଁ । ବିଶେଷ କରି ଅଙ୍କ ଯେଉଁମାନଙ୍କର ବାଧ୍ୟତାମୂଳକ ବିଷୟ । ଫାର୍ଷ୍ଟ କମ୍ ଫାର୍ଷ୍ଟ ସର୍ଭ୍ । ଯେଉଁମାନଙ୍କର ଆବେଦନ ପତ୍ର ପ୍ରଥମେ ପହଞ୍ଚେ ସେଇମାନଙ୍କୁ ସ୍ଥାନ ଦିଆଯାଏ । ତେବେ ଅସୁବିଧା ହୁଏ କଲେଜ ପିଲାଙ୍କୁ ନେଇ ।

କାହିଁକି ଯେ ବିଜ୍ଞାନ ପଢିବା ପାଇଁ ଆମ ପିଲାଙ୍କୁ ଏତେ ବାଧ କରାଯାଏ, ସେକଥା ନା ଶୁଭ୍ରା ବୁଝେ, ନା ବୁଝନ୍ତି ସରୋଜ, ଅଞ୍ଜଳି । ଜବରଦସ୍ତି ବିଜ୍ଞାନ ପଢିବାକୁ ଯାଇ ଏଇ ଛାତ୍ରମାନଙ୍କୁ ଅଙ୍କର ମୁଖାମୁଖି ହେବାକୁ ହୁଏ । ଆଉ ସମସ୍ତଙ୍କ ଦ୍ୱାରା କ'ଣ ଅଙ୍କ ହୁଏ ? ବେଳେବେଳେ ଶାଶୂ ଶ୍ୱଶୂରଙ୍କ ସାଙ୍ଗରେ ତା'ର ଏସବୁ ନେଇ ବହୁତ ଆଲୋଚନା ହୁଏ ।

'ଏଇଟା ଇ ତ ଚ୍ୟାଲେଞ୍ଜ୍ । କେବଳ ଟଙ୍କା ଆଦାୟ ଯଦି ମୁଖ୍ୟ ଉଦ୍ଦେଶ୍ୟ ହୁଏ, ତାହେଲେ ଆମେ ସମସ୍ତଙ୍କୁ ଆଡ୍‌ମିସନ୍ ଦେଇ ଦେଇପାରିବା । ହେଲେ ଆମ ସଂସ୍ଥାର ଲକ୍ଷ୍ୟ ତ ତା' ନୁହଁ ।' ସରୋଜ ଥରେ କହିଲେ ।

'ହେଲେ ବାପା, ଜାଣିବା କେମିତି ପ୍ରଥମରୁ ?'

'ପିଲାଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ହେବ ।'

'ଯଦି ଜାଣି ନ ହେଲା ? ଯଦି ଆଡ୍‌ମିସନ୍ ପରେ ଜଣା ପଡିଲା ?'

'ତା'ହେଲେ କାଉନ୍‌ସେଲିଙ୍ଗ୍ କରି ପିଲାକୁ ଅନ୍ୟ କିଛି ପଢିବା ପାଇଁ ଉପଦେଶ ଦେବାକୁ ହେବ ।'

'ସେମାନେ ମାନିବେ ?'

'ମାନିଲେ ମାନିବେ, ନହେଲେ ନାହିଁ । କିନ୍ତୁ ଆମର ଏଠି ସେମାନଙ୍କୁ ରଖି ହେବ ନାହିଁ ।'

'ଆଉ ସେମାନେ ଆମକୁ ପ୍ରଥମରୁ ଦେଇ ଦେଇଥିବା ଫିଜ୍ ?'

'ହିସାବ କରି ବାକୀଟା ଫେରାଇ ଦେବାକୁ ହେବ ।'

'କେହି କରନ୍ତି ନାହିଁ । ଆମର ବି ତ କ୍ଷତି ସେଥିରେ ।'

'କେହି କରନ୍ତି ନାହିଁ ବୋଲି ଆମେ ବି କରିବା ନାହିଁ ?' ଅଞ୍ଜଳି କହିଥିଲେ । 'କେବଳ ଲାଭ କ୍ଷତିର ହିସାବ କରିବାକୁ ତ ଆମେ ଏ ସଂସ୍ଥା ଗଢି ନାହୁଁ ।'

ଶାଶୂ ଶ୍ୱଶୁରଙ୍କ ଆଦର୍ଶବାଦିତାରେ ମୁଗ୍ଧ ହୋଇଯାଇଥିଲା ଶୁଭ୍ରା । ଦିନ ରାତି ଭୁଲି କାମ କରି ଚାଲିଥିଲା ସେ । ଘରର ସବୁ ଦାୟିତ୍ୱ ତା'ର । ସଂସ୍ଥାର ସବୁ ଦାୟିତ୍ୱ ତା'ର । କେବଳ ଗୋଟିଏ ବିଷୟ – ସେଇଟି ହେଲା 'ସିଦ୍ଧାର୍ଥ' – ଏଇ ବିଷୟଟିକୁ ଛାଡିଦେଲେ ତା'ର କୋଉଥିରେ ଅସନ୍ତୋଷ ନ ଥିଲା । ସେ ଯେଉଁ ନିଷ୍ପତ୍ତି ନେଉଥିଲା, ସେଇଟା ହିଁ ସବୁବେଳେ ଶେଷ । ଅକାଟ୍ୟ ।

ସେଥିପାଇଁ ସେଦିନ ସରୋଜ ଓ ଅଞ୍ଜଳି ଯେତେବେଳେ ତା' ରିପୋର୍ଟ୍‌ଟି ଦେଖି ଆପତ୍ତି କଲେ, ଶୁଭ୍ରା ଆଶ୍ଚର୍ଯ୍ୟ ହେଲା ।

ଝିଅଟିର ନାଁ ଗୀତା । ବାପା ମା'ଙ୍କର ବାଧବାଧକତାରେ ବିଜ୍ଞାନ ପଢିବା ପାଇଁ ଯାଇନି, ନିଜର ଆଗ୍ରହ ଥିଲା ହାଇସ୍କୁଲ୍‌ଠାରୁ । କିନ୍ତୁ କଲେଜର ଅଙ୍କ ବୁଝିବାରେ ଅସୁବିଧା ହେବାରୁ ବାପା ମା' କୋଚିଙ୍ଗ୍ କ୍ଲାସ୍‌ରେ ତାକୁ ଭର୍ତ୍ତି କରେଇ ଦେଲେ । ଗୀତା ନିର୍ବୁଦ୍ଧିଆ ଝିଅ ନୁହଁ । ଅଙ୍କ ପ୍ରତି ଆଗ୍ରହ ଅଛି । ହେଲେ ପ୍ରତିଟି ଅଙ୍କ ଠିକ୍ କରିବାର ଯେଉଁ ବିରାଟ ଜିଦି, ସେଇଟା ହିଁ ଶୁଭ୍ରାକୁ ଚିନ୍ତିତ କରେଇ ଦେଇଥିଲା । ଶୁଭ୍ରା ଆଉ ଜଣେ ଶିକ୍ଷକଙ୍କଠାରୁ ଶୁଣିଲା ଯେ ଯଦି ଚେଷ୍ଟା-କରିବା ସତ୍ତ୍ୱେ ଅଙ୍କଟିଏ ଗୀତା ଠିକ୍ ଭାବରେ କରି ପାରୁ ନ ଥିଲା, ତା'ହେଲେ ତା'ର ଜିଦି ଆହୁରି ବଢି ଯାଉଥିଲା । ବାକୀ ସବୁ ଅଙ୍କକୁ ବେଖାତିର କରି, ଶିକ୍ଷକ ପଢାଉଥିବା ବିଷୟ ପ୍ରତି ଅମନଯୋଗୀ ହୋଇ, ସେ ସେଇ ଗୋଟିଏ ଅଙ୍କ ପଛରେ ପଡିଯାଉଥିଲା ଠିକ୍ ଭାବରେ ଶେଷ କରିବା ପର୍ଯ୍ୟନ୍ତ । ଲୁହ ଲାଳ ଏକ ହେବା ପର୍ଯ୍ୟନ୍ତ କଥା ଯାଉଥିଲା ସବୁଥର ।

ଶୁଭ୍ରା ଝିଅଟିକୁ ଡକେଇ ଥିଲା ନିଜ ରୁମକୁ । ବୁଝିବାକୁ ଚେଷ୍ଟା କରିଥିଲା ସେ ସେଭଳି କରେ କାହିଁକି ।

'ଜାଣିନି ।'

'ଦେଖ, ଗୀତା, ଗୋଟାଏ ପ୍ରଶ୍ନ ପତ୍ରରେ ସେଇ ଗୋଟାଏ ଅଙ୍କ ତ ନାହିଁ, ଆହୁରି ବହୁତ ଅଛି । ତୁମେ ଯଦି ସେଇ ଗୋଟିକ ପଛରେ ପଡିଯିବ, ତାହେଲେ ତୁମର ପେପରଟା ହିଁ ଖରାପ ହେଇଯିବ ।'

ଗୀତା କେବଳ ତବତବ ହୋଇ ଚାହିଁରହିଥିଲା । କିଛି ଉତ୍ତର ଦେଇ ନ ଥିଲା ।

'ତା'ଛଡା ଗୋଟିଏ ନ ହେଉଥିବା ଅଙ୍କ ପାଇଁ କନ୍ଦାକଟା କରିବାର କ'ଣ ଅଛି ? ନ ହେଲା ତ ନାହିଁ । ତୁମେ କ'ଣ ଭାବୁଛ, ପୃଥିବୀର ସବୁ ଅଙ୍କ ସରୋଜ ସାର୍, ଅଞ୍ଜଳି ମ୍ୟାଡମ୍ ସବୁବେଳେ ଠିକ୍‌ଭାବରେ କରିପାରନ୍ତି ? ... ବୁଝୁଛ ତ ?'

ଗୀତା ଆଖି ତଳକୁ କରିଥିଲା ।

କିନ୍ତୁ ତା' ଭିତରେ କୌଣସି ପରିବର୍ତ୍ତନ ହେଇ ନ ଥିଲା । ବରଂ ଅବସ୍ଥା କ୍ରମଶଃ ଅସମ୍ଭାଳ ପର୍ଯ୍ୟାୟରେ ପହଞ୍ଚି ଯାଇଥିଲା । ନ ହେଇ ପାରୁଥିବା ଅଙ୍କର ଆତଙ୍କ ତାକୁ ଶାରୀରିକ ଅସୁସ୍ଥତା ପର୍ଯ୍ୟନ୍ତ ଟାଣି ନେଉଥିଲା ।

ଆଉ ଉପାୟ ନାହିଁ, ଝିଅଟିକୁ ବିଦାୟ ଦେବାକୁ ହେବ । ଦୁଇମାସ ଧୈର୍ଯ୍ୟର ସହ ଅପେକ୍ଷା କରିବା ପରେ, ତା' ବାପା ମା'ଙ୍କ ସାଙ୍ଗରେ କଥା କହିବା ପରେ,

ଦିନେ ଶୁଭ୍ରା ଗୀତାର କେସ୍ ନେଇ ରିପୋର୍ଟ୍‌ଟିଏ ଲେଖି ସରୋଜ, ଅଞ୍ଜଳିଙ୍କ ପାଖରେ ପହଞ୍ଚିଲା । ଝିଅଟିକୁ ଛାଡିବାକୁ ହେବ । ଅନ୍ୟ କିଛି ପାଠ ପଢିବାକୁ ଉପଦେଶ ଦେବାକୁ ହେବ ।

ଶୁଭ୍ରା ଭାବିଥିଲା, ଏ ନେଇ କୌଣସି ଆଲୋଚନା ହେବ ନାହିଁ । ସବୁଥର ଯେମିତି ହୁଏ, ଠିକ ସେଇମିତି ତା' ନିଷ୍ପତ୍ତିକୁ ମାନିନେବେ ତା' ଶାଶୂ ଶ୍ୱଶୁର । କିନ୍ତୁ ତା' ହେଲା ନାହିଁ । ଗୀତାର କାଗଜପତ୍ର ଦେଖି ଆଖିରେ ଆଖିରେ କ'ଣ ଯେମିତି ଆଲୋଚନା କରିନେଲେ ସରୋଜ, ଅଞ୍ଜଳି ।

'ମୋତେ ତା' ବାପାଙ୍କର ମୋବାଇଲ୍ ନମ୍ବରଟା ଦେବୁ କି ରେ ମା' ?'

ଶୁଭ୍ରା କିଛି ନ କହି ନମ୍ବରଟା ଦେଇ ବାହାରିଗଲା । ସବୁଥର ବାପା ମା' ମାନଙ୍କ ସାଙ୍ଗରେ ଏଇ ଅସ୍ୱସ୍ତିକର କଥାବାର୍ତ୍ତା ତାକୁ ହିଁ କରିବାକୁ ହେଇଥାଏ । ଏଥର ନିୟମଟା ଯେ କାହିଁକି ବଦଳିଲା, ସେକଥା ସେ ବୁଝୁ ନ ଥିଲା ।

ଉତ୍ତର ମିଳିଲା ସପ୍ତାହକ ପରେ ଯେତେବେଳେ ସରୋଜ ଓ ଅଞ୍ଜଳିଙ୍କ ସାଙ୍ଗରେ କଥା କହିବାକୁ ଗୀତାର ବାପା ମା' ଆସି ପହଞ୍ଚିଲେ । ଶାଶୂ ଶ୍ୱଶୁର ଶୁଭ୍ରାର ଉପସ୍ଥିତି ଚାହୁଁ ନ ଥିଲେ, କିନ୍ତୁ ଉପାୟ ନ ଥିଲା । ବିନା ଆପଏଣ୍ଟମେଣ୍ଟରେ ହଠାତ୍ ଆସି ପହଞ୍ଚି ଯାଇଥିବା ଗୀତାର ବାପା ମା'ଙ୍କୁ ସେ ହିଁ ନେଇ ଆସିଥିଲା ଭିତରକୁ ।

ହାତରେ ଧରିଥିବା ଲଫାପାକୁ ସରୋଜ ହାତକୁ ବଢେଇ ଦେଇ ଗୀତାର ବାପା କହିଲେ, 'ସାଇକିଆଟ୍ରିଷ୍ଟଙ୍କ ରିପୋର୍ଟ୍, ସାର୍ ।'

ଶୁଭ୍ରା ଆଶ୍ଚର୍ଯ୍ୟ ହେଲା । ଏଠି ସାଇକିଆଟ୍ରିଷ୍ଟ ଯାଏଁ କଥା କାହିଁକି ଯାଇଛି ?

'ଆପଣଙ୍କ କଥା ଅନୁସାରେ ଗୀତାକୁ ମୁଁ ସାଇକିଆଟ୍ରିଷ୍ଟ ପାଖକୁ ନେଇଯାଇଥିଲି । ଆପଣଙ୍କର ସନ୍ଦେହ ସତ । ତା'ର ମାନସିକ ରୋଗ ଅଛି । ଡାକ୍ତର କହିଲେ, ଓ.ସି.ଡି । ଅବ୍‌ସେସିଭ୍ କମ୍ପଲସିଭ୍ ଡିସ୍‌ଅର୍ଡର ।' ଶେଷ ବେଳକୁ ଗୀତା ବାପାଙ୍କ ତଣ୍ଟି ଧରିଆସିଥିଲା । ଆଉ ମା'ଟି ତ କଥା କହିବା ଅବସ୍ଥାରେ ନ ଥିଲେ । ଶାଢି କାନି ଆଖି ଉପରେ ମାଡି ଦେଇ ମୁଣ୍ଡ ପୋତି ଦେଇଥିଲେ ସେ ।

'ଆରେ, ଆପଣମାନେ ଏତେ ମନ ଖରାପ କାହିଁକି କରୁଛନ୍ତି ? ଡାକ୍ତର ଦେଖାଇଲେ, ରୋଗ ଧରାପଡିଛି, ଏଥର ତ ଗୀତାର ଚିକିତ୍ସା ଆରମ୍ଭ ହେଇଯିବ । ସେ ଠିକ୍ ହେଇଯିବ ।'

'ହେଲେ ... ମାନସିକ ରୋଗ ...! ଝିଅଟିର ଜୀବନ ତ ଗଲା !'

'ଜୀବନ ଗଲା ମାନେ ? ମାନସିକ ରୋଗ ତ ରୋଗଟିଏ । ମଣିଷ ଜୀବନରେ

ରୋଗ ହେବନି ?'

'ହେଲେ ସମସ୍ତେ ତ ଅସ୍ପୃଶ୍ୟ କରିଦେବେ ଆମକୁ । ହସିବେ । ଏ କଳଙ୍କ ...'

ଏଥର ଅଞ୍ଜଳି ମାଡି ବସିଲେ, 'ଏଥିରେ କଳଙ୍କର କ'ଣ ଅଛି ?'

ଉପଦେଶ ଦେବା ସ୍ୱରରେ ସରୋଜ ଯୋଡିଲେ, 'ଆପଣମାନେ ଶିକ୍ଷିତ । ଆପଣମାନେ ଅନ୍ତତଃ ଏଭଳି କଥା କହନ୍ତୁ ନାହିଁ । ନିୟମିତ ଭାବରେ ଡାକ୍ତର ଯେମିତି କହିଛନ୍ତି, ସେଇମିତି କରନ୍ତୁ । ଝିଅକୁ ଥେରାପିକୁ ନିଅନ୍ତୁ । ଲୁଚାଛପା କାରବାର ଜମା କରନ୍ତୁ ନାହିଁ ।'

ଗୀତାର ବାପା, ମା' ଚାଲିଗଲେଣି କିଛି ସମୟ ଆଗରୁ । ଶୁଭ୍ରା କିନ୍ତୁ ଉଠି ନିଜ କୋଠରୀକୁ ଗଲା ନାହିଁ ।

'ଆଉ କୋଉ ବିଷୟରେ ଆଲୋଚନା କରିବୁ କି ମା'?' ଅଞ୍ଜଳି ପଚାରିଲେ ।

ଶୁଭ୍ରା ଭିତରେ ଅଦ୍ଭୁତ ନିରବତା । ମୁଣ୍ଡ ଟୁଙ୍ଗାରିଲା ସେ ।

'କହ । ଆଉ କୋଉ ଷ୍ଟୁଡେଣ୍ଟ ?'

'ନା । ନିଜ କଥା ।'

'କାମ ଚାପ ବଢି ଯାଇଛି, ନା ରେ ମା' । ତୁ ଗୋଟିଏ ସେକ୍ରେଟାରୀ ରଖିବା ଉଚିତ ଯିଏ କି ...'

ତାଙ୍କ କଥା ବନ୍ଦ କରେଇ ଦେଇ ଥଣ୍ଡା ସ୍ୱରରେ ଶୁଭ୍ରା ପଚାରିଲା, 'ୟାଙ୍କର ପ୍ରବ୍ଲେମ୍‌ଟା ଠିକ୍ କ'ଣ ?'

'କାହାର କି ପ୍ରବ୍ଲେମ୍ ? ଏଠି ତ କାହାର କିଛି ପ୍ରବ୍ଲେମ୍ ନାହିଁ ।' ସରୋଜ ହାଲୁକା ସ୍ୱରରେ କଥା ଆଡେଇ ଦେବାକୁ ଚେଷ୍ଟା କଲେ ।

କିଛି ସମୟ ଆଗରୁ ଶୁଭ୍ରା ଏକଥା ଶୁଣିଥିଲେ ହସିଦେଇ ଚୁପ୍ ରହି ଯାଇ ଥାଆନ୍ତା । ଚାଲି ଯାଇଥାଆନ୍ତା ସେଠୁ । ହେଲେ ସେଇ ମୁହୂର୍ତ୍ତର ଶୁଭ୍ରା ସେମିତି କିଛି କରିଲା ନାହିଁ । ଗମ୍ଭୀର ଭାବରେ କହିଲା, 'ଆପଣ ଜାଣନ୍ତି, ସମସ୍ୟା ଅଛି । ... ମୁଁ ଆପଣଙ୍କ ପୁଅ କଥା କହୁଛି । ତାଙ୍କର ଠିକ୍ କ'ଣ ହେଇଛି ?'

'... କାହାର ? ... ସିଦ୍ଧାର୍ଥର ?'

'ହଁ ।'

ହାଲୁକା ସ୍ୱର ହଜିଗଲା । ସରୋଜଙ୍କର ପାଟି ଖନି ମାରିଯାଉଛି । ଚଟ୍ କରି ସେ ବୁଲି ଚାହିଁଲେ ସ୍ତ୍ରୀ ମୁହଁକୁ । ଅଞ୍ଜଳିଙ୍କ ମୁହଁର ବଳିରେଖା ଆଉ ଟିକିଏ ଗଭୀର ହୋଇଯାଇଛି ଯେମିତି । ଆଖି ଶୁଖିଲା । ଗାଲ ଫିକା ଫିକା । ତଥାପି ଝୁଙ୍କି ପଡି ଟେବୁଲର ଅନ୍ୟ ପାଖରେ ବସିଥିବା ବୋହୂ ହାତକୁ ଟିକିଏ ଛୁଇଁ-

ଦେଲେ ସେ । ଢୋର୍ କରି ସରୁ ହସଟିଏ ଖେଳାଇ କହିଲେ, 'କ'ଣ ସବୁ ବାଜେ କଥା ମୁଣ୍ଡରେ ପୂରେଇ ମୁଣ୍ଡ ଖରାପ କରୁଛୁ, କହିଲୁ ମା' । ଡେରି ହେଲାଣି, ଘରକୁ ଫେରିବା ଏଥର ।'

'ଫେରିବା ତ ନିଶ୍ଚୟ । ହେଲେ ଏସବୁ ବାଜେ କଥା ନୁହଁ, ମା' । ମୁଁ ଆଗରୁ ଠିକ୍ ବୁଝି ନ ଥିଲି । ଆଜି ହାଲୁକା ପ୍ରତିଛବି ଦେଖୁଛି । ... ଏ ଉତ୍ତର ଆଜି ମୋତେ ଜାଣିବାକୁ ହେବ । ଘରକୁ ଫେରିବା ଆଗରୁ ।'

ସରୋଜ ଗଳା ଝାଡିଲେ । ସେ ଭାବିଥିଲେ ଅନାବିଳ ଭଲ ପାଇବା ଦେଇ ସବୁ ସମସ୍ୟାର ସମାଧାନ କରିହେବ । କିଛି ନ ହେଲେ ସମସ୍ୟାକୁ ଆଡେଇ ରଖି ଆଗେଇ ଯାଇହେବ । ତାଙ୍କର ସେ ଧାରଣାଟି ଯେ ଭୁଲ ବୋଲି ପ୍ରମାଣିତ ହେଇଯାଉଛି । ଏବେ ସବୁ କଥା କହିବାକୁ ହେବ । ଖୋଲାଖୋଲି ଭାବରେ ସବୁ କହିବାକୁ ହେବ । ସେ ଆଉ ଥରେ ଗଳା ଝାଡିଲେ । ତଥାପି କଥା ବାହାରୁ ନାହିଁ । ଅନ୍ୟ ବ୍ୟାପାରରେ ଯେତେ ସହଜରେ ଅରୁଚିକର ଆଲୋଚନାଗୁଡିକୁ ଖୋଲଖୋଲି ଭାବରେ କରାଯାଇପାରେ, ନିଜ ବେଳକୁ ତା' କାହିଁକି ସମ୍ଭବ ହୁଏ ନାହିଁ ?

ଶୁଭ୍ରା ଉତ୍ତର ଶୁଣିବାକୁ ତଥାପି ଅପେକ୍ଷା କରି ବସିଛି ।

'ତା'ର ... ମାନେ ସିଦ୍ଧାର୍ଥର ... ଆଡ୍‌ଜଷ୍ଟମେଣ୍ଟ ଡିସ୍‌ଅର୍ଡର ଅଛି ।'

ଶୁଭ୍ରା କପାଳରେ ସରୁ ଭାଙ୍ଗଟିଏ ପଡିଲା । ତା' ଅନୁମାନ ତାହେଲେ ମିଛ ନୁହଁ । 'ସେଇଟା ଗୋଟିଏ ରକମର ମାନସିକ ରୋଗ ନୁହଁ କି ?'

'ହଁ । ତେବେ ...' ତରବର ହୋଇ ସେ ଯୋଡିଲେ, 'ଚିନ୍ତା କରିବା ଭଳି ନୁହଁ । ଡାକ୍ତରମାନେ କହିଛନ୍ତି, ମାଇଲ୍‌ଡ୍ ।'

ଆଶ୍ୱାସନା ଦେବା ସ୍ୱରରେ ଅଞ୍ଜଳି କହିଲେ, 'ବୁଝିଲୁ ରେ ମା', ସବୁ ନିୟନ୍ତ୍ରଣରେ ଅଛି । ତୁ ଦେଖିଥିବୁ, ତାକୁ ମୁଁ ମଝିରେ ମଝିରେ ବାହାରକୁ ନେଇଯାଏ ? ତୁ ବ୍ୟସ୍ତ ହେବୁ ନାହିଁ ବୋଲି ତୋତେ ମୁଁ ମନ୍ଦିର କି ଦୋକାନ ନାଁ କହି ଦିଏ । ହେଲେ ପ୍ରକୃତରେ ତାକୁ ମୁଁ ଥେରାପିକୁ ନେଇଯାଏ । ମଝିରେ ମଝିରେ ଡାକ୍ତରଙ୍କ ପାଖକୁ ବି ଯାଏ । ତାଙ୍କର କହିବା କଥା ଟିକିଏ କେମିକାଲ୍ ଇମ୍‌ବାଲାନ୍‌ସ୍ ହେଇଛି ତା' ବ୍ରେନ୍‌ରେ । ସେଥିପାଇଁ ସିଦ୍ଧାର୍ଥ ଆମର ଔଷଧ ଖାଉଛି ନିୟମିତ ଭାବରେ । ... ତୁ ଦେଖିନୁ ମୁଁ ତାକୁ ସକାଳ ସନ୍ଧ୍ୟା ଦି' ବେଳା ଔଷଧ ଖୁଆଏ ନିଜ ହାତରେ ।'

ହଁ, ଖୁଆନ୍ତି । ଆଉ ମତେ କହନ୍ତି ଯେ ଭିଟାମିନ୍ । ମନକୁ ମନ ଶୁଭ୍ରା କହିଲା ।

ଏତେ ମିଛ ! ଏକା ଘରେ ଏକ ମନ ହୋଇ ରହି ବି ଏତେ ଲୁଚାଛପାରେ କାମ ହେଉଛି ଏଠି ! ତା' ବି ବର୍ଷ ବର୍ଷ ଧରି !

ଶାଶୂ ଶ୍ୱଶୁରଙ୍କୁ ସିଧା ଭାବରେ ଚାହିଁଲା ଶୁଭ୍ରା । ସେ ରାଗି ଯିବା ଉଚିତ୍ । ବିଶ୍ୱାସଭଙ୍ଗ କରାଇଥିବାର ଅଭିଯୋଗ କରିବା ଉଚିତ୍ । ଅଥଚ ସେ ଶାନ୍ତ । ସେଇଭଳି ଶାନ୍ତ ଭାବରେ କହିଲା, 'ଆପଣମାନେ ମୋତେ ଏକଥା ଏତେ ବର୍ଷ ଧରି କହି ନାହାନ୍ତି କାହିଁକି ?'

'ନା... ମାନେ ... ତୋତେ ବ୍ୟସ୍ତ କରି ଦେବାକୁ ଆମେ ଚାହିଁଲୁ ନାହିଁ ... ତା'ଛଡା ଏକଥା କେବେ ଆଉ କାହା ସାଙ୍ଗରେ ଆଲୋଚନା କରିନୁ ତ ଆମେ ... ତୁ ତ ଜାଣିଛୁ ଏସବୁ ବିଷୟ ଜଣାଜଣି ହୋଇଗଲେ ଯାହା ହୁଏ ...'

'କାହିଁକି ବାପା ? ଏଇ ତ ଅଳ୍ପ ସମୟ ଆଗରୁ ଆପଣମାନେ ଗୀତାର ବାପା ମା'ଙ୍କୁ କେତେ ସୁନ୍ଦର ବୁଝାଇ ଦେଲେ ଯେ ଏଥିରେ କଳଙ୍କ ନାହିଁ । ମାନସିକ ରୋଗ ଆଉ ପାଞ୍ଚଟା ରୋଗ ଭଳି ରୋଗଟିଏ । ... ଅଥଚ ନିଜ ବେଳକୁ କାହିଁକି ଏତେ କୁଣ୍ଠା ?'

ବୋହୂକୁ କ'ଣ କେମିତି ବୁଝାଇବେ ସରୋଜ, ଅଞ୍ଜଳି ?

'ତୋତେ କଷ୍ଟ ଦେବାକୁ, ବିବ୍ରତ କରିବାକୁ ଆମେ ଚାହିଁଲୁ ନାହିଁ ।' ପୁଣି ଥରେ ସେଇ ଏକା କଥା କହିଲେ ସରୋଜ ।

'ମୋତେ ବିବ୍ରତ ନ କଲେ କ'ଣ ସମସ୍ୟାଟା ଚାଲି ଯାଇଥାଆନ୍ତା ? ମନକୁ ମନ ତା'ର ସମାଧାନ ହୋଇ ଯାଇଥାଆନ୍ତା ? ଆପଣମାନେ ଜାଣନ୍ତି ସହଜରେ ସମାଧିତ ହେବା ଭଳି ସମସ୍ୟା ଏ ନୁହଁ । ତା' ଛଡା ... ତା' ଛଡା ସିଦ୍ଧାର୍ଥଙ୍କ ଆଡ୍‌ଜଷ୍ଟମେଣ୍ଟ ଡିସ୍‌ଅର୍ଡର୍ ତ ଆଉ ଆମ ବାହାଘର ପରେ ଆରମ୍ଭ ହେଇନି । ଏଇଟା ନିଶ୍ଚୟ ଜଣା ପଡିଛି ତାଙ୍କର ପିଲା ଦିନରୁ । କିମ୍ବା ହୁଏତ ବୟୋଃସନ୍ଧି ସମୟରୁ । ନୁହଁ କି ?'

ଏଥର ସିଧା ହେଇ ସେ ଚାହିଁଲା ସରୋଜଙ୍କୁ । ପୁଣି ଅଞ୍ଜଳିଙ୍କୁ । ତା' ଅନୁମାନ ଯେ ଏକଦମ୍ ଠିକ୍ ତା' ଶାଶୂ ଶ୍ୱଶୁରଙ୍କ ମୁହଁ ଦେଖି ସେ ସେଇ ମୁହୂର୍ତ୍ତରେ ବୁଝିଗଲା । ନିଜ ମା'ଠୁଁ ବଳି ଅଧିକ ସ୍ନେହ କରୁଥିବା ଶାଶୂ । ତା' ଜୀବନରୁ ବାପାଙ୍କ ଅଭାବ ଭୁଲେଇ ଦେଇଥିବା ଶ୍ୱଶୁର । ଶୁଭ୍ରା ବୁଝୁଥିଲା ଯେ ସେମାନଙ୍କ ମନରେ କଷ୍ଟ ଦେବା ପାପ । ହେଲେ ଏ ପାପ ତାକୁ ଆଜି କରିବାକୁ ହେବ । ସର୍ବଂସହା ଧରିତ୍ରୀ ହେବାକୁ ଯାଇ ନିଜ ଆଖିରେ ସେ ସବୁ ଦିନ ପାଇଁ ଛୋଟ ହେଇ ଯାଇ ପାରିବ ନାହିଁ !

ରହି ରହି ସେ କହିଲା, 'ଆଜି ମୁଁ ଗୋଟିଏ ପ୍ରଶ୍ନର ଉତ୍ତର ଜାଣିବାକୁ ଚାହେଁ । ... ଆପଣମାନେ ତ ଜାଣିଥିଲେ ଯେ ଆପଣଙ୍କର ପୁଅଟି ଏଇମିତି । ସବୁ ଲୁଚେଇ ବାହାଘର କରେଇ ଦେଲେ କେମିତି ? ଗରୀବ ଘରର ଝିଅଟିଏ କ'ଣ ଝିଅ ନୁହଁ ?'

ପଥର ହୋଇ ଯାଇଥିବା ସରୋଜ ଓ ଅଞ୍ଜଳିଙ୍କୁ ଏକା ଛାଡି ଦେଇ ଶୁଭ୍ରା କୋଠରୀ ଭିତରୁ ବାହାରି ଆସିଲା ।

ହାଇଦ୍ରାବାଦ୍‌ର ଏ ପାଖରେ ବେଶୀ ଦୋକାନପତ୍ର ନାହିଁ, ଛୋଟ ଅଫିସ୍ ଅଞ୍ଚଳ । ଅଫିସ୍‌ମାନ ବନ୍ଦ ହୋଇ ସାରିଲାଣି କାହିଁ କେତେବେଳୁ । ବାହାରେ ଅନ୍ଧାର । ତଥାପି ଭୟ ଲାଗିବା ଭଳି କିଛି ନାହିଁ । ଜହ୍ନ ଆଲୁଅରେ ଭରସା ଅଛି । ନିଜକୁ ସେଇ ଜହ୍ନ ଆଲୁଅରେ ବୁଡାଇ ଦେଇ ଶୁଭ୍ରା ନିଜ ପାଇଁ ରାସ୍ତା ଖୋଜୁଥିଲା ।



# ଆରଣ୍ୟକ

ସମସ୍ତଙ୍କର ସେଇ ଗୋଟିଏ କଥା– ଦରକାର କ'ଣ ?

ଆଗ ବାପା ବିରକ୍ତ ହେଲେ, ତା'ପରେ ଶୁଣେଇ ଦେଲା ମା' । ଦୁଇ ବଡ଼ ଭଉଣୀ ଓ ଭିଣେଇ ମଧ୍ୟ ସୁଯୋଗ ପାଇ ଅଭିଭାବକତ୍ୱ ଜାହିର କରିବାକୁ ପଛେଇଲେନି ।

ଆକ୍ରମଣ ଓ ଉପଦେଶର ଚକ୍ରବ୍ୟୂହରୁ ମୁକ୍ତି ପାଇବା ପାଇଁ ପ୍ରତିମା କହିଦେଲା, 'ସୁନୀଲ କିନ୍ତୁ ଏଥିରେ ବହୁତ ଖୁସୀ । ତାଙ୍କର କୌଣସି ଆପତ୍ତି ନାହିଁ ।' ଏବଂ ସତରେ ବର୍ତ୍ତିଗଲା ସେ ।

ପ୍ରତିମାର ଆଶାବାଡ଼ି ଏଇ ସୁନୀଲ ଯାହା ସାଙ୍ଗରେ ଦୁଇ ପରିବାରର ସମ୍ମତି ନେଇ ଭବିଷ୍ୟତ ସମ୍ପର୍କଟିଏ ଗଢ଼ିବାର ସମ୍ଭାବନା ରହିଛି । ନିଜ ପରିବାରର ଆପତ୍ତି, ଅନିଚ୍ଛାକୁ ସବୁବେଳେ ସୁନୀଲ ନାଁ ନେଇ ଏଡ଼ାଇଯାଏ ସେ । ଏଥର ଭଳି ।

ପ୍ରତିମାର ଏଇ ନିଷ୍ପତ୍ତିରେ ସୁନୀଲର ଯେ ଆପତ୍ତି ନ ଥିଲା, ତା' ନୁହଁ । କିନ୍ତୁ ତା'ର ଦୁର୍ବଳ ଆପତ୍ତିକୁ ସମ୍ମତିରେ କେମିତି ବଦଳେଇ ନେବାକୁ ହୁଏ, ସେ କୌଶଳ ପ୍ରତିମାକୁ ଭଲ ଭାବରେ ଜଣା । ସ୍ୱସ୍ତିର ନିଶ୍ୱାସ ନେଇ ସେ ନୂଆ ଆରମ୍ଭ ହୋଇଥିବା ଏନ୍.ଜି.ଓ.କୁ ନିଜର ସମ୍ମତି ଜଣେଇ ଦେଲା । ସହର ଶେଷ ଆଡ଼କୁ ଥିବା ବସ୍ତିରେ ସେ ପିଲାଙ୍କୁ ପାଠ ପଢ଼େଇବ ।

ତା'ର ଏ ନିଷ୍ପତ୍ତି କ୍ଷଣିକ ଭାବାବେଗର ନୁହଁ । ସ୍କୁଲ୍ ଶେଷ କରି କଲେଜରେ ପାଦ ଦେବା ଦିନଠୁଁ ଏଇ ଭଳି କିଛି କରିବା କଥା ସେ ଚିନ୍ତା କରି ଆସିଛି । ଏତେ ବର୍ଷର ଯୋଜନା, କଳ୍ପନାକୁ ଅନ୍ୟମାନଙ୍କ କଥାରେ ପ୍ରତିମା ଆଡେଇ ଦେଇ ଥାଆନ୍ତା କେମିତି ?

ସ୍କୁଲ୍ ଘର ସଦ୍ୟ ତିଆରି ହୋଇଛି । ଅସ୍ଥାୟୀ ବସ୍ତିର ସ୍କୁଲ୍ ଘରଟି କିନ୍ତୁ ନିହାତି ଅସ୍ଥାୟୀ ନୁହଁ । ଇଟା ତିଆରି । ପ୍ରଥମ କେଇ ବର୍ଷ କାମ ଚଳେଇବା ପାଇଁ ସେତିକି ଯଥେଷ୍ଟ । ପରେ ଦରକାରହେଲେ ଆହୁରି ଭଲ ଭାବରେ ତିଆରି କରାଯିବ ।

'ତୁମେ ତା'ହେଲେ ମନ ବଦଳେଇବନି ? ସେଇଠି ଜଏନ୍ କରିବ ?' ସୁନୀଲ୍ ଷ୍ଟେସନ୍ ପାଖ ଦୋକାନ ସାମ୍ନାରେ ଠିଆ ହୋଇ ମାଟି ଖୁରାରେ ଚିନି ସିରା ଭଳି ମିଠା ଚାହା ପିଉ ପିଉ ପଚାରିଲା ।

ମନେ ମନେ ପ୍ରତିମା ବିରକ୍ତ ହେଲା । ଏଇ ଏକା କଥା ଆଉ କେତେ ଥର ପଚାରିବ ସେ ? ଏଇ ମୁହୂର୍ତ୍ତରେ ଅନ୍ତତଃ ଆଉ ପଚାରିବାର କୌଣସି ମାନେ ହୁଏ ନାହିଁ । ଯଦିବା ପ୍ରତିମା ମନା କରିଦେବ, କହିଦେବ ଯେ– ନା, ସେ ବସ୍ତି ସ୍କୁଲ୍‌ରେ ପଢେଇବନି, ତା'ପରେ କ'ଣ ହେବ ? ତାକୁ ବାହା ହୋଇ ଘରକୁ ନେଇଯିବ କି ସୁନୀଲ ?

ବାହାଘରର ପ୍ରତିଶ୍ରୁତି ଅଛି, କିନ୍ତୁ ଏବେ ନୁହଁ । ଅତି ସାମାନ୍ୟ ଦରମାରେ ଯେଉଁଠି ତିନି ଜଣଙ୍କ ସାଙ୍ଗରେ ମେସ୍‌ରେ କୌଣସି ମତେ ସୁନୀଲକୁ ଦିନ କଟେଇବାକୁ ହୁଏ, ସେଇ ଚାକିରିର ଜୋର୍‌ରେ ବାହାଘର ଆଲୋଚନା କରି ହୁଏ ନାହିଁ । ପ୍ରତିମା ବି.ଏ. ପାସ୍ କରିଛି । କିନ୍ତୁ ସାଧାରଣ ଭାବରେ ବି.ଏ. ଡିଗ୍ରୀ ହାସଲ କରିଥିବା ମଣିଷକୁ ଆଜିକାଲି ଭଲ ଚାକିରି ସହଜରେ ମିଳେ ନାହିଁ । ମିଳିଲେ ବି ପ୍ରତିମା କରିବ କାହିଁକି ? ତା'ର ସବୁ ଇଚ୍ଛାକୁ ଅନ୍ୟମାନଙ୍କ ଇଚ୍ଛା ଆଗରେ ଜଳାଞ୍ଜଳି ଦେଇଦେବ କାହିଁକି ?

ଟ୍ରେନ୍ ଆସିଗଲା ।

ଏଇ ଟ୍ରେନ୍‌ରେ ଏକା ଏକା ବେଶ୍ କେତେ ଥର ଯିବା ଆସିବା କରିଛି ପ୍ରତିମା, କିନ୍ତୁ ଏପାଖ ଅଞ୍ଚଳକୁ ସେ କେବେ ଆସିନି । ହାତରେ ଧରିଥିବା ଖାତାରେ ଲେଖା ଥିବା ଷ୍ଟେସନ୍ ନାଁ କୁ ଆଉ ଥରେ ପଢିଲା ସେ । ଏଇତ, ହେଇଗଲା ।

ଆଜି ଏଠିକି ଆସିବା ପୂର୍ବରୁ ତା'ରି ଭଳି ଆଉ କେତେ ଜଣଙ୍କ ସହିତ ପ୍ରତିମାକୁ ସାତ ଦିନର ଟ୍ରେନିଙ୍ଗ୍ ନେବାକୁ ହୋଇଥିଲା । ସମସ୍ତେ ତା'ରି ଭଳି ସାଧାରଣ ଗ୍ରାଜୁଏଟ୍ ଏବଂ କାହାରି ପଢେଇବାର ଅଭିଜ୍ଞତା ନାହିଁ । ଯଦିଓ ବସ୍ତି ପିଲାଙ୍କୁ ଅକ୍ଷର ଚିହ୍ନା କରେଇବା ପାଇଁ ବିଶେଷ ଯୋଗ୍ୟତାର ଆବଶ୍ୟକତା ନ ଥାଏ, କିଛିଟା ତ ଜାଣି ରଖିବା ଭଲ । ତା'ଛଡା ପିଲାଙ୍କ ପ୍ରତି କଠୋର ନ ହୋଇ କେମିତି ମନେଇ ରଖିବାକୁ ହୁଏ– ସେଇଟା ଶିଖିବା ବହୁତ ଜରୁରୀ ।

ସାତ ଦିନର ପ୍ରଶିକ୍ଷଣ ଏବଂ ଦିନକର ବସ୍ତି ସମ୍ପର୍କିତ ୱାର୍କ୍‌ଶପ୍– ଏସବୁ କିନ୍ତୁ ପ୍ରତିମାକୁ ବସ୍ତି ଜଗତର ବାସ୍ତବତା ପ୍ରତି ପ୍ରସ୍ତୁତ କରି ନ ଥିଲା ।

ଏଇ ଅଞ୍ଚଳକୁ ତାହେଲେ ବସ୍ତି କହନ୍ତି ! ସାବଧାନରେ ଟ୍ରେନ୍‌ରୁ ଓହ୍ଲେଇବା ବେଳେ ପ୍ରତିମା ନିଜକୁ କହିଲା । ସେ ଦାରିଦ୍ର୍ୟ ଦେଖିଛି । ଜଣେ କିରାଣିର ଶେଷ ସନ୍ତାନ ହିସାବରେ ବିଶେଷ କିଛି ବିଳାସରେ ସେ ବଢି ନ ଥିଲା । ଟଣାଟୁଣି ଧାର ଦେଣାର ସଂସାର । କିନ୍ତୁ ପାଦ ତଳେ ନରମ ହେଉ ପଛକେ ମାଟି ଥିଲା । ମୁଣ୍ଡ ଉପରେ ପତଳା ହେଉ ପଛକେ ଛାତଟିଏ ଥିଲା । ପୃଥିବୀ ଆଖିରୁ ବଞ୍ଚାଇବା ପାଇଁ

ନିଜ ଚାରି ପଟେ ଚାରି କାନ୍ଥ ମଧ ଥିଲା ।

ଏଠି ସେସବୁ କିଛି ନାହିଁ । ପାଦ ତଳର ମାଟି ମାଟି ନୁହଁ, ପ୍ରାୟ ନର୍ଦ୍ଦମା । ମୁଣ୍ଡ ଉପରର ଫଟା ଆଜ୍‌ବେଷ୍ଟସ୍ ଛାତ ବି ଛାତ ବୋଲାଇବାର ଯୋଗ୍ୟ ନୁହଁ । ଆଉ ବାକୀ ରହିଲା ଚାରି କାନ୍ଥର ନିରାପତ୍ତା । କାନ୍ଥ ଯେଉଁଠି କିଛି ପ୍ଲାଷ୍ଟିକ୍ ଚଦର ଓ କିଛି ଭଙ୍ଗା ଟିଣ ଦେଇ ତିଆରି, ସେଠି ନିରାପତ୍ତା ଭଳି ଦୁର୍ଲଭ ବସ୍ତୁକୁ ଖୋଜିବାର କ'ଣ କିଛି ମାନେ ହୁଏ ?

ପ୍ରତିମା ସାବଧାନରେ ପାଦ ଥାପି ଥାପି ହାଉଳାଉ ହେଉଥିବା ମଣିଷମାନଙ୍କର କୌତୁହଳୀ ଦୃଷ୍ଟି ଅତିକ୍ରମ କରି ଆଗେଇ ଚାଲିଥିଲା । ତାକୁ କୁହାଯାଇଥିଲା ବସ୍ତିର ପ୍ରାୟ ଶେଷ ମୁଣ୍ଡରେ ସ୍କୁଲ୍ ଘର ତିଆରି ହୋଇଛି । ପାଇବାରେ ଅସୁବିଧା ହେବନି । କାରଣ ଆଖପାଖରେ ଆଉ କିଛି ନାହିଁ । ଏବଂ ସ୍କୁଲ୍ ଘରର କାନ୍ଥ ଇଟା ତିଆରି ।

କାହୁଅ ପଚ୍ ପଚ୍ ବସ୍ତି ଶେଷ । ସ୍କୁଲ୍ ଘର କାହିଁ ? ପ୍ରତିମା ଚାରିଆଡ଼େ ଆଖି ବୁଲାଇଲା । ନା, ଦେଖା ଯାଉନି । କାହାକୁ ପଚାରିଲେ ହୁଅନ୍ତା । କିନ୍ତୁ ବସ୍ତିରେ ଉଛୁଳି ପଡୁଥିବା ମଣିଷମାନଙ୍କର ଏପାଖରେ ଅସ୍ତିତ୍ୱ ହିଁ ନାହିଁ । ଦୂରରେ ବୋହି ଯାଉଥିବା ନର୍ଦ୍ଦମା ନାଳ ପାଖରେ ପଡିଥିବା ଭଙ୍ଗା ପଥରର ବେଦିରେ ଚାରି ପାଞ୍ଚ ଜଣ କିଏ ବସିଛନ୍ତି । ସେଇମାନଙ୍କୁ ପଚାରିଲେ ହୁଅନ୍ତା ।

କିଛି ବାଟ ଆଗେଇ ଯାଇ ପ୍ରତିମାର ପାଦ ଯେମିତି ଅଟକିଗଲା । ବେଦି ଉପରେ ବସିଥିବା ପାଞ୍ଚ ଜଣଙ୍କ ଚେହେରା ଏଥର ଟିକିଏ ପରିଷ୍କାର ହେଇଛି । ଦେହରେ ଛିଣ୍ଡା ହାତକଟା ଗେଞ୍ଜି, ରଙ୍ଗଛଡା ପ୍ୟାଣ୍ଟ୍ , ଆଖିମାନ ଲାଲ୍, ହାତରେ ବିଡି– ଏମାନଙ୍କ ଭଳି ମଣିଷଙ୍କୁ କ'ଣ କମ୍ ଦେଖିଛି ସେ ? ଦୂରରୁ ଦେଖି ନେଇ ବାଟ କାଟି ଚାଲିଯିବାକୁ ହେଇଛି । ଏବେ ତା'ର ଗତି ପୁଣି ସେଇମାନଙ୍କ ପାଖକୁ !

ପ୍ରତିମା ଢୋକ ଗିଳିଲା । ଏଠୁ ପଳାଇବାର ରାସ୍ତା ବି ସହଜ ନୁହଁ । କ'ଣ କରିବ ? ପଚାରିବ ସେମାନଙ୍କୁ ? ପଚାରିବାକୁ ହିଁ ହେବ । ଉପାୟ ନାହିଁ । କିଏ ଜାଣେ, ବାଟ କାଟି ଚାଲିଯିବା ଅପେକ୍ଷା ହୁଏତ ମୁହାଁମୁହିଁ ହୋଇ ସିଧାସଳଖ ପଚାରି ଦେବା ଭଲ ।

ଗିଳିଯିବା ଭଳି ଚାହିଁ ରହିଛନ୍ତି ପାଞ୍ଚ ଜଣ । ନିଜ ନିଜର ହାତ ବିଡି ପ୍ରତି କାହାର ଲକ୍ଷ୍ୟ ନାହିଁ । ଜ୍ୱଳନ୍ତ ଅଙ୍ଗାର ଭଳି ଦୃଷ୍ଟି ଯେମିତି ତା' ଦେହରେ ପଶି ଯାଉଛି । ପ୍ରତିମା ସାଲୁଆର୍ କମିଜ୍‌ର ଓଢଣି ସଜାଡି ନେଲା । ଦୁଇ ପାଦ ଆଗେଇ ଯାଇ ପଚାରିଲା, 'ଏଠି ସ୍କୁଲ୍‌ଟା କୋଉଠି, କହି ପାରିବେ ?'

ସ୍କୁଲ୍ ! ପରସ୍ପରର ମୁହଁକୁ ଚାହିଁଲେ ସେମାନେ । କିଛି ମୁହୂର୍ତ୍ତ ପୂର୍ବର ଚାପା-

ଉତ୍ତେଜନା କ୍ଷୀଣ ହୋଇଛି । ଜଣେ କେହି ଦୂରର ବିଶାଳ ବରଗଛ ଆଡକୁ ଆଙ୍ଗୁଠି ଦେଖାଇ ଦେଲା । ମୁଣ୍ଡ ବଙ୍କେଇ ପ୍ରତିମା ଦେଖିଲା ଯେ ବରଗଛର ଅନ୍ୟପଟେ ମାଟି ରଙ୍ଗ ସହ ମିଶିଯିବା ଭଳି ଛୋଟ ଘରଟିଏ ।

'ଥ୍ୟାଙ୍କ୍ ୟୁ ।' ବୁଲି ପଡି ପ୍ରତିମା ଚାଲିଲା ସେଇ ଆଡେ । କିନ୍ତୁ ନିଜ ଦେହରେ ଯେ ବେଦି ଉପରେ ବସିଥିବା ଟୋକାଙ୍କ ଦୃଷ୍ଟି ଗଳି ଯାଉଛି, ତା' ସେ ଠିକ୍ ଅନୁଭବ କରି ପାରୁଥିଲା ।

ବରଗଛ ପାଖରେ ବୁଲିଯାଇ ସେ ସ୍ୱସ୍ତିର ନିଶ୍ୱାସ ନେଲା । ସାମ୍ନାରେ ସ୍କୁଲ୍ । ଏନ୍.ଜି.ଓ. ତରଫରୁ ତାକୁ କୁହା ଯାଇଥିଲା ଯେ ଇଟା ତିଆରି ଘର । କିନ୍ତୁ ଇଟାମାନ ଗୋଟା କି ଭଙ୍ଗା– ତା' ନେଇ କେହି ଅବତାରଣା କରି ନ ଥିଲେ । ପ୍ରତିମା ବି ଭାବି ପାରି ନଥିଲା ଯେ ଦେଶ ବିଦେଶର ବହୁ କର୍ପୋରେସନ୍‌ଠୁଁ ସାହାଯ୍ୟ ପାଉଥିବା ଏନ୍.ଜି.ଓ.ଟି ଶେଷରେ ଏଇ ଭଳି ସିମେଣ୍ଟ ବୋଳା ଭଙ୍ଗା ଇଟାର ଘରଟିଏ ତିଆରି କରି ତାକୁ ସ୍କୁଲ୍ ଆଖ୍ୟା ଦେଇଦେବ । ଭଙ୍ଗା ଇଟାର କାନ୍ଥ ଉପରେ ପୁଣି ହଳଦିଆ ମାଟିଆ ମିଶା କିମ୍ଭୂତକିମାକାର ରଙ୍ଗ ବୋଳା ହୋଇଛି । କୋଉଠୁ କିଛି ବଳି ଯାଇଥିଲା ବୋଧହୁଏ । ଯିଏ ମାଗଣାରେ କରିଛି ଏ କାମଟି, ସେ ଆଉ ରଙ୍ଗ ନ କିଣି ସବୁ ବଳକା ରଙ୍ଗକୁ ଏକାଠି କରି ସଦୁପଯୋଗ କରିଛି ।

ବେଶ୍ ! ପାହାଚରେ ପାଦ ଦେଲା ପ୍ରତିମା ।

ସ୍କୁଲ୍ କହିଲେ ଗୋଟିଏ ବୋଲି କୋଠରି । ପ୍ରାୟ ନିସ୍ତବ୍ଧ । ଭିତରେ କୌତୂହଳ ଓ ଭୟ ନେଇ ବିରସ ଚେହେରାର ସାତଟି ଭିନ୍ନ ଭିନ୍ନ ବୟସର ପିଲା । ଆଉ ତାକୁ ଇ ଅପେକ୍ଷା କରି ବସିଥିବା ଏନ୍.ଜି.ଓ.ର ଜଣେ କର୍ମଚାରୀ ମାନସ । ଟ୍ରେନିଙ୍ଗ୍ ବେଳେ ତାକୁ ସେ ଦେଖିଥିଲା । ଚାପା ସ୍ୱରରେ ମାନସ ପଚାରିଲା, 'ଡେରି ହୋଇଗଲା ? ବାଟରେ କିଛି ଅସୁବିଧା ହେଇନି ତ ?'

'ନା । ସ୍କୁଲ୍ କୋଉଠି ଠିକ୍ ଜାଣିପାରିଲିନି । ଖୋଜିବାରେ ଡେରି ହୋଇଗଲା । କାଲିଠୁଁ ଆଉ ଅସୁବିଧା ହେବନି ।... ଏଠି କ'ଣ ଖାଲି ଏଇ ସାତ ଜଣ ପିଲା ?'

'କେତେ କଷ୍ଟରେ ସେମାନଙ୍କ ବାପା ମା' ଛାଡିଛନ୍ତି !' ହସିଲା ମାନସ । 'ଏଠି ପାଠ ପଢେଇବା ତୁମ ପାଇଁ ଯେତେ ବଡ଼ ଚ୍ୟାଲେଞ୍ଜ୍ ନୁହଁ, ପିଲାଙ୍କୁ ସ୍କୁଲ୍‌ରେ ଧରି ରଖିବା ତା'ଠୁଁ ବଡ଼ ଚ୍ୟାଲେଞ୍ଜ୍ । ଆଉ ଯଦି ଛାତ୍ରଛାତ୍ରୀ ସଂଖ୍ୟା ବଢେଇ ପାରିଲ, ତାହେଲେ କଥା କାହିଁ ? ନୋବେଲ୍ ପୁରସ୍କାର ପାଇବାର ଯୋଗ୍ୟ ହୋଇଯିବ ତୁମେ ।'

ପ୍ରତିମା କିଛି କହିଲା ନାହିଁ ।

ସାମ୍ନାରେ ଥିବା କାଗଜ ଉପରେ ଆଖି ବୁଲେଇ ନେଇ ମାନସ ଯୋଡିଲା, 'ଦଶଟାରୁ ଦୁଇଟା ଯାଏଁ କ୍ଲାସ୍ ହେବ । ମଝିରେ ଖାଇବା ଛୁଟି କରିବାର କିଛି ମାନେ ହୁଏନି । ଏମାନଙ୍କ ଭିତରୁ କେହି ଘରୁ ଖାଇବା ନେଇ ଆସିବା ଅବସ୍ଥାରେ ନାହାନ୍ତି । ସ୍କୁଲ୍ ଛୁଟି ବେଳକୁ ଜଣେ ଆସି ତୁମକୁ ଜଳଖିଆ ପୁଡିଆ ଦେଇଯିବ । ତାକୁ ପିଲାଙ୍କ ଭିତରେ ବାଣ୍ଟି ଦେବ । ... ପାଖରେ ତୁମର ମୋବାଇଲ୍ ଅଛି ତ ? ଦରକାର ହେଲେ ଆମକୁ ଫୋନ୍ କରି ଦେବ ।' ମାନସ ଚାଲିଗଲା ।

ବଡ଼ ବଡ଼ ଆଖି କରି ଚାହିଁ ରହିଛନ୍ତି ସାତ ଜଣ ପିଲା । ଓଠରେ ହସ ଖେଳାଇ ପ୍ରତିମା ସେମାନଙ୍କ ଉପରେ ଦୃଷ୍ଟିଦେଲା । ଆଜି ପାଠପଢା କମ୍ ହେବ । ପରସ୍ପରକୁ ଚିହ୍ନିବା ଜାଣିବାରେ କଟିଯିବ ବେଶୀ ଭାଗ ସମୟ ।

ସେଇ ଆରମ୍ଭ । ତା'ପରେ ଛୋଟ ଛୋଟ ପାଦ ପକାଇ ଚାଲିଲା ତା'ର ଅଭିଯାନ । ସେ ପିଲାମାନଙ୍କର ସ୍କୁଲ୍ ଶିକ୍ଷୟିତ୍ରୀ, ବାନ୍ଧବୀ ଏବଂ ପରାମର୍ଶଦାତ୍ରୀ । କାହା ଘରେ ବାପା ମଦ ପିଇ ହୁଲସ୍ଥୁଲ୍ କଲା, ସେ ଖବର ତାକୁ ଜାଣିବାକୁ ହେବ । କାହା ମା' ଜୀବନ ଯନ୍ତ୍ରଣାରେ ଅତିଷ୍ଠ ହୋଇ ପାଖ ପଡୋଶୀ ସମସ୍ତଙ୍କ ସାଙ୍ଗରେ କଳି କରିଲା, ସେ କଥା ବି ପହଞ୍ଚିବ ପ୍ରତିମା ପାଖରେ ।

ପ୍ରତିମା ଯୋଗୁଁ ହେଉ ବା ପଢା ଶେଷରେ ସାମ୍ନାରେ ଉଭା ହେଉଥିବା ଖାଦ୍ୟ ପୁଡିଆ ଲୋଭରେ ହେଉ, ସ୍କୁଲ୍‌ର କିଛିଟା ଉନ୍ନତି ହେଲା । ତିନି ମାସ ଶେଷ ହେବା ବେଳକୁ ପ୍ରଥମରୁ ଆସିଥିବା ପିଲାଙ୍କ ଭିତରୁ କେତୋଟି ତ ଉଭାନ ହୋଇ ଯାଇ ଥିଲେ, କିନ୍ତୁ ଆଉ କେତୋଟି ବି ଉଦୟ ହୋଇ ଥିଲେ । ଏବେ ଛାତ୍ରଛାତ୍ରୀ ସଂଖ୍ୟା ପନ୍ଦର । ପ୍ରତିମାକୁ ବେଶ୍ ଭଲ ଲାଗୁଥିଲା । ମନ ବି ଲାଗିଯାଇଥିଲା ।

କେବଳ ଗୋଟିଏ ବିଷୟକୁ ଛାଡି ଦେଲେ ।

ଷ୍ଟେସନ୍‌ରୁ ସ୍କୁଲ୍‌କୁ ଏବଂ ସ୍କୁଲ୍‌ରୁ ଷ୍ଟେସନ୍‌କୁ ଯିବା ଆସିବା ସମୟଟା ବଡ ଅସ୍ୱସ୍ତିକର । ବସ୍ତି ଲୋକଙ୍କର କୌତୁହଳ ତ ତାକୁ ନେଇ କମି ଯାଇଥିଲା, କିନ୍ତୁ ନର୍ଦ୍ଦମା ପାଖରେ ବସିଥିବା ଟୋକାମାନଙ୍କର ଶ୍ୱାନ ଦୃଷ୍ଟିରେ କୌଣସି ପରିବର୍ତ୍ତନ ହୋଇ ନ ଥିଲା । ଭଙ୍ଗା ସିମେଣ୍ଟ ବେଦୀ ଉପରେ କୋଉ ଦିନ ମଣିଷ ସଂଖ୍ୟା କମିଯାଏ, କୋଉ ଦିନ ବା ବଢି ଯାଏ । କିନ୍ତୁ ଖାଲି ହୁଏନି କେତେବେଳେ । ସ୍କୁଲ୍ ଯିବା ବେଳେ ନୁହଁ କି ସ୍କୁଲ୍‌ରୁ ଫେରିବା ବେଳେ ବି ନୁହଁ । କୋଉ ଦିନ ସେଠି ରେଡିଓରେ ସିନେମା ଗୀତ ବାଜେ ତ କୋଉ ଦିନ ସେମାନେ ନିଜେ ନିଜେ ଗାୟକ ହୋଇ ଯାଆନ୍ତି । ମୋବାଇଲ୍ ଫୋନ୍‌କୁ ଶକ୍ତ କରି ହାତରେ ଧରି ସେତିକ

ରାସ୍ତା ଯିବା ଆସିବା କରେ ପ୍ରତିମା ।

ବେଳେ ବେଳେ ଅବାକ୍ ହୁଏ ସେ । ଏ ଟୋକାଦଳଙ୍କର କ'ଣ କୌଣସି କାମ ଧନ୍ଦା ନାହିଁ । ସମୟ ଅପଚୟ ନ କରି ଦେହ ଖଟେଇଲେ କିଛିଟା ତ ରୋଜଗାର ହୁଅନ୍ତା ।

ସେଥର ସ୍କୁଲ୍ ଦେଖିବାକୁ ଆସିଥିବା ବେଳେ ସେ ମାନସକୁ ଥରେ ପଚାରିଥିଲା । ମାନସ କହିଥିଲା, 'ଏମାନେ ତ ପାଠଶାଠ ପଢି ନାହାନ୍ତି । କରିବେ କ'ଣ ?'

'ସବୁ କାମ ପାଇଁ କ'ଣ ପାଠ ଦରକାର ହୁଏ ? ମାଟି ଉଠେଇ ପାରିବେ । ପଥର ବୋହି ପାରିବେ ।'

'ବସ୍ତିରେ ସେସବୁ କାମ କରିବା ଭଳି ଟୋକାଙ୍କର ଅଭାବ ନାହିଁ । କିନ୍ତୁ ଏଇ ଦଳକ କଥା ଅଲଗା । ଆଡ୍ଡା ଦେବା, ବିଡି ଟାଣିବା, ମଦ ଗିଳିବା– ଏସବୁ ଛଡା ଆଉ କିଛି କାମ ନାହିଁ ।'

'ସେଥିପାଇଁ ଟଙ୍କା ଆସେ କୋଉଠୁ ?'

'ଜବରଦସ୍ତି ଘରୁ ଉଠାନ୍ତି ସେମାନେ । ଛୋଟମୋଟ ଖରାପ କାମ କରିବାକୁ ବି ସେମାନଙ୍କର ଅସ୍ୱସ୍ତି ନାହିଁ । ... ଆମ ଏନ୍.ଜି.ଓ. ତରଫରୁ ଏଇ ବସ୍ତି ନେଇ ଯେତେବେଳେ ଅନୁସନ୍ଧାନ ଚାଲିଥିଲା, ସେତେବେଳେ କେତେ କଥା ଆମ ଦୃଷ୍ଟି-ସାମ୍ନାକୁ ଆସିଥିଲା । ଆମ ବ୍ରାଞ୍ଚ୍ ଡାଇରେକ୍ଟର୍ ଏଇ ଟୋକାଙ୍କୁ ନେଇ କିଛି କରିବା କଥା ପ୍ରଥମେ ଉଠେଇ ଥିଲେ । କିନ୍ତୁ କାମଟା ସହଜ ନୁହଁ, ତେଣୁ ପ୍ରଥମେ ବସ୍ତିର ସ୍ୱୀକୃତି ପାଇବା ପାଇଁ ସ୍କୁଲ୍ କଥା ଚିନ୍ତା କରାଗଲା ।... ହେବ କେବେ ହୁଏତ ବସ୍ତିର ଅସାମାଜିକ ଯୁବକଙ୍କ ଉଦ୍ଧାର କାମ ।' ଥଟ୍ଟାରେ କହୁ କହୁ ହଠାତ୍ ମାନସ ଗମ୍ଭୀର ହୋଇଯାଇଥିଲା । ପଚାରିଥିଲା, 'ପ୍ରତିମା, ସେମାନେ ତୁମକୁ ହଇରାଣ କରୁନାହାନ୍ତି ତ ?'

'ନା, ନା, କେହି କିଛି କରନ୍ତିନି ।' ପ୍ରତିମା ତରବର ହୋଇ କହିପକେଇଥିଲା । ଗିଳିଯିବା ଭଳି ଚାହିଁ ରହିବାଟାକୁ ଠିକ୍ ହଇରାଣର ପର୍ଯ୍ୟାୟରେ ପକେଇ ହେବନି ।

'ଯଦି କିଛି ନେଇ ତୁମର ଦୁଶ୍ଚିନ୍ତା ହୁଏ, ତେବେ କହିବ । ତୁମକୁ ଅସୁବିଧାରେ ପକେଇବା ଆମର ଉଦ୍ଦେଶ୍ୟ ନୁହଁ ।'

ସେଦିନ ମୁଣ୍ଡ ଟୁଙ୍ଗାରି ଦେଇଥିଲା ପ୍ରତିମା, କିନ୍ତୁ ଆଉ ସେ ବିଷୟରେ କାହା ସାମ୍ନାରେ କୌଣସି କଥା ଉଠେଇନି । ସୁନୀଲ ପାଖରେ ତ ନୁହଁ, ଘରେ ବି ପ୍ରଶ୍ନ ଉଠୁନି ।

ତା' ମା' ନିହାତି ଅସୁସ୍ଥ, ଅବୁଝା ମଣିଷ । ଅବୁଝା ଯେତିକି, ଅସନ୍ତୁଷ୍ଟ ଓ

ସନ୍ଦେହୀ ସେତିକି । ଭାଗ୍ୟକୁ ସୁନୀଲ କଥାଟା ମୋଟାମୋଟି ସମସ୍ତଙ୍କର ଜଣା, ଦୁଇ ଚିହ୍ନା ପରିବାର ଭବିଷ୍ୟତର ଆତ୍ମୀୟତା ନେଇ କିଛିଟା ନିଶ୍ଚିତ, ନହେଲେ ଏତେ ବେଳକୁ ମା' ଗଗନ ପବନ କମ୍ପେଇ ସାରନ୍ତାଣି । 'କିଏ ଅପେକ୍ଷା କରି ବସିଛି କି ? ଆଜି କ'ଣ ନାଲି ସାଲୁଆର୍ କମିଜ୍ ପିନ୍ଧି ବାହାରିଲୁଣି ?' ବା 'ସତରେ ପାଠ ପଢାଉଛୁ ନା ପାଠ ନାଁରେ ଆଉ କ'ଣ ଚାଲିଛି ?' – ଏଇଭଳି କେତୋଟି ସଂଳାପ ସବୁ ଦିନ ତାକୁ ଶୁଣିବାକୁ ହେଉଥାଆନ୍ତା । କଲେଜ୍ ଯିବା ବେଳେ ଯେମିତି ହେଉଥିଲା ।

କଲେଜର ଶେଷ ବର୍ଷରେ ପଢିବା ବେଳେ ସାନ ଭିଣେଇ ଦିନେ ତାଙ୍କ ମାମୁଁ ପୁଅ ଭାଇ ସୁନୀଲକୁ ନେଇ ଘରକୁ ଆସିଥିଲେ । ସମସ୍ତଙ୍କ ସାଙ୍ଗରେ ତା'ର ପରିଚୟ କରେଇ ଦେଇଥିଲେ । ସୁନୀଲ ସମସ୍ତଙ୍କର ପସନ୍ଦ ହୋଇଯାଇଥିଲା । ପରେ ଯେତେବେଳେ ପ୍ରତିମାର ତା' ସାଙ୍ଗରେ ସମ୍ପର୍କ ସାମାନ୍ୟରୁ ଅଧିକ ହେବାକୁ ଆରମ୍ଭ କଲା, ସେତେବେଳେ ବିଶେଷ ଆପତ୍ତି ରହିଲା ନାହିଁ । ପ୍ରତିମା ଏ ସମ୍ପର୍କକୁ ଏତେ ଦିନ ପାଇଁ ସାଇତି ରଖି ଥାଆନ୍ତା କି ନାହିଁ, ତା' ଆଲୋଚ୍ୟ ବିଷୟ ନିଶ୍ଚୟ । କିନ୍ତୁ ଯେଉଁ ସମ୍ପର୍କ ତାକୁ ଏତେଟା ସାମାଜିକ ସୁରକ୍ଷା ଦେଇଛି, ସେଇଟା ଏତେ ସହଜରେ ସେ କେମିତି ଛାଡି ଦେଇଥାଆନ୍ତା ?

ନା– ମଣିଷ ହିସାବରେ ସୁନୀଲ ଖରାପ ନୁହଁ । ଅବଶ୍ୟ କିଛିଟା ଭୀରୁ ଏବଂ ଅନେକଟା ଦୁର୍ବଳ ଚିତ୍ତ, କିନ୍ତୁ ତା' ଅଭିପ୍ରାୟ ମନ୍ଦ ନୁହଁ । ତଥାପି ପ୍ରତିମା ସ୍କୁଲ୍ ଯିବା ଆସିବା ବେଳର ନିଜ ଅସ୍ୱସ୍ତି କଥା ତାକୁ କିଛି କହି ପାରି ନଥିଲା । ସେ ପ୍ରଥମରୁ ପ୍ରତିମାକୁ ଖୋଳି ତାଡି ବହୁତ କଥା ପଚାରିଥିଲା, ହେଲେ ସ୍କୁଲ୍‌ର ପିଲାମାନଙ୍କର ବୟସ ଦଶରୁ କମ୍ ଜାଣିବା ପରେ ତା' ଆଗ୍ରହ କମିଛି । ଏବେ ଦେଖା ହେଲେ ସେ କେବଳ ନିଜ କଥା କୁହେ । କେମିତି ଦରମା ବଢିବାର ସମ୍ଭାବନା ଅଛି । କେମିତି ମେସ୍ ବଦଳେଇବା କଥା ସେ ଭାବୁଛି । ଏକା ଘର ଭଡା ନେବା ଭଳି ଅବସ୍ଥା ଆସିବାକୁ ଆଉରି ବର୍ଷେ ଦୁଇ ବର୍ଷ ଲାଗିଯିବ, କିନ୍ତୁ ନୂଆ ମେସ୍‌ରେ ନିଜସ୍ୱ କୋଠରିଟିଏ ହୋଇଯିବ ।

ଆଖି ଟିପି ପୁଣି ସେ କହେ, ନିଜସ୍ୱ କୋଠରି ହୋଇଗଲେ ପ୍ରତିମା ସାଙ୍ଗରେ ତା'ର ଏକାନ୍ତ ଭାବରେ ଘନ ଘନ ଦେଖା ହୋଇପାରିବ । ଅନ୍ଧକାର ସିନେମା ହଲ୍‌ର ନିର୍ଜନତା ବା ଘରେ ବାପା ମା'ଙ୍କର ନ ରହିବା ସମୟକୁ ଚାହିଁ ରହିବାକୁ ହେବନି ।

ଏଭଳି ଜଣଙ୍କୁ ପ୍ରତିମା କ'ଣ କହିପାରିଥାଆନ୍ତା ତା'ର ଅସ୍ୱସ୍ତି ନେଇ ?

ଚାଲିଗଲା ଆହୁରି ତିନିମାସ । ଏବେ ପ୍ରତିମା ନିଜ ରୁଟିନ୍‌ରେ ବେଶ୍ ଅଭ୍ୟସ୍ତ । ବସ୍ତିରେ ବି ବେଶ୍ କେତେ ଜଣ ଜାଣି ଗଲେଣି ତାକୁ । ଯିବା ଆସିବା ବେଳେ ଅଟକେଇ ନେଇ ଦୁଇ ଚାରିଟା ସୌଜନ୍ୟମୂଳକ କଥା ପଚାରି ଦିଅନ୍ତି ବା ନିଜ ବିଷୟରେ ପଦେ ଦୁଇ ପଦ ସ୍ୱତଃପ୍ରବୃତ୍ତ ହୋଇ କହିପକାନ୍ତି । ପିଲାମାନଙ୍କ ସାଙ୍ଗରେ ପ୍ରତିମାର ମଧ୍ୟ ଗୋଟିଏ ସ୍ନେହସମ୍ପର୍କ ହୋଇ ଗଲାଣି ।

ଏମିତିରେ ସବୁ ଠିକ୍ ଚାଲିଥିଲା, କେବଳ ନର୍ଦ୍ଦମା ପାଖ ବେଦିରେ ବସୁଥିବା ଟୋକାଙ୍କ ବ୍ୟତୀତ । ପ୍ରତିମା ଜାଣି ପାରୁଥିଲା ଯେ ଗିଳିଯିବା ଦୃଷ୍ଟି ବଦଳିଛି । ଚାହାଣିରେ ବିରୂପତା ବି କମ୍ । କିନ୍ତୁ ସେ ସ୍ୱଚ୍ଛନ୍ଦ ହୋଇପାରିନି । ହୁଏତ ପ୍ରଥମ ଅସ୍ୱସ୍ତିକର ଅନୁଭୂତିର ଅବଶିଷ୍ଟାଂଶ ଏବେ ବି ତା' ଭିତରେ ରହିଯାଇଛି । ନିଜକୁ ସହଜ କରିବାର ଚେଷ୍ଟା ସେ କରେ, କିନ୍ତୁ ବସ୍ତି ପାର ହୋଇ ସ୍କୁଲ୍ ଘର ଆଡକୁ ଯିବା ବେଳେ କାହିଁକି କେଜାଣି ତା' ଦେହ ଶକ୍ତ ହୋଇଯାଏ । ଦୌଡି ଦୌଡି ବାକୀଟା ରାସ୍ତା ପାର ହୋଇଯିବାକୁ ମନ ହୁଏ ।

କାହିଁକି ଯେ ତା' ଭିତରେ ଏତେଟା ସ୍ପର୍ଶକାତରତା, ପ୍ରତିମା ବୁଝି ପାରେନି । ଈଶ୍ୱର ବୋଧହୁଏ ତା' ଭିତରେ ବିପଦର ଗନ୍ଧ ବାରି ନେବାର ଶକ୍ତି ଅଧିକ ଭରି ଦେଇଛନ୍ତି, ଯେଉଁଥିପାଇଁ ସେ କଳ୍ପନାରେ ବିପଦର ଆଶଙ୍କା କରିବସେ ।

ପୂଜା ପୂର୍ବରୁ କିନ୍ତୁ ଯେଉଁ ଘଟଣା ଘଟିଗଲା, ତା' ପ୍ରତିମାର କଳ୍ପନା ଆଦୌ ନୁହଁ ।

ଦଶହରା ନେଇ ସହରରେ ଯେଉଁ ଚାପା ଉତ୍ତେଜନା ଆରମ୍ଭ ହୋଇଯାଇଥିଲା, ତା'ର କିଛି ଛିଟା ସହରତଳିର ଏଇ ବସ୍ତିରେ ବି ପଡିଯାଇଥିଲା । ଏଠିକାର ଅଧିକାଂଶ ସ୍ତ୍ରୀ ଲୋକ ସହରରେ ଠିକା ଚାକରାଣୀ କାମ କରନ୍ତି । ସେମାନଙ୍କୁ ଏଇ ସମୟରେ ନୂଆ ଶାଢି, ବକ୍‌ସିସ୍ ଓ ଦିନେ ଦୁଇ ଦିନ ଛୁଟି ମିଳିଯାଏ । ଠିକ୍ ସେଇମିତି ରିକ୍‌ସା ଟାଣୁଥିବା କେଇ ଜଣଙ୍କୁ ଛାଡି ଦେଲେ ବସ୍ତିର ଅଧିକାଂଶ ପୁରୁଷ କାମ କରନ୍ତି ଛୋଟ କାରଖାନାରେ । ଦରମାପତ୍ର ବା ଅନ୍ୟାନ୍ୟ ସୁବିଧା ନେଇ ଶ୍ରମ-ଆଇନ୍ ସେଠି ଲାଗୁ ହୁଏନି, କିନ୍ତୁ ଏଇ ସମୟରେ ମାଲିକ ବୋନସ୍ ଦିଅନ୍ତି ସମସ୍ତଙ୍କୁ । ସେମାନଙ୍କର ଏକଟଣା ଅଭାବୀ ସଂସାରରେ କିଛିଟା ଖୁସିର ଝଲକ ଖେଳାଇ ଦେବାକୁ ଏତିକି ଯଥେଷ୍ଟ । ମନ ଭିତରର ଆନନ୍ଦ ବେଳେବେଳେ ଚହଲି ଆସୁଥିଲା ବାହାରକୁ । ପ୍ରତିମା ସାଙ୍ଗରେ ଉପରେ ପଡି ବେଶୀ ବେଶୀ କଥା କହୁଥିଲେ ମୁହଁଚିହ୍ନା ମଣିଷମାନେ ।

ହେଲେ ସେଦିନର ମଣିଷ ଜଣକ ମୁହଁଚିହ୍ନା ଆଦୌ ନ ଥିଲା । ଠିକ୍ ଟ୍ରେନ୍‌ରେ

ଉଠିବାକୁ ଯାଉଛି ପ୍ରତିମା, ହଠାତ୍ କୁଆଡୁ ଧାଇଁ ଆସି ତା' ପାଖରେ ଉଭା ହେଲା ସେ । ଖୁବ୍ ଯେମିତି ଗୋଟିଏ ଜରୁରୀ ମିଟିଙ୍ଗ ପାଇଁ ଡେରି ହୋଇଯାଉଛି, ସେଇଭଳି ଭଙ୍ଗୀ କରି ଅଚିହ୍ନା ମଣିଷଟି ପଚାରିଲା, 'କେତେଟା ବାଜିଛି ?'

ଅଚ୍ଛକେ ସମୟ କହି ଦେଇ ଟ୍ରେନ୍ ପାହାଚରେ ପ୍ରତିମା ଉଠିଗଲା । ଆଉ ତା' ପଛେ ପଛେ ଲୋକଟି । ପାଖ ସିଟ୍‌ରେ ବସି ଯାଇ ଆଗ ଭଳି ବ୍ୟସ୍ତ ସ୍ୱରରେ କହିପକାଇଲା, 'କିଛି ମନେ କରିବେନି । ମୋର ଗୋଟିଏ ଜାଗାରେ ପହଞ୍ଚିବାର ଥିଲା ସମୟ ଅନୁସାରେ । ଡେରିହୋଇଗଲା । ଆପଣଙ୍କ ମୋବାଇଲ୍ ଫୋନ୍ ଟିକିଏ ଦେବେ କି ? ଗୋଟିଏ କଲ୍ କରି ଜଣେଇଦେବି । ବାଟରେ ମୋ ମୋବାଇଲ୍‌ଟା କୋଉଠି ଗଳେଇ ପକେଇଛି କି କ'ଣ ।' ଲୋକଟି ସ୍ୱରରେ ଅନୁନୟତା ।

ପ୍ରତିମା ମନେ ମନେ ବିରକ୍ତ ହେଲେ ବି କିଛି ନ କହି ନିଜ ଫୋନ୍ ଲୋକଟି ଆଡକୁ ବଢେଇ ଦେଇଥିଲା । ଲୋକଟି ବି ସାଙ୍ଗେ ସାଙ୍ଗେ ଫେରାଇ ଦେଇଥିଲା ଫୋନ୍‌ଟି । 'ଫୋନ୍ କେହି ଉଠାଉ ନାହାନ୍ତି । ... ଥ୍ୟାଙ୍କ୍ସ୍ ।' ଅନ୍ୟ ଆଡେ ସେ ଉଠି ଯାଇଥିଲା ।

ଏଇଭଳି ଆରମ୍ଭ ହୋଇଥିଲା ଘଟଣାଟି । ଘଟଣା ଆରମ୍ଭରେ କୌଣସି ନାଟକୀୟତା ନ ଥିଲା । କିନ୍ତୁ ଦୁଇଟା ଦିନରେ ଯେମିତି ସବୁ ବଦଳିଗଲା । ସେଦିନ ଦେହ ଭଲ ନ ଥିଲା ପ୍ରତିମାର । ସେ ସ୍କୁଲ୍ ଯାଇ ପାରି ନ ଥିଲା । ସଂଧ୍ୟାବେଳେ ଯେତେବେଳେ ଅଚିହ୍ନା ନମ୍ବରରୁ ତା' ପାଖକୁ ଫୋନ୍ ଆସିଲା ଓ ଜଣେ ପଚାରିଲା, 'ଆଜି ସ୍କୁଲ୍ କାହିଁକି ଆସିଲନି ?'– ସେତେବେଳେ ସେ ଭାବି ନେଇଥିଲା ଯେ ଏନ୍.ଜି.ଓ. ଅଫିସ୍‌ରୁ କେହି ଫୋନ୍ କରିଛି ବୋଧହୁଏ । କେବଳ ଅବାକ୍ ହେଲା ଦୁଇଟି ବିଷୟ ନେଇ । ସେ ସକାଳୁ ନିଜ ଦେହ ଖରାପ କଥା ଅଫିସ୍‌କୁ ଜଣେଇ କହି ଦେଇଥିଲା ଯେ ସେ ସ୍କୁଲ୍ ଯାଇପାରିବନି । ତାହେଲେ ପୁଣି ଫୋନ୍ କାହିଁକି ? ତା'ଛଡା ମାନସ ଭଳି ଜଣେ ଦୁଇ ଜଣଙ୍କୁ ଛାଡିଦେଲେ ତାକୁ 'ତୁମେ' ବୋଲି କେହି ସମ୍ବୋଧନ କରନ୍ତିନି । କିଏ ଏ ?

'କିଏ କହୁଛନ୍ତି ?' ସେ ପଚାରିଲା ।

ଲାଇନ୍ କଟିଗଲା । ମୋବାଇଲ୍ ଫୋନ୍‌ରୁ ଆସିଥିବା ନମ୍ବର ଦେଖି ସେ ଫୋନ୍ କଲା । କାହା ନମ୍ବର ନୁହଁ । ଫୋନ୍ ବୁଥ୍ ।

ସେଇ ଯେଉଁ ଫୋନ୍ ଆସିଲା, ତା'ପରେ ଯେମିତି ବନ୍ଧ ଭାଙ୍ଗିଗଲା । ବେଳ ନାହିଁ, ଅବେଳ ନାହିଁ – ଫୋନ୍ କଲ୍ । ସେଇ ଏକା ପୁରୁଷର ଫୋନ୍ ଯିଏ କି ନିଜ ନାଁ ନକହି ଖେଳାଇଖେଳାଇ କଥା କହେ । ପ୍ରଶ୍ନ ପଚାରିଲେ ଉତ୍ତର ଦିଏନି ।

କିନ୍ତୁ ପ୍ରତିମା ବିଷୟରେ ଯେମିତି ସବୁ ଖବର ରଖିବାକୁ ସେ ବଦ୍ଧପରିକର । କିଏ ଏତେ ଖବର ଯୋଗାଏ ତାକୁ ? ବିଶେଷ କରି ବ୍ୟକ୍ତିଗତ ବିଷୟରେ । ସବୁ ଖବର ଲୋକଟି ଜାଣିନିଏ । ପ୍ରତିମା କ'ଣ ପିନ୍ଧିଲା, କୁଆଡେ ଗଲା, କାହା ସାଙ୍ଗରେ ଦେଖା କଲା । ଯେମିତି ପ୍ରତିମାକୁ ବେଢାଇ ଲୋକଟିର ଭିଡିଓ କ୍ୟାମେରାଟିଏ ଚାଲୁ ରହିଛି । ଲୋକଟିକୁ ଚ୍ୟାଲେଞ୍ଜ୍ କରି ପ୍ରଶ୍ନ କଲେ ବା ବିରକ୍ତ ହେଲେ ଲାଇନ୍ କଟିଯାଉଥିଲା । ମୋବାଇଲ୍‌ରେ ନମ୍ବର ଦେଖି ପାଲଟା ଫୋନ୍ କଲେ ବି ଲାଭ ନାହିଁ । ବିଭିନ୍ନ ପବ୍ଲିକ୍ ଫୋନ୍ ବୁଥ୍ ।

ପ୍ରତିମାର ଦିନ ଅସ୍ତବ୍ୟସ୍ତ ହୋଇଯାଉଥିଲା । ସବୁବେଳେ ମନରେ ଶଙ୍କା । କିଛିଟା ଆତଙ୍କ ବି । କାହାକୁ କହିବ କି ସେ ଏ ବିଷୟରେ ? ସେ ଭାବି ହୋଇଥିଲା ।

ବାପାଙ୍କୁ କହିଲେ ସେ ଶୁଣି ନ ଶୁଣିବା ଭଳି ରହିଯିବେ । ତାଙ୍କର ସରକାରୀ ଜୀବନ ଏବଂ ନିଜ ସ୍ତ୍ରୀ ସହିତ ବ୍ୟକ୍ତିଗତ ଜୀବନ ଏତେ ବେଶୀ ଚାପର ଯେ ସେ ପିଲାମାନଙ୍କର ଅଧିକାଂଶ ଘଟଣାପ୍ରତି ନିସ୍ପୃହ । ଆଉ ମା'ଙ୍କୁ କହିଲେ ଫଳ ଓଲଟା ହେବ । ସହାନୁଭୂତି ତ ମିଳିବନି, ବରଂ ବନ୍ଧୁକର ନଳୀ ଘୂରି ଆସିବ ପ୍ରତିମା ଆଡକୁ । 'ତୁ ଆମର କି ଏମିତି ଡେଣା କଟା ପରୀ ଯେ ଲୋକେ ତୋ ପଛରେ ପଡିଯିବେ ! ସତ କହ, ତୁ ନିଜେ କିଛି କରିନୁ ? କହିନୁ ?' ଭଉଣୀ ଭିଣେଇ ଥଟ୍ଟାରେ କଥା ଆଡେଇ ଦେବେ । ଆଉ ସୁନୀଲ ଶୁଣିଲେ ତା' ମୁହଁ ଶେତା-ପଡିଯିବ । କିଛି କରି ନ ପାରିବାର କ୍ଷୋଭ ତାକୁ ଏମିତି ବିଷଣ୍ଣତାରେ ବୁଡେଇ ଦେବ ଯେ ସେ ଅନ୍ତର୍ବେଦନାର ଘେରରୁ ବାହାରିବାକୁ ତାକୁ ଔଷଧର ସାହାଯ୍ୟ ନେବାକୁ ହେବ ।

ଥାଉ । ଯାହା କରିବା କଥା ସେ ନିଜେ କରିବ । ପ୍ରତିମା ନିଜକୁ ନିଜେ କହିଥିଲା ।

ସେଦିନ ସ୍କୁଲ୍‌ରୁ ଫେରିବା ବାଟରେ ପୁଣି ଫୋନ୍ ବାଜିଲା । ଅଚିହ୍ନା ନମ୍ବର । ମୁହଁ କଠିନ କରି ମୋବାଇଲ୍‌ର ଶାଗୁଆ ବୋତାମ ଟିପିଲା ସେ । 'ହ୍ୟାଲୋ ।'

ଉତ୍ତର ନାହିଁ ।

'ହ୍ୟାଲୋ ।'

ଏଥର ବି ନିରବତା । କୋଉଠୁ ଯେମିତି ସଁ ସଁ ଶବ୍ଦ ଆସୁଥିଲା କେବଳ ।

ପ୍ରତିମା ମୁଣ୍ଡ ଭିତରେ କ'ଣ ଯେମିତି ଓଲଟ ପାଲଟ ହୋଇଗଲା । ଟ୍ରେନ୍‌ର ଅନ୍ୟ ସହଯାତ୍ରୀମାନଙ୍କର ଉପସ୍ଥିତିକୁ ବେଖାତିର କରି ସେ ବଡ଼ ପାଟିରେ ଗାଳି ଦେବା ଆରମ୍ଭ କରିଦେଲା । 'ଲାଜ ଲାଗୁନି, ଫୋନ୍ କରି ଲୋକଙ୍କୁ ହଇରାଣ କରୁଛ ! ବିରକ୍ତ କରୁଛ ! ...'

'ଆରେ ... ଆରେ ... ପ୍ରତିମା ... ହ୍ୟାଲୋ ... ।' ହଠାତ୍ ଅନ୍ୟ ପାଖରେ ଚିହ୍ନା ସ୍ୱର । ପ୍ରତିମା ପାଟିର କଥା ଅଧାରେ ରହିଗଲା । ସୁନୀଲ !

'ସୁନୀଲ ! କଥା କହୁ ନ ଥିଲ କାହିଁକି ?' ବିବ୍ରତ ଭାବରେ ସେ କହିଲା ।

'ମୁଁ ତ କହୁଥିଲି, ତୁମେ ଜମା ଶୁଣି ପାରୁ ନ ଥିଲ । ତୁମ ନେଟ୍‌ୱାର୍କର ସିଗ୍‌ନାଲ୍ ଭଲ ନ ଥିଲା କି କ'ଣ । ... ଆଚ୍ଛା କୁହ ତ, ଏମିତି ହଠାତ୍ କରି ଗାଳି ଆରମ୍ଭ କରି ଦେଲ କାହିଁକି ?'

'ମୁଁ ... ମାନେ ...' ପ୍ରତିମା କ'ଣ କହିବ ବୁଝି ପାରୁ ନଥିଲା । 'ମାନେ ... ଅଚିହ୍ନା ନମ୍ବର ଦେଖିଲି ... କାହା ସ୍ୱର ଶୁଣିଲିନି ... ଭାବିଲି କିଏ ବଦ୍‌ମାସୀ କରି ...'

'ଓ ବୁଝିଛି । ... ମୁଁ ଅଫିସ୍‌ରୁ ଫୋନ୍ କରିଥିଲି କହିବାକୁ ଯେ ମୋବାଇଲ୍‌ଟା ମେସ୍‌ରେ ଛାଡି ଦେଇ ଆସିଛି । ମତେ ଆଜି ଫୋନ୍ କଲେ ଏଇ ନମ୍ବରରେ କରିବ ।'

'ଆଚ୍ଛା ।' ଫୋନ୍ ରଖି ଦେଇ ଫଁ କରି ନିଶ୍ୱାସ ନେଲା ପ୍ରତିମା ।

ପର ଦିନ ପୁଣି ଆରମ୍ଭ ହୋଇଗଲା ଫୋନ୍‌ରେ ଆକ୍ରମଣ । ଏଥର ସେ ନିଜକୁ ପ୍ରସ୍ତୁତ କରି ରଖିଥିଲା । ଲୋକଟିର ସ୍ୱର ଶୁଣିବା ମାତ୍ରକେ ଫୋନ୍ କାଟି ଦେଉଥିଲା । ପବ୍ଲିକ୍ ଫୋନ୍ ବୁଥ୍‌ମାନଙ୍କରେ ବସିଥିବା ଲୋକମାନଙ୍କୁ ଏ ବିଷୟରେ ସଚେତନ କରି ରଖିବ କି ନାହିଁ ତା' ଭାବି ହେଉଥିଲା ।

ଦଶହରା ଆସି ଚାଲିଗଲା । ବସ୍ତି ସ୍କୁଲ୍‌ରେ ଛୁଟି ସଂଖ୍ୟା କମ୍ । ଦଶହରା ପାଇଁ ଅଳ୍ପ କେଇ ଦିନ ବନ୍ଦ ରହିବା ପରେ ସ୍କୁଲ୍ ଖୋଲିଲା । ଆରମ୍ଭ ହୋଇଗଲା ପୁରୁଣା ରୁଟିନ୍ ।

ସେଦିନ ଟ୍ରେନ୍‌ରେ ଘରକୁ ଫେରୁଛି ପ୍ରତିମା, ହଠାତ୍ ଆସି ତା' ସାମ୍ନା ସିଟ୍‌ରେ ବସିଲା ଲୋକଟିଏ, ଯିଏକି ବେଶ୍ କିଛି ଦିନ ତଳେ ତାକୁ ସମୟ ପଚାରିଥିଲା ଏବଂ ମୋବାଇଲ୍ ଫୋନ୍ ମାଗି ଫୋନ୍ କଲ୍‌ଟିଏ କରିବାର ଚେଷ୍ଟା କରିଥିଲା ।

'ଭଲ ଅଛନ୍ତି ?' ସେ ପ୍ରତିମାକୁ ପଚାରିଲା କେମିତି ଏକ ଚିହ୍ନା ହସଟିଏ ଓଠରେ ଖେଳାଇ ।

ପ୍ରତିମା ଯେମିତି ସ୍ଥାଣୁ ପାଲଟିଗଲା । ଏ ସ୍ୱର କ'ଣ ତା'ର ଚିହ୍ନା ନୁହଁ ? ଯନ୍ତ୍ର ମାଧ୍ୟମରେ ସ୍ୱରର ମାନ ସାମାନ୍ୟ ଭିନ୍ନ ହୋଇପାରେ, କିନ୍ତୁ ଏତେଟା ଅଲଗା ନୁହଁ ଯେ ତା'ର ଚିହ୍ନିବାରେ ଅସୁବିଧା ହେବ । ଏ ତ ସେଇ ବାରମ୍ବାର ଫୋନ୍ କରୁଥିବା ମଣିଷର ସ୍ୱର । ସେଦିନ ତାହେଲେ ତା' ମୋବାଇଲ୍‌ରୁ ନିଜ ମୋବାଇଲ୍‌କୁ

ଫୋନ୍ କରିଥିଲା ଲୋକଟି ? ଏବଂ ତା'ପରେ ପ୍ରତିମାର ଫୋନ୍ ନମ୍ବର ଜାଣି ନେଇ ଫୋନ୍‌ରେ ବିରକ୍ତ କରିବା ଆରମ୍ଭ କରି ଦେଇଥିଲା ?

ପ୍ରତିମା କିଛି କହିବା ପାଇଁ ନିଜକୁ ପ୍ରସ୍ତୁତ କରୁ କରୁ ଲୋକଟି ହଠାତ୍ 'ଆପଣ'ରୁ 'ତୁମେ'କୁ ଓହ୍ଲେଇ ଆସି ପଚାରିଲା, 'ତୁମକୁ ହଳଦିଆ ରଙ୍ଗ ମାନେ ବହୁତ । କାଲି ପିନ୍ଧି କରି ଆସିବ ହଳଦିଆ ସାଲୁଆର୍ କମିଜ୍ ।'

ପ୍ରତିମା କିଛି କହିବା ଆଗରୁ ଲୋକଟି ଉଠିଗଲା । ଏବଂ ଆଗ ଷ୍ଟେସନ୍‌ରେ ଟ୍ରେନ୍ ଭଲ କରି ରହିବା ଆଗରୁ ଓହ୍ଲେଇ ପଡି କୁଆଡେ ଚାଲିଗଲା ।

ପରଦିନ ପ୍ରତିମା ଅସ୍ୱସ୍ତି ନେଇ ସ୍କୁଲ୍ ବାହାରିଲା । କହିବା ବାହୁଲ୍ୟ, ସେ ହଳଦିଆ ସାଲୁଆର୍ କମିଜ୍ ପିନ୍ଧି ନ ଥିଲା, ଦେହରେ ଥିଲା ତା' ଅପସନ୍ଦର ହାଲୁକା ନୀଳ ରଙ୍ଗର ଡ୍ରେସ୍‌ଟିଏ ।

ଟ୍ରେନ୍‌ରେ ଚଢିବା ଆଗରୁ ଷ୍ଟେସନ୍‌ରେ ଭଲ କରି ଆଖି ବୁଲେଇଲା ସେ । ନା, ଲୋକଟି ନାହିଁ । ଟ୍ରେନ୍ ଆସିଲା । ଟ୍ରେନ୍‌ରେ ବସି ସେ ଚାରି ଆଡେ ଆଖି ବୁଲେଇ ନେଲା ଓ ସ୍ୱସ୍ତିର ନିଶ୍ୱାସ ନେଲା । ନା, ନାହିଁ ।

ଟ୍ରେନ୍‌ରୁ ଓହ୍ଲେଇ ବସ୍ତି ଟପି ସେ ସ୍କୁଲ୍ ଆଡେ ଯାଉଛି, ହଠାତ୍ କୋଉଠୁଁ କେଜାଣି ଆସି ପହଞ୍ଚିଗଲା ସେଇ ଲୋକଟି । ବିନା ସମ୍ଭାଷଣରେ ବିନା ଉପକ୍ରମଣିକାରେ କହିଲା, 'ହଳଦିଆ ସାଲୁଆର୍ କମିଜ୍ ପିନ୍ଧିଲନି ? ମୁଁ କେତେ ଆଶା କରି ଆସିଥିଲି । ହଳଦିଆ ରଙ୍ଗ ଭା... ରି... ମାନେ ତୁମକୁ ।'

ପ୍ରତିମା ନିଜକୁ କଠିନ କଲା । ଗମ୍ଭୀର ଭାବରେ କହିଲା, 'କାହିଁକି ବିରକ୍ତ କରୁଛନ୍ତି ସବୁବେଳେ ?'

'କଥା କହିଲେ ଦୋଷ ହେଇଗଲା ? ଖାଲି ସୁନୀଲ ସାଙ୍ଗରେ ହସ ଖୁସି, ଜଡାଜଡି । ସେଥିରୁ କାଣିଚାଏ ମୁଁ ମାଗିଦେଲି ତ କ'ଣ ଏମିତି ପାପ କରିଦେଲି !' ଆଗ ଭଳି ସୁହାଗୀ ସ୍ୱର । ଅଙ୍ଗଭଙ୍ଗୀରୁ ଯେମିତି ଝରି ପଡୁଛି ମନର ବିରୂପତା । ସୁନୀଲ ବିଷୟରେ ସେ ଜାଣିଲା କେମିତି ? ତା'ରି ଜୀବନକୁ ଅନୁସରଣ କରି କରି ବୋଧହୁଏ ।

'ଓହୋ, ମୁଁ ତ ନିଜ ନାଁ କହିନି ଏ ଯାଏଁ । ମୋ ନାଁ ରାଜା । ... କ'ଣ ସୁନୀଲଠୁଁ ଭଲ ନୁହଁ ଏ ନାଁ ? ରାଜା ! କିଙ୍ଗ ! ବାଃ !' ନିଜ ନାଁ ରେ ନିଜେ ବିଭୋର ରାଜା ।

ଏ ମଣିଷ ସୁସ୍ଥ ନୁହଁ । ପ୍ରତିମା ନିଜକୁ କହିଲା । ଏବଂ ଅସୁସ୍ଥ ମଣିଷଟି ଯେ ହଠାତ୍ କ'ଣ କରି ବସିବ, କିଏ କହି ପାରିବ ? ବିବ୍ରତ ଭାବରେ ସେ ଚାରିଆଡେ

ଚାହିଁଲା । କେହି କୁଆଡେ ନାହାନ୍ତି । ବସ୍ତି ପଛରେ ରହିଲାଣି । ଦୂରରେ ନର୍ଦ୍ଦମା ପାଖ ବେଦିରେ ଗୁଣ୍ଡା ଦଳକ ବସି ରହିଛନ୍ତି ଯାହା । ସେମାନଙ୍କ ଆଖିରେ ଏପର୍ଯ୍ୟନ୍ତ କିଛି ପଡିନି । ନହେଲେ ଏ ଲୋକର କାର୍ଯ୍ୟକଳାପ ଦେଖି ସେମାନେ ହୁଏତ ସୁଯୋଗର ସଦୁପଯୋଗ କରିବାକୁ ଉଠି ଆସିବେ ।

ଚାପା ସ୍ୱରରେ ପ୍ରତିମା ପୁଣି ଥରେ କହିଲା, 'କାହିଁକି ବିରକ୍ତ କରୁଛନ୍ତି ? ନିଜ ବାଟରେ ଯାଆନ୍ତୁ ।'

'ମୋ ବାଟରେ ତ ଯାଉଛି । ଏବେ ତୁମ ବାଟ ହିଁ ମୋ ବାଟ ।' ବେସୁରା ସ୍ୱରରେ ସେଇ ଏକା ମର୍ମରେ କୋଉ ଗୋଟାଏ ହିନ୍ଦୀ ଗୀତ ଗାଇବାକୁ ଆରମ୍ଭ କଲା ସେ । ବେଦି ଉପରେ ବସିଥିବା ଟୋକାମାନଙ୍କର କୌତୁହଳୀ ଦୃଷ୍ଟି ଘୂରିଗଲା । ନିଜ ନିଜ ଭିତରେ ଚାଲିଥିବା କଥା ବି ବନ୍ଦ ହୋଇଗଲା ।

ଏଥର ପ୍ରମାଦ ଗଣିଲା ପ୍ରତିମା । ଗୋଟିଏ ପଟେ ଖାଇ, ଅନ୍ୟ ପଟେ ଖରସ୍ରୋତା ନଈ । କୁଆଡେ ଯିବ ସେ !

'ସିନେମା ଯିବ ?' ଗୀତ ବନ୍ଦ କରି ହଠାତ୍ ରାଜା ପଚାରିଲା ।

ପ୍ରତିମା ଉତ୍ତର ନ ଦେଇ ଆଗ ଭଳି ବଡ ବଡ ପାଦ ପକାଇ ଚାଲିବାକୁ ଲାଗିଲା ।

'ରିଗାଲ୍‌ରେ ଭଲ ସିନେମା ପଡିଛି । ଆଜି ସ୍କୁଲ୍ ଛୁଟି ହେବା ମାତ୍ରକେ ଟ୍ରେନ୍‌ରେ ଯାଇ ମ୍ୟାଟିନି ଶୋ ଦେଖିନେବା ।' ଅନୁରୋଧ ନୁହଁ, ସିଧାସଳଖ କଥା । ପୁଣି ଯୋଡିଲା, 'କେହି ଜାଣି ପାରିବେନି । ସୁନୀଲ ବି ନୁହଁ ।' ଗଳାର ସ୍ୱର କମିଛି । 'ତା'ପରେ ଦୋଷା ଖାଇବା । ତୁମେ ସୁନୀଲ ସାଙ୍ଗରେ ଗଲେ ଖାଲି କଫି ପିଅ କାହିଁକି ? କେବେ କିଛି ଖାଅ ନାହିଁ କାହିଁକି ? ସୁନୀଲକୁ ବି ବାଧ କରିବାର ଦେଖିନି । କାହିଁକି ? ସୁନୀଲ କ'ଣ ଫକ୍କଡ୍‌ରାମ୍ ! ତୁମକୁ ଖୁଆଇବାର ଶକ୍ତି ତା'ର ନାହିଁ ?'

ଏଥର ରାଗି କରି ବୁଲି ଚାହିଁଲା ପ୍ରତିମା । 'ଆପଣଙ୍କୁ ସୁନୀଲ କହିଛି ଏକଥା ? ଆପଣ ସୁନୀଲର ପରିଚିତ ?'

'ଚିହ୍ନା ପରିଚୟ ହେବା ଦରକାର କ'ଣ ? ମୋ ନିଜ ଲୋକଙ୍କ ସାଙ୍ଗରେ ବୁଲେ ବୋଲି ଆଖିରେ ପଡେ ...'

'ମୁଁ ଆପଣଙ୍କର ପରିଚିତ ନୁହଁ କି ନିଜର ନୁହଁ ! ମନେ ରଖନ୍ତୁ । ଏବଂ ମତେ ବିରକ୍ତକରିବା ବନ୍ଦ କରନ୍ତୁ ।' ପ୍ରତିମାର ଦୃଷ୍ଟି ଜାଳିପୋଡି ଦେବ ଯେମିତି ।

'ଆହା, ସେମିତି କହିଲେ ହେବ !' ଖପ୍ କରି ପ୍ରତିମାର ଡାହାଣ ହାତ ଧରିପକାଇଲା ରାଜା ।

'କ'ଣ ହେଉଛି ?' ଅପରିଚିତ ଗମ୍ଭୀର ସ୍ୱର ।

ରାଜା ହାତ ଛାଡିଦେଲା । ଆଉ ଚମକି ବୁଲି ଚାହିଁଲା ପ୍ରତିମା । ବେଦି ଉପରୁ ଗୁଣ୍ଡା ଦଳକ ଉଠି ଆସିଛନ୍ତି । ଚାରି ଜଣ । ଜଣକ ପାଟିରେ ବିଡି । ଜଣକ ଓଠରେ ସିଗାରେଟ । ଜଣଙ୍କ ପାଟିରେ ପାନ । ଆଉ ଚତୁର୍ଥ ଜଣକ ଦାନ୍ତ ଖୁଣ୍ଟାଟିଏ ଧରି ଦାନ୍ତ ଖୋଳି ଚାଲିଛି । ପ୍ରତିମାର ସ୍ୱର କ'ଣ ଏତେ ବେଶୀ ଉଚ୍ଚ ହୋଇ-ଯାଇଥିଲା ଯେ ଏମାନଙ୍କ କାନରେ ପଡିଗଲା !

କେମିତି ପ୍ରତିମା କହିବ 'କିଛି ନୁହଁ । ତୁମେମାନେ ନିଜ ବାଟରେ ଯାଅ' ! ସେ ଚୁପ୍ କରିଗଲା ।

ବିଡି ପିଆ ପିଲା ଏଥର ରାଜାର ମୁଖାମୁଖି ହେଲା । 'କିଏ କିହୋ ତମେ ?'

'ମୁଁ ରାଜା ।'

'ଏଠି କ'ଣ କରୁଛ ?'

'ନା, ମାନେ ... ୟାଙ୍କ ସାଙ୍ଗରେ ମୋର ବିଶେଷ ...' ଅଧିକ କିଛି କହିବାର ଆବଶ୍ୟକତା ନାହିଁ ଯେମିତି । ପ୍ରତିମାର ଦେହ ଜଳିଗଲା ।

ତା' ମୁହଁ ଉପରେ ଥରେ ଆଖି ବୁଲେଇ ନେଇ ସିଗାରେଟ ଧରା ଏଥର ପଚାରିଲା, 'କ'ଣ ଦିଦି, ସତ ?'

'ଛିଃ !' ପ୍ରତିମା ସ୍ୱରରୁ ଛିଟିକି ଆସିଲା ।

'ହୁଁ !' ଭସ ଭସ ହୋଇ ଜର୍ଦ୍ଦା ଗନ୍ଧ ଖେଳେଇ ପାନ ଚୋବା ଟୋକା କହିଲା, 'ତମର ତ ଭାରି ସାହସ ଦେଖୁଛି, ରାଜା ବାବୁ ! ଲୁଙ୍ଗୁଡେଇ ପହଞ୍ଚିଗଲ ଆମ ଏଲାକାରେ !'

'ନା ନା, ତୁମେମାନେ ଭୁଲ୍ କରୁଛ । ୟାଙ୍କ ସାଙ୍ଗରେ ମୋର ପରିଚୟ ଅଛି ।' ତରବର ହୋଇ ରାଜା କହି ପକେଇଲା । ପ୍ରତିମା ମୁହଁ ବୁଲେଇ ନେଲା ।

'ସତେ ! ଆହା, କି ପ୍ରେମରେ !' ମୁଥାଟାଏ ମାରିଲା ପାନଖିଆ ।

'ଦେଖ ... ଦେଖ ... ଭଲ ହେଉନି ... ତୁମେମାନେ ଭୁଲ କରୁଛ ...' ତଳେ ପଡି ଯାଇ ଓଠରୁ ରକ୍ତ ପୋଛୁ ପୋଛୁ ରାଜା ବିଡିବିଡେଇଲା ।

'ଶଳା ! ଆମକୁ ଭୁଲ୍ ଠିକ୍ ଦେଖାଉଛି ! ଆମ ଦିଦି ଯାଉଛନ୍ତି ସ୍କୁଲ୍‌କୁ ! ଆଉ ତୁ ଶଳା ବାଟରେ ହଇରାଣ କରୁଛୁ ତାଙ୍କୁ !' ଅଶ୍ରାବ୍ୟ ଗାଳିଟାଏ ଦେଇ ଏଥର ଗୋଇଠାଏ ପକାଇଲା ଦାନ୍ତ ଖୁଣ୍ଟଉଥିବା ଟୋକା ।

ଉଠି ପଡି ଏଥର ଷ୍ଟେସନ୍ ଆଡେ ଧାଇଁଲା ଲୋକଟି ।

ତା' ପଛେ ଖଣ୍ଡେ ବାଟ ଗୋଡେଇ ଯାଇ ପଛ ପଟୁ ତା' ଶାର୍ଟ ଟାଣି ଚିରି

ଦେଇ ବିଡି ପିଆ କହିଲା, 'ଶଳା ! ଆଉ ଯଦି ଏ ଅଞ୍ଚଳରେ ପାଦ ଦେଇଚୁ କି ବାହାରେ କୋଉଠି ଦିଦିଙ୍କୁ ହଇରାଣ କରୁଚୁ ବୋଲି ଶୁଣେ, ତାହେଲେ ତୋ ଛାତି ଚିରି ରଖିଦେବି । କେହି ଟେର୍ ବି ପାଇବେନି ।'

ରାଜା ଉଭାନ୍ ହୋଇଗଲା ।

ଏଥର ଚାରି ଜଣ ଆସି ଠିଆ ହେଲେ ପ୍ରତିମା ସାମ୍ନାରେ ।

ତା'ପରେ ... ତା'ପରେ ...

କଡେଇ ହୋଇଗଲା ଜଣେ । ପୁଣି ବାକୀ ତିନି ଜଣ ।

'ଯାଅ ଦିଦି । ଯାଅ । ଡେରି ହେଉଛି । ... ଯଦି ଆଉ ଦିନେ ସେ ଟୋକା ତମକୁ ବିରକ୍ତ କରେ, ଆମକୁ କହିଦେବ । ତା' ରକ୍ତ ପିଇଯିବୁ ଆମେ ।'

ଦୂରରେ ସ୍କୁଲ୍ ଘର । ପ୍ରତିମା ସେଇ ଆଡକୁ ଚାଲିଲା ।



# ଅନୁଚ୍ଚାରିତ

ଏ ସହର ବିଚିତ୍ର । ଭଡାଟିଆଙ୍କୁ ନେଇ ଘରମାଲିକମାନଙ୍କ ମନରେ ଏମିତି ଭୟ ପଶିଯାଇଛି ଯେ ଏଗାର ମାସଠୁଁ ଅଧିକ ସମୟ ପାଇଁ ଘରଭଡା ଦେବାକୁ ସେମାନେ ନାରାଜ । ପରେ ହୁଏତ ଭଡାଟିଆମାନଙ୍କର ସୁବ୍ୟବହାର ଦେଖି ଲିଜ୍‌ର ସମୟ ଆଉ ଏଗାର ମାସ ବଢାଇପାରନ୍ତି, କିନ୍ତୁ ତା' ଠୁଁ ଅଧିକ ଆଦୌ ନୁହଁ ।

ଘର ବଦଳେଇ ବଦଳେଇ ବିକ୍ରମ ବିବ୍ରତ । ତା' ଭଳି ବୈଜ୍ଞାନିକ ଲୋକ ମନ ଦେଇ ଗବେଷଣା କରିବ ନା ପ୍ରତି କୋଡିଏ ଏକୋଇଶ ମାସରେ ଥରେ ଦଲାଲ୍ ସାଙ୍ଗରେ ବୁଲି ବୁଲି ଜୋତା ଘୋରିବ !

ଏଇଥର ଶେଷ । ଆଉ ଦଶମାସ ଭିତରେ ନିଜ ଆପାର୍ଟ୍‌ମେଣ୍ଟ ହାତକୁ ଆସିଯିବ । ତା'ପରେ ଆଉ ଜୋତା-ଘୋରା ନାହିଁ, ଜିନିଷପତ୍ର ବନ୍ଧା-ଖୋଲାର ଝାମେଲା ନାହିଁ । କିନ୍ତୁ ସମସ୍ୟା ହେଉଛି ଏଇ ଦଶ ମାସ ପାଇଁ । ଗତ ଦୁଇ ବର୍ଷ ଧରି ରହିଥିବା ଘରଟିକୁ ଛାଡିବାକୁ ହିଁ ହେବ । ଘରମାଲିକଙ୍କୁ ଅନୁରୋଧ କରି ଲାଭ ହେଇନି, ଭଦ୍ରଲୋକ ଅବସର ନେଇ ନିଜ ଘରକୁ ଉଠି ଆସିବେ । ତା'ମାନେ, ପୁଣି ଭଡା ଘରଟିଏ ଖୋଜିବାକୁ ହେବ ! ପୁଣି ଦଲାଲ୍ ସାଙ୍ଗରେ ଖରାରେ ବୁଲିବାକୁ ହେବ !

ହେଲେ ଏଥର ଅତି ସୁବିଧାରେ କାମ ହୋଇଗଲା । ତାଙ୍କ ଇନ୍‌ଷ୍ଟିଚ୍ୟୁଟ୍‌ର ଆକାଉଣ୍ଟ୍‌ସ୍ ଅଫିସର୍ ରାମମୂର୍ତ୍ତି ଦିନେ ତାଦ ଲ୍ୟାବ୍‌କୁ ପଶି ଆସି ପଚାରିଲା, 'ସାର୍, ଆପଣ ପରା ଭଡା ଘର ଖୋଜୁଛନ୍ତି ?'

'ହଁ ।'

'ମୋ ବଡ ଶଳାଙ୍କର ଆପାର୍ଟ୍‌ମେଣ୍ଟିଏ ଅଛି । ପାଞ୍ଚ ବର୍ଷ ତଳେ କିଣି ତାଲା ପକେଇ ରଖି ଦେଇଥିଲେ । ଏବେ ଘର ଭଡା ଦେବା କଥା ଉଠେଇଛନ୍ତି ସେ ।'

'ବାଃ, ବେଶ୍ । କୋଉଠି ଆପାର୍ଟ୍‌ମେଣ୍ଟ ? କେତେ ବଡ ? ଭଡା କେତେ ?'

ରାମମୂର୍ତ୍ତି ସବୁ ଖବର କହିଲା । ଆପାର୍ଟ୍‌ମେଣ୍ଟି ଭଲ ଜାଗାରେ, ଭଡା ବି ତା' ବଜେଟ୍ ଭିତରେ । କିନ୍ତୁ କଥାରୁ ମନେ ହେଉଛି ଟିକିଏ ଛୋଟ । ହଉ ପଛକେ, ଦଶଟା ମାସ କଥା, ଚାହୁଁ ଚାହୁଁ କଟିଯିବ ।

ବିକ୍ରମ ଦିନେ ଅଞ୍ଜନା ସାଙ୍ଗରେ ଯାଇ ଆପାର୍ଟ୍‌ମେଣ୍ଟଟି ଦେଖିଆସିଲା । ଅଞ୍ଜନାର ବି ସେଇ ଏକା କଥା– ଆପାର୍ଟ୍‌ମେଣ୍ଟଟି ଛୋଟ ଟିକିଏ । ଆଉ ଗୋଟିଏ ବେଡ୍ ରୁମ୍ ଥିଲେ ଭଲ ହେଇଥାଆନ୍ତା । କିନ୍ତୁ ଦଶ ମାସ କଥା ତ, ଆଡଜଷ୍ଟ କରିନେବ ସେ ।

ସ୍ତ୍ରୀକୁ ନେଇ ବିକ୍ରମର ଚିନ୍ତା ନାହିଁ । ବାହାଘରର ବାର ବର୍ଷ ଭିତରେ ଅଞ୍ଜନା ଯେତିକି ମାନିନେଇ, ମନେଇ ନେଇ ଚଳିଛି, ଆଉ କେହି କରିବନି । ଇନ୍‌ଷ୍ଟିଚ୍ୟୁଟ୍‌ର ଅଧିକାଂଶ ବୈଜ୍ଞାନିକ ସହକର୍ମୀଙ୍କ ଭଳି ବିକ୍ରମ ଏତେଟା ଆଉପାଗଳା ନୁହଁ, କିନ୍ତୁ କିଛିଟା ଅସହିଷ୍ଣୁ ଏବଂ ଅଳ୍ପ ବଦ୍‌ରାଗୀ । ସେ ଜାଣେ, ଦିନ ପରେ ଦିନ ତା' ମନ ଜଗି ଚଳିବା ଜଣଙ୍କ ପକ୍ଷରେ ବେଶ୍ କଠିନ । ହେଲେ ଅଞ୍ଜନା ପାରିଛି । ବାହାଘର ପରେ ବିକ୍ରମର ବିଧବା ମା' ରହୁଥିଲେ ସେମାନଙ୍କ ସାଙ୍ଗରେ । ମା'ଙ୍କ ଚିନ୍ତାଧାରା, ଚଳଣି ନାସ୍ତିକ ବିକ୍ରମର ଠିକ୍ ଓଲଟା । ଛୁଆଁଛୁତିର କଳା କୋଠରୀରେ ଅନ୍ଧବିଶ୍ୱାସର ଗାଲିଚା ବିଛେଇ ସେ ବସି ରହୁଥିଲେ । ଆଉ ତା'ରି ଭିତରେ ସବୁ ଦେବଦେବୀଙ୍କ ପାଇଁ ସ୍ଥାନ ବି କରେଇ ନେଇଥିଲେ । ଆଜି ସୋମବାର, କାଲି ଏକାଦଶୀ, ଗୁରୁବାର ଲକ୍ଷ୍ମୀ ପୂଜା, ଶୁକ୍ରବାର ସନ୍ତୋଷୀ । ଏବେ ସିନା ମା' ଆଉ ନାହାନ୍ତି, କିନ୍ତୁ ସେତେବେଳେ କେମିତି ପାରୁଥିଲା ଅଞ୍ଜନା ? ପୂଜା ଦିନମାନଙ୍କରେ ସକାଳୁ ଉଠି ଆଗ ଗାଧୋଇ ପଡି ମା'ଙ୍କ କଥା ବୁଝୁଥିଲା । ପୂଜା ଘରୁ ବାହାରି ବିକ୍ରମ ଓ ଛୋଟ ପିଲା ଦିଇଟାଙ୍କର ଖବର । ପୁଣି ଆଉ ଥରେ ଗାଧୋଇ ମା'ଙ୍କର ବାକୀ କାମ ।

ମା' ଚାଲିଯିବା ପରେ ଆସି ଜୁଟିଛନ୍ତି ବିକ୍ରମର ସାନ ପିଉସା । ବେସରକାରୀ କମ୍ପାନୀରେ କାମ କରନ୍ତି ଯେ ଅବସର ନେବାର ବୟସ ହୋଇଯାଇଥିଲେ ବି କାମରୁ ଛୁଟି ନେଇ ନାହାନ୍ତି । ଗତ ଦୁଇ ବର୍ଷ ଧରି ତାଙ୍କର ପୁଣି ସବୁ ମାସ କାମ ପଡ଼େ ବିକ୍ରମର ସହରରେ । ବିକ୍ରମ, ଅଞ୍ଜନା ଥାଉ ଥାଉ ହୋଟେଲ୍‌ରେ ରହିବାର ପ୍ରଶ୍ନ କାହିଁ ? ଭଡା ଘରର ଗୋଟିଏ ଶୋଇବା ଘର ତାଙ୍କ ପାଇଁ ପ୍ରାୟ ଖଞ୍ଜା ।

ଏବେ ଏ ଦୁଇ ବେଡ୍ ରୁମ୍ ଘରେ କ'ଣ ହେବ ?

'କ'ଣ ଆଉ ହେବ ? ପିଉସା ଆସିଲେ, ପିଲାଏ ଆମ ଘରେ ଶୋଇ ପଡିବେ । କେଇଟା ମାସ କଥା ତ । ତୁମେ ଆଉ ସେତିକି ପାଇଁ ଘର ଖୋଜି ବୁଲନି ।'

ପିଲାଏ ଆସି ସେମାନଙ୍କ ଶୋଇବା ଘରେ ରାତିରେ ଶୋଇଲେ, ବିକ୍ରମର କିଛି ଅସୁବିଧା ନାହିଁ । ଅସୁବିଧା ହେବ ଅଞ୍ଜନାର । ଦିନଯାକର ଖଟଣି ପରେ

ଖଟରେ ଶୋଇ ଶୋଇ ଗପ ବହି ପଢିବାର ବିରାଟ ନିଶା । ତା' ପଟ ବିଛଣା ପାଖରେ ଛୋଟ ଲ୍ୟାମ୍ପଟି ଜଳିଲେ ବିକ୍ରମର ଶୋଇବାରେ ଅସୁବିଧା ହୁଏନି, କିନ୍ତୁ ପିଲାଏ କ'ଣ ଶୋଇପାରିବେ ?

ବିକ୍ରମ ଜାଣେ ଅଞ୍ଜନା ଠିକ୍ ସମ୍ଭାଳି ନେବ । ହୁଏତ ମାସର ସେଇ କିଛି ଦିନ ଗପ ବହି ପଢିବାର ନିଶାକୁ ଆଡେଇ ଦେବ ସେ ।

ଆଉ ଚିନ୍ତା ନ କରି ସେ ରାମମୂର୍ତ୍ତିକୁ କହିଲା, 'ଆପଣଙ୍କ ଶଳାକୁ ଜଣେଇ ଦିଅନ୍ତୁ, ଏ ଘର ଆମେ ଭଡା ନେବୁ । ଲିଜ୍ କେବେ ସାଇନ୍ କରିବେ ସେ ?'

'ମୋ ଶଳା ତ ଅଷ୍ଟ୍ରେଲିଆରେ ରହନ୍ତି । ସେ ସେପ୍ଟେମ୍ବର ମଝିଆ ମଝି ଆସିବେ ।'

'କିନ୍ତୁ ମୋତେ ତ ଅଗଷ୍ଟ ତିରିଶ ସୁଦ୍ଧା ପୁରୁଣା ଘର ଛାଡିବାକୁ ହେବ ।'

'ଚିନ୍ତା ନାହିଁ, ଘରଚାବି ମୋ ପାଖରେ । ଆପଣ ନୂଆ ଘରକୁ ଉଠି ଆସନ୍ତୁ । ମୋ ଶଳା ଆସିଲେ କାଗଜପତ୍ର ଦସ୍ତଖତ ହେବ ।'

'ହେଲେ ...' ବିନା ଲିଜ୍‌ରେ ବିକ୍ରମ କେବେ ଭଡା ଘରେ ପଶିନି ।

'ଚିନ୍ତା କରନ୍ତୁନି, ସାର୍ । ଆପଣ ମତେ ବର୍ଷ ବର୍ଷ ଧରି ଚିହ୍ନିଛନ୍ତି । ଆଉ ମୁଁ ବି ତ ଆପଣଙ୍କୁ ନୂଆ ଦେଖୁନି !'

ଆଉ ଆପତ୍ତି କଲାନି ବିକ୍ରମ । ଦୁଇ ପିଲାଙ୍କୁ ଧରି ସେ ଆଉ ଅଞ୍ଜନା ନୂଆ-ଭଡା ଘରକୁ ଉଠିଆସିଲେ ।

ନୂଆ ଭଡା ଘରେ ରହିବାର କେଇଟା ଦିନ ଭିତରେ ଛୋଟ ମୋଟ ସମସ୍ୟାମାନ ଆଖିରେ ପଡିଲା । ଘର ଦେଖିବା ବେଳେ ସେସବୁ ଜଣା ପଡିବାର ନୁହଁ । ଘରେ ନ ରହିଲେ ଜଣେ ଜାଣିବ କେମିତି ଯେ ଶୋଇବା ଘରର ବାଥ୍‌ରୁମ୍ କମୋଡ୍ କାମ କରେ ନାହିଁ । ବେସିନ୍ ତଳ ପାଇପ୍‌ରୁ ଅନବରତ ପାଣି ଗଳେ । ରୋଷେଇ ଘରେ ତଳ ଆଲମାରିର ଭିତର ପଟ କାଠ ଥାକ ଦୁଇଟା ଏମିତି ଭଙ୍ଗା ଯେ ଗୋଟଏ ବି ଜିନିଷ ସେଠି ରଖି ହେଉନି । ଡେକ୍‌ଚି କଡେଇ ବାହାରେ ଗଦା କରି ରଖିବାକୁ ହେଉଛି । ଏଣେ ବାଲ୍‌କନି ଛାତର ପଲସ୍ତରା ପଡା ପଡା ହୋଇ ତଳକୁ ଖସୁଛି । ସେଦିନ ତ ଆଉ ଟିକକରେ ଝିଅ ମୁଣ୍ଡରେ ବଡ଼ ଖଣ୍ଡେ ପଡିଥାଆନ୍ତା । ତେବେ ସବୁଠାରୁ ବଡ ସମସ୍ୟା ହୋଇଛି ପିଲାଙ୍କ ଶୋଇବା ଘରର ଦୁଇଟାଯାକ ଝରକା ନେଇ । ଘର ଦେଖିବା ଦିନ ବନ୍ଦ ଝରକା ଦେଖି ଯାଇଥିଲେ ସେମାନେ । ଅଥଚ ଖୋଲିବାକୁ ଯାଇ ଜଣା ପଡିଲା ଯେ ଛିଟିକିଣି, କୁହୁଣ୍ଡା କିଛି ବି ନାହିଁ । ହୁଏତ ବିଲ୍‌ଡିଙ୍ଗରେ କାମ କରୁଥିବା ବଢେଇଟି ଭୁଲି ଯାଇଛି ବା ନିହାତି ହାତ

ସଫେଇ କରିଛି । ଏଣେ ଝରକା ଖୋଲା ରଖିଲେ, ପବନରେ ବାଡେଇ ହୋଇ କାଚ ଭାଙ୍ଗି ଯିବାର ଭୟ । ଆଉ ବନ୍ଦ ରଖିଲେ ଦମ୍ ବନ୍ଦ ଅବସ୍ଥା ।

ବାଧ ହୋଇ ରାମମୂର୍ତ୍ତିକୁ ଏସବୁ ସମସ୍ୟା କଥା କହିଲା ବିକ୍ରମ । ରାମମୂର୍ତ୍ତି ନିଜ ମୁଣ୍ଡ ଉପରୁ ଦାୟିତ୍ୱଟି ଘୁଞ୍ଚେଇ ଦେବା ପାଇଁ କହିଲା, 'ଆଉ ଚାରିଟା ଦିନ କଥା, ସାର୍ । ମୋ ଶଳା ଶନିବାର ରାତିରେ ଆସି ପହଞ୍ଚୁଛନ୍ତି । ତାଙ୍କୁ ନେଇ ମୁଁ ଲିଜ୍ ସାଇନ୍ ପାଇଁ ଆପଣଙ୍କ ଘରକୁ ରବିବାର ସକାଳୁ ଆସିଯିବି । ତାଙ୍କୁ ସବୁ କହିବେ, ସାର୍ । ସେ ବଡ ପାରିବାର ଲୋକ, ସେ ବୁଝନ୍ତୁ ତାଙ୍କ ଘର କଥା ।'

ଏତେ ବର୍ଷ ଭଡା ଘରେ ରହି ରହି କିଛି କମ୍ ଅଭିଜ୍ଞତା ହେଇନି ବିକ୍ରମର । ଥରେ ଭଡାଘରକୁ ଉଠି ଆସିବା ପରେ କେତେଜଣ ଘର ମାଲିକ ସମସ୍ୟା ସମାଧାନ କରିବାର ଆଗ୍ରହ ଦେଖାନ୍ତି ? ତଥାପି ଲିଜ୍ ସାଇନ୍ ହେଇନି, ସେତିକି ରକ୍ଷେରକ୍ଷା । କିନ୍ତୁ ରାମମୂର୍ତ୍ତିର ଶଳା ଯଦି ଘର ସଜାଡି ନେବାକୁ ମନା କରିଦେବେ, ତାହେଲେ ସତରେ କ'ଣ ପୁଣି ଜିନିଷପତ୍ର ବାନ୍ଧି ଏଠୁ ଉଠିବ ବିକ୍ରମ ?

ଦେଖାଯାଉ ।

ରବିବାର ସକାଳ ସାଢେ ଏଗାରଟା ବେଳେ ସତକୁ ସତ ନିଜ ବଡ ଶଳା ଭେଙ୍କଟ୍‌କୁ ଧରି ରାମମୂର୍ତ୍ତି ଆସି ପହଞ୍ଚିଗଲା ।

ପ୍ରଥମ ଦେଖାରେ ଘରମାଲିକ ଭେଙ୍କଟ୍‌କୁ ବିକ୍ରମର ଜମା ଭଲ ଲାଗିଲା ନାହିଁ । ତମ୍ବାଳିଆ ରଙ୍ଗ । ଛୋଟ ଛୋଟ ଅବିଶ୍ୱାସୀ ଆଖି । ସରୁ ଅସନ୍ତୁଷ୍ଟ ଓଠ । ବୟସ ନିଶ୍ଚିତ ଭାବରେ ଷାଠିଏ ଉପରେ ହେବ, ହେଲେ ବୟସ ଓ ଅଭିଜ୍ଞତାଜନିତ ଯେଉଁ ଶାନ୍ତ ଭାବ ସଚରାଚର ଦେଖାଯାଏ, ତା'ର କୌଣସି ଚିହ୍ନ ନାହିଁ । ବରଂ ମୁହଁରେ କେମିତି ଏକ ବେଖାତିର ଭାବ । ଅମାର୍ଜିତ କଥା । ଏଣେ ପିଠି ମଝିଆଁ-ମଝି ଯାଏଁ ଲମ୍ବିଛି ମୁଣ୍ଡ ବାଳ । ସେଇ କଞ୍ଚା ପାଚିଲା ବାଳକୁ ଏକାଠି କରି ସେ ପଛ ପଟେ ରବର୍‌ବ୍ୟାଣ୍ଡ୍ ବାନ୍ଧିଛନ୍ତି । ହେଲେ ବିକ୍ରମକୁ ସବୁଠାରୁ ଅଦ୍ଭୁତ ଲାଗିଲା ଭେଙ୍କଟ୍‌ଙ୍କର ସାର୍ଟ୍ ତଳୁ ଉଙ୍କି ମାରୁଥିବା ହାତର ବିରାଟ 'ଟାଟୁ' । ଆଗରୁ ଯେ ଏମିତି ଚିତାକୁଟା ମଣିଷ ବିକ୍ରମ ଦେଖିନାହିଁ, ତା' ନୁହଁ । ସେ ଯେତେବେଳେ ଆମେରିକାରେ ପୋଷ୍ଟ୍ ଡକ୍ଟରେଟ୍ କରୁଥିଲା, ସେତେବେଳେ କ୍ୟାଲିଫୋର୍ଣ୍ଣିଆରେ କେତେ ଏମିତି ଲୋକ ଦେଖିଥିଲା । ଚମଡା ଜ୍ୟାକେଟ୍ ପିନ୍ଧି, ମଟରସାଇକେଲ୍ ଚଲାଇ ବୁଲୁଥାଆନ୍ତି । କିନ୍ତୁ ରାମମୂର୍ତ୍ତି ଭଳି ସରଳ ଦକ୍ଷିଣ ଭାରତୀୟ ଲୋକର ଶଳାଟି କେମିତି ଏଭଳି ହେଲେ ?

ବିକ୍ରମ ଭେଙ୍କଟ୍ ଓ ରାମମୂର୍ତ୍ତିଙ୍କୁ ଘର ଭିତରକୁ ଡାକି ଆଣିଲା । ଘରମାଲିକଙ୍କ

ଚେହେରାରେ ତା'ର ଯାଏ ଆସେ କ'ଣ, ଭଡାଘରର ସମସ୍ୟାତକ ସମାଧାନ ନେଇ କଥା ।

'ବସ୍, ରାମମୂର୍ତ୍ତି । ବସନ୍ତୁ, ମିଷ୍ଟର୍ ଭେଙ୍କଟ୍ ।'

'ପ୍ଲିଜ୍ କଲ୍ ମି ଭେଙ୍କି ।' ସିଧାସଳଖ କହିଲେ ଭେଙ୍କଟ୍ ।

ଘରମାଲିକଙ୍କର ତା'ହେଲେ ନିଜ ନାଁ ପସନ୍ଦ ନୁହଁ ? ନା ବିଦେଶରେ ରହି ରହି 'ଭେଙ୍କି' ନାଁରେ ଅଧିକ ଅଭ୍ୟସ୍ତ ? ସେ ଯାହା ହେଉ, ଭେଙ୍କଟ୍ ଅପେକ୍ଷା ଭେଙ୍କି ନାଁ ଟି ହିଁ ତାଙ୍କ ଚେହେରାକୁ ଖାପ ଖାଉଛି ଭଲ । ମନକୁ ମନ କହିଲା ବିକ୍ରମ ।

'ସିଓର୍, ଭେଙ୍କି ।... ଚାହା ପିଇବେ ନା କଫି ?' ବିକ୍ରମ ଭଦ୍ରତାରେ ପଚାରିଲା ।

'କିଛି ନାହିଁ,' ରାମମୂର୍ତ୍ତି କିଛି କହିବା ଆଗରୁ ଭେଙ୍କଟ୍ କହି ପକେଇଲେ, 'ଘରର କଣ୍ଟ୍ରାକ୍ଟ୍ କାଗଜ ଆଣିଛି । ଥରେ ପଢି ସାଇନ୍ କରି ଦିଅନ୍ତୁ ।'

ଏତେ ଅତିଷ୍ଠ କାହିଁକି ? ସେ କ'ଣ କୁଆଡେ ପଳାଉଛି ନା କ'ଣ ! ରାମମୂର୍ତ୍ତିଠୁଁ ତା କଥା ଶୁଣିଥିବେ ନିଶ୍ଚୟ ଭେଙ୍କଟ୍ । ତଥାପି ...

କିଛି ନ କହି ଲିଜ୍ କାଗଜ ଉପରେ ଥରେ ଆଖି ବୁଲେଇ ନେଇ ବିକ୍ରମ ଦସ୍ତଖତ କରିଦେଲା ।

'ରାମୁ କହୁଥିଲା, ଘରେ କ'ଣ ସବୁ ଅସୁବିଧା ଅଛି । ... କ'ଣ କ'ଣ ଅସୁବିଧା ଅଛି, କୁହନ୍ତୁ । ଯଦି ସମ୍ଭବ ହୁଏ, ମୁଁ ସେସବୁର ବ୍ୟବସ୍ଥା କରିବି । ନହେଲେ ଆପଣଙ୍କୁ ସମ୍ଭାଳିବାକୁ ହେବ ।' ପୁଣି ସିଧାସଳଖ କଥା କେଇ ପଦ କହି ପକେଟ୍‌ରୁ କାଢି ଛୋଟ କଳା ଟିପା ଖାତାଟିଏ ଧରିଲେ ଭେଙ୍କଟ୍ ।

ଏ କିଭଳି ମଣିଷ, କଥା କହିବାର ଶାଳୀନତା ଶିଖି ନାହାନ୍ତି ? ଏଥର ମନେ ମନେ ବିକ୍ରମ ରୀତିମତ ବିରକ୍ତ ହେଲା, କିନ୍ତୁ ସେବିଷୟରେ କିଛି ନ କହି ରୋଷେଇ ଘରଠୁଁ ବାଲ୍‌କନି ଯାଏଁ ସବୁ ଆଡ ତାଙ୍କୁ ବୁଲେଇ ଦେଖାଇଲା ସେ । ପାଣି ଗଳୁଥିବା ବେସିନ୍, କାମ କରୁ ନ ଥିବା କମୋଡ୍, ରୋଷେଇ ଘରର ଭଙ୍ଗା ଥାକ, ପଲସ୍ତରା ଖସୁଥିବା ବାଲ୍‌କନି, ବନ୍ଦ ହେଉ ନ ଥିବା ଝରକା– ଭେଙ୍କଟ୍ ଟିକିନିଖି କରି ଦେଖିଲେ ।

'କମୋଡ୍ ଆଉ ବେସିନ୍ ପାଇଁ ଆପଣଙ୍କୁ ଏ ବିଲ୍‌ଡିଙ୍ଗର ଆସୋସିଏସନ୍‌କୁ କହିବାକୁ ହେବ । ମେନ୍‌ଟେନାନ୍‌ସ୍ ନିୟମ ଅନୁସାରେ ପ୍ଲମ୍ବିଙ୍ଗ କାମର ଦାୟିତ୍ୱ ସେମାନଙ୍କର । ବାକୀ ବିଷୟ ମୁଁ ଦେଖିବି । ... ଯାହା ମୋର ମନେ ହେଉଛି, ବାଲ୍‌କନି କାମ ଦୁଇ ଦିନ ଲାଗିଯିବ । ଭାବୁଛି, ଠିକଣା ଲୋକ ଯୋଗାଡ଼ କରି

ଆସନ୍ତା ଶନିବାର ସେ କାମ ଆରମ୍ଭ କରିବି । କିନ୍ତୁ ବାକୀ ତକ ମାତ୍ର କେଇ ଘଣ୍ଟାର କାମ । ଦିନକ ଭିତରେ ହୋଇଯିବ । ସେସବୁ କାଠ କାମ ପାଇଁ ଯଦି କାଲି ଗୋଟିଏ ବଢ଼େଇକୁ ନେଇ ଆସେ, ତେବେ ଆପଣଙ୍କର କିଛି ଅସୁବିଧା ହେବ ନାହିଁ ତ ?'

'ନା, ଅସୁବିଧା କ'ଣ ? କାଲି ଅବଶ୍ୟ ମୁଁ ନ ଥିବି । କିନ୍ତୁ ମୋ ସ୍ତ୍ରୀ ଅଞ୍ଜନା ଥିବ ଘରେ ।'

ରାମମୂର୍ତ୍ତି ଓ ଭେଙ୍କଟ୍ ଚାଲିଯିବା ପରେ ଅଞ୍ଜନା କହିଲା, 'ଲୋକଟି ଜାଣ କେମିତିଆ !'

'ହୁଁ ।' ବିକ୍ରମ ଭାବିହେଲା । ସେ ନ ଥିବା ବେଳେ ଚୁଟିବନ୍ଧା, ଚିତାକୁଟା ଘରମାଲିକଟିର ଆସିବା ନେଇ ଅଞ୍ଜନା ମନରେ ଅସ୍ୱସ୍ତି ହେଉଛି କି ?

ଅଞ୍ଜନା ଯେ କେବଳ ସବୁଥିରେ ଆଡ୍‌ଜଷ୍ଟ୍ କରି ଚଳିଯାଏ, ତା' ନୁହଁ । ସେ ସବୁ ମଣିଷଙ୍କ ଭିତରେ ସୁ-ଗୁଣହିଁ ଦେଖେ । କୌଣସି ମଣିଷର ସ୍ୱଭାବ ଯେ ମନ୍ଦ ହୋଇପାରେ, ତା' ସେ ଜମା ଭାବିପାରେ ନାହିଁ । ଏଇଥିପାଇଁ ସେ ହଇରାଣ ବି ହେଇଛି କେତେଥର । କିନ୍ତୁ ନିଜ ସ୍ୱଭାବ ଛାଡି ପାରିନି । ହଠାତ୍ କରି ଯେ ଭେଙ୍କଟ୍ ଲୋକଟି କେମିତି ତା'ର ଅପସନ୍ଦ ହୋଇଗଲା, ତା' ହିଁ ଆଶ୍ଚର୍ଯ୍ୟର ବିଷୟ ।

ତାକୁ ଭରସା ଦେବା ପାଇଁ ବିକ୍ରମ ଯୋଡିଲା, 'ଆରେ, କାଲି ମାନେ କ'ଣ ସେ ସତରେ କାଲି ଆସି ପହଞ୍ଚୁଛନ୍ତି ? ଦେଖିବ, କାମ ଆରମ୍ଭ ହେଉ ହେଉ ସାତ ଦିନ ଗଡିଯିବ । ... ଆଉ ଯଦିବା ସେ କାମ କାଲି ଆରମ୍ଭ କରନ୍ତି, ଅସୁବିଧା କ'ଣ ? ଘରେ ପିଲାମାନେ ତ ଥିବେ ।' ଭାଗ୍ୟକୁ ପୂଜାଛୁଟି ଆରମ୍ଭ ହୋଇଯାଇଛି । ନଅ ବର୍ଷର ପୁଅ ଆଉ ସାତ ବର୍ଷର ଝିଅ ଯେ ଅଞ୍ଜନାର ଅଙ୍ଗରକ୍ଷୀ ହୋଇଯିବେ, ତା' ନୁହଁ । କିନ୍ତୁ ସାହସ ତ ନିଶ୍ଚୟ ।

ସୋମବାର ଦିନ ବିକ୍ରମ ଟିକିଏ ଶୀଘ୍ର ଇନ୍‌ଷ୍ଟିଚ୍ୟୁଟ୍‌ରୁ ଫେରିଆସିଲା । ଘର ଭିତରେ ପାଦ ଦେଇ ଦେଖିଲା ଅଞ୍ଜନାର ତଦାରଖରେ ଘର ସଫା କାମ ଚାଲିଛି । ଘରକାମ ପାଇଁ ନୂଆ ରଖାହୋଇଥିବା ସରସ୍ୱତୀ ଲାଗିପଡି ଘର ପୋଛି ଚାଲିଛି । କବାଟ କଡରେ ଖବର କାଗଜ ଉପରେ ରହିଛି ଧୂଳି, ସିମେଣ୍ଟ ଗୁଣ୍ଡ, ଲୁହା କଣ୍ଟା, କାଠର ଟୁକୁରା ।

'ସାବଧାନରେ ଆସ ।' ଅଞ୍ଜନା କହିଉଠିଲା । 'କୋଉଠି ହୁଏତ ଲୁହା କଣ୍ଟା ପଡିଥିବ ।'

'ଘର କାମ ହେଇଯାଇଛି !' ଆଶ୍ଚର୍ଯ୍ୟରେ ବିକ୍ରମ ପଚାରିଲା ।

'ବାଲ୍‌କନି ଛଡା ସବୁ ଶେଷ ।' ଖୁସି ଖୁସି ସ୍ୱରରେ ଅଞ୍ଜନା ଜଣେଇଲା ।

ବିକ୍ରମ ଅବାକ୍ । ବାଃ, ରାମମୂର୍ତ୍ତିର ଶଳା କଥା ରଖିପାରନ୍ତି ତା'ହେଲେ ! ବିକ୍ରମର ବହୁ ଭଡାଘର ଅଭିଜ୍ଞତାରେ ଏମିତି କେବେ ହୋଇନି । ଅଧିକାଂଶ ଘର ମାଲିକଙ୍କର 'କାଲି'ଟି ହେଉ ହେଉ ଦଶ ପନ୍ଦର ଦିନ ବି ଗଡିଯାଇଛି । ସୋଫାରେ ବସି ସେ ଜୋତା ଖୋଲିଲା ।

ତା' ସାମ୍ନାରେ ଅଦା ପକା ଚାହା କପେ ରଖି ଦେଇ ଅଞ୍ଜନା କହିଲା, 'ବୁଝିଲ, ଘରମାଲିକଙ୍କୁ ଆମେ ଯେମିତି ଭାବିଥିଲେ, ସେ ସେମିତି ନୁହନ୍ତି ।'

ଏଇ କେତେ ଘଣ୍ଟା ଭିତରେ ତାହେଲେ ଅଞ୍ଜନା ନିଜ ୟୁଟୋପିଆକୁ ଫେରିଯାଇଛି ! ଭେଙ୍କଟ୍‌ଙ୍କୁ ନେଇ ଯେଉଁ ସାମାନ୍ୟ କୁଣ୍ଠା ତା' ମନରେ ଥିଲା, ତା' ଲୋପ ପାଇ ସାରିଛି !

'ତୁମେ କେମିତି ଜାଣିଲ ?' ବିକ୍ରମ ଚାହା ପିଉ ପିଉ ପଚାରିଲା ।

'ତୁମେ କୁହ, ଆଉ କିଏ ଏମିତି ନିଜେ ଠିଆ ହୋଇ ହୋଇ କାମ କରେଇବ ? ପୁଣି ଫୋପଡା-ଫିଙ୍ଗା କାମ ନୁହଁ, ସବୁ ଏକ୍‌ଦମ୍ ଭଲରେ ହେଇଛି । ମ୍ୟାଟେରିଆଲ୍ ଭଲ, କାମ କରୁଥିବା ଲୋକଟି ବି ଅଭିଜ୍ଞ । ... ତା'ପରେ ଜାଣିଛ, ନିଜେନିଜେ ଆପାର୍ଟମେଣ୍ଟ ଅଫିସ୍‌କୁ ଫୋନ୍ କରି ପ୍ଲମ୍ବର୍ ବି ଡକେଇ ଆଣିଲେ !'

'ଆଛା !' ଏଇଟା ବି ଅବାକ୍ ହେବା ଭଳି କଥା । ଭଡା ଘର କାମ କେତେ ଜଣ ଘରମାଲିକ ଏଭଳି ଏକାଗ୍ରତାରେ କରାନ୍ତି !

'କାମ ସାରିବାର ଏମିତି ଜିଦି ଯେ, ନା ଭେଙ୍କଟ୍ ଖାଇବାକୁ ଗଲେ ବାହାରକୁ ନା ତାଙ୍କ ଲୋକକୁ ଯିବାକୁ ଦେଲେ । କହିଲେ– ଏକାଠି କାମତକ ସାରି ଦେଇ ତିନିଟା ଭିତରେ ବାହାରି ଯାଅ ।'

'ତିନିଟା ଯାଏଁ ନ ଖାଇ ସେମାନେ ପଡିଥିଲେ !'

'ମୁଁ ଦିଇଟା ବେଳେ ଚାହା ବିସ୍କୁଟ୍ ଦେଇଥିଲି ବଢେଇକୁ ।'

'ଆଉ ଭେଙ୍କଟ୍ ?'

'ସେ ଖାଲି କପେ ଚାହା ପିଇଲେ । ... ସେଇ ଚାହା ପିଇବା ବେଳେ ମୋର ଟିକିଏ କଥାବାର୍ତ୍ତା ହେଲା ତାଙ୍କ ସାଙ୍ଗରେ । କଥାବାର୍ତ୍ତା ବେଶ୍ ଭଲ । ଗତକାଲିର ରୁକ୍ଷ କଥା ଶୁଣି କେମିତି କେମିତି ଲାଗିଥିଲା, କିନ୍ତୁ ଆଜି କେତେ ଭଲରେ କଥା କହିଲେ । ବୋଧହୁଏ ଅନ୍ୟମାନଙ୍କ ସାଙ୍ଗରେ ମିଶିବାକୁ ସମୟ ନିଅନ୍ତି ସେ ।'

ହେଇଥିବ । ସମସ୍ତେ ତ ଆଉ ଏକରକମର ନୁହନ୍ତି । 'କ'ଣ ସବୁ କହୁଥିଲେ ?'

'ଏଇ କହୁଥିଲେ ଅଷ୍ଟ୍ରେଲିଆ କଥା । ଗତ ଚାଳିଶବର୍ଷ ଧରି ସେ ଅଷ୍ଟ୍ରେଲିଆରେ । ସେଠି ବ୍ୟବସାୟ କରନ୍ତି । ଲୁହା ପାଇପ୍ ଆଉ ସେଇଭଳି ଅନ୍ୟ ଜିନିଷର ମ୍ୟାନୁଫାକ୍ଚରିଙ୍ଗ୍ । ତା'ଛଡା ପୁରୁଣା ଘର କିଣି ସଜାଡି ପୁଣି ବିକ୍ରି କରିବାର ବ୍ୟବସାୟ ।'

'ଆଚ୍ଛା ? ସେଇଥିପାଇଁ ତାହେଲେ ଘରର ବିଭିନ୍ନ କାମ କେମିତି ଭଲରେ ହୁଏ, ତା' ତାଙ୍କୁ ଜଣା ! ... ହେଲେ ... ଅଷ୍ଟ୍ରେଲିଆରେ ଯଦି ଏମିତି ବ୍ୟବସାୟ ଲାଗିଛି, ଏଠି ଘର କିଣିଥିଲେ କାହିଁକି ?'

'କିଏ ଜାଣେ ?... କଥାଟି ମୁଁ ପଚାରିଥିଲି, କିନ୍ତୁ କେମିତି ଆଡେଇ ଦେଲେ । ମୁଁ ଆଉ ବେଶୀ ଫେଣେଇ ପଚାରିଲିନି ।'

ପ୍ରଶ୍ନଟିର ଉତ୍ତର କିନ୍ତୁ ପର ଶନିବାର ବିକ୍ରମକୁ ମିଳିଗଲା ।

ଶନିବାର ଦିନ ଠିକ୍ ଦଶଟା ବେଳେ ଦୁଇ ଜଣ ମିସ୍ତ୍ରୀଙ୍କୁ ଧରି ପହଞ୍ଚିଗଲେ ଭେଙ୍କଟ୍ । ବାଲ୍‌କନି କାମ ଆରମ୍ଭ ହେବ । ଚାହିଁଥିଲେ କେବଳ ଉପରୁ ଉପରୁ ପଲସ୍ତରା କରି ସେ କାମ ଶେଷ କରେଇ ଦେଇ ପାରିଥାଆନ୍ତେ । ମିସ୍ତ୍ରୀମାନେ ବି ସେକଥା କହିଥିଲେ । କିନ୍ତୁ ଭେଙ୍କଟ୍ ରାଜି ହେଲେ ନାହିଁ । କହିଲେ ଯେ, କରିବାକୁ ହେବ ଯଦି କାମଟି ଭଲରେ ହେଉ । ଫଟା ପଲସ୍ତରା କାଢି ଦେଇ ପୁଣି ଥରେ ପଲସ୍ତରା କରାଯାଉ । ଆଉ ତା' ସାଙ୍ଗରେ ତଳର ଫଟା ଟାଇଲ୍ ବଦଳାବଦଳି କାମଟି ବି ଏକାଠି ହେଇଯାଉ ।

ଏ କାମ କେଇ ଘଣ୍ଟାର ନୁହଁ । ପରିଶ୍ରମର କାମ ବି । ସେଥିପାଇଁ ଚାରି ଘଣ୍ଟା କାମ କରିବା ପରେ ମିସ୍ତ୍ରୀ ଦୁଇ ଜଣ ବାହାରକୁ ଚାଲିଗଲେ । ଏକାଠି ଖାଇ, ବିଡି ପିଇ ଫେରିବେ । ସେମାନଙ୍କ ପଛେ ପଛେ ଭେଙ୍କଟ୍ ବି ବାହାରି ଯିବାକୁ ବସିଥିଲେ, କିନ୍ତୁ ଯିବାକୁ ଦେଲାନି ଅଞ୍ଜନା । କହିଲା, 'କାହିଁକି ଅଯଥା ହୋଟେଲ୍‌ରେ ଖାଇବେ ? ଯାହା ଘରେ ରନ୍ଧା ହେଇଛି, ଟିକିଏ ଖାଇ ଦିଅନ୍ତୁ ନା ଆମ ସାଙ୍ଗରେ ।'

ସାମାନ୍ୟ ଇତସ୍ତତଃତା ପରେ ଭେଙ୍କଟ୍ ରାଜି ହେଲେ ।

ଶନିବାର ଦିନ୍ ଦିପହରେ ସାଧାରଣତଃ ଭାତ ଡାଲି ତରକାରୀ ରାନ୍ଧେନି ଅଞ୍ଜନା । ପିଲାଙ୍କ ପସନ୍ଦର ସାଣ୍ଡ୍‌ୱିଚ, ବିକ୍ରମର ପ୍ରିୟ କଟ୍‌ଲେଟ୍– ଏଇ ସବୁ ସେଦିନର ମେନୁ ।

ଭୟ ଥିଲା, ହୁଏତ ଦକ୍ଷିଣ ଭାରତୀୟ ଭେଙ୍କଟ୍ ନିରାମିଷାଶୀ ହୋଇଥିବେ, କିନ୍ତୁ ଅଷ୍ଟ୍ରେଲିଆରେ ଏତେ ବର୍ଷ ରହିବା ପରେ ସେ ଆମିଷପ୍ରିୟ ହୋଇଯାଇଛନ୍ତି ।

ଆଉ ଅସୁବିଧା ନାହିଁ ।

ମାଛ କଟ୍‌ଲେଟ୍ ଖାଉ ଖାଉ ହଠାତ୍ ଭେଙ୍କଟ୍ କହିପକେଇଲେ, 'ତାନିଆ ଏଇମିତି ମାଛ କଟ୍‌ଲେଟ୍ କରୁଥିଲା ।'

'ତାନିଆ କିଏ ?'

ବିକ୍ରମ ପ୍ରଶ୍ନରେ ହଠାତ୍ ଯେମିତି ସମ୍ବିତ ପାଇଲେ ଭେଙ୍କଟ୍ । ପାଟିରୁ ଯେ କଥା କେଇ ପଦ ବାହାରି ଯାଇଛି, ତା' ଠିକ୍ ଖିଆଲ୍ ନାହିଁ ।

'କିଏ ତାନିଆ ?' ଏଥର ଅଞ୍ଜନା ପଚାରିଲା ।

ଉତ୍ତର ନ ଦେଇ ଆଉ ଉପାୟ ନାହିଁ । ମୁଣ୍ଡ ଟେକି ଧୀର ସ୍ୱରରେ ଭେଙ୍କଟ୍ କହିଲେ, 'ତାନିଆ ମୋ' ସ୍ତ୍ରୀ ।'

'ଅଷ୍ଟ୍ରେଲିଆରେ ଅଛନ୍ତି ନା ଆପଣଙ୍କ ସାଙ୍ଗରେ ଆସିଛନ୍ତି ?' ଅଞ୍ଜନା ଆଗ୍ରହରେ ପଚାରିଲା ।

ହଠାତ୍ ଭେଙ୍କଟ୍ ଅନ୍ୟମନସ୍କ ହୋଇଗଲେ । 'ତାନିଆ ଆଉ ନାହିଁ । ଚାରିବର୍ଷ ତଳେ ସବୁଦିନ ପାଇଁ ଚାଲିଯାଇଛି ।'

ଉଭୟ ବିକ୍ରମ ଓ ଅଞ୍ଜନା ସ୍ତବ୍ଧ । ଭଦ୍ରାମିରେ 'ଆଇ ଆମ୍ ସୋ ସରି' କହିବା କଥା ବି ଭୁଲିଯାଇଛନ୍ତି ସେମାନେ ।

ଭେଙ୍କଟ୍ ପାଣି ଟିକିଏ ପିଇଲେ । ପୁଣି କହିଲେ, 'ତାନିଆର ଇଚ୍ଛା ଥିଲା ଜୀବନର ଶେଷ ସମୟ ଭାରତରେ କଟେଇବା ପାଇଁ । ଛୋଟ ଫ୍ଲାଟ୍ କଥା ସବୁବେଳେ କହୁଥିଲା ସେ – ବୟସ ହେଇଗଲେ ଆମର ଚଳିବା ପାଇଁ ଯେମିତି ଅସୁବିଧା ନ ହୁଏ । ସେଥିପାଇଁ ଏଇ ଫ୍ଲାଟ୍ କିଣିଲି ମୁଁ । ହେଲେ ...'

ସଂଧ୍ୟା ହେଉ ହେଉ ମିସ୍ତ୍ରୀ ଦୁଇ ଜଣ ଚାଲିଗଲେ । କାମ ତଥାପି ସରିନି । ଦିନକର କାମ ଆଉ ଥରେ ତଦାରଖ କରି ନେଇ ଭେଙ୍କଟ୍ ବି ବାହାରିଗଲେ । ଚାଲିଯିବା ବେଳେ କହିଲେ, 'କାଲି କାମ ଟିକିଏ ଶୀଘ୍ର ଆରମ୍ଭ କରେଇବି । ଏଇ ମିସ୍ତ୍ରୀ ରବିବାରରେ କାମ କରନ୍ତି ନାହିଁ । ବହୁ କଷ୍ଟରେ ଦୁଇ ପହର ଯାଏଁ କାମ କରେଇବାକୁ ରାଜି କରେଇଛି । ବାରଟା ସାଢେ ବାରଟା ଭିତରେ ଯେମିତି ହେଉ ବାଲ୍‌କନି କାମ ଶେଷ କରିବାକୁ ହେବ ।'

ସତକୁ ସତ ବାଲ୍‌କନି କାମ ରବିବାର ସାଢେ ବାରଟା ବେଳେ ଶେଷ ହୋଇଗଲା । କିନ୍ତୁ ଅଘଟଣଟିଏ ଘଟିଗଲା ଠିକ୍ ସେତିକି ବେଳକୁ । ପ୍ରାୟ ଜଣା-ପଡୁ ନ ଥିବା ଧାରୁଆ ଭଙ୍ଗା ଟାଇଲ୍‌ର ଖଣ୍ଡେ ହଠାତ୍ ଭେଙ୍କଟ୍‌ଙ୍କର କନା ଜୋତା

ଭିତର ଦେଇ ପାଦରେ ଗଳିଗଲା । ସେ କି ରକ୍ତର ସୁଅ ! କୌଣସି ମତେ ଗଜ୍ କନା ଦେଇ ରକ୍ତକୁ ତ ଅଟକାଗଲା, ହେଲେ ତଳେ ପାଦ ରଖି ଠିଆ ହେବା ମାତ୍ରକେ ପୁଣି ଛୁଟୁଛି ରକ୍ତର ସୁଅ । କିନ୍ତୁ ଭେଙ୍କଟ୍‌ଙ୍କର ଯେମିତି ଖାତିର୍ ନାହିଁ । 'ମୋର ଘର ତିଆରି ବ୍ୟବସାୟରେ ଏମିତି ଘଟଣା ନିତ୍ୟ-ନୈମିତ୍ତିକ, ଆପଣମାନେ ଜମା ବ୍ୟସ୍ତ ହୁଅନ୍ତୁ ନାହିଁ ।'

'ବ୍ୟସ୍ତ ହୁଅନ୍ତୁ ନାହିଁ' କହିଦେଲେ କ'ଣ ହେଲା ? ଅଞ୍ଜନା ବିବ୍ରତ ଭାବରେ କହିଲା, 'ତୁମେ ବରଂ ତାଙ୍କୁ ଟିକିଏ ଡକ୍ଟର୍ ରାଓଙ୍କ କ୍ଲିନିକ୍‌କୁ ନେଇ ଯାଅ । ଏ.ଟି.ଏସ୍. ନିହାତି ନେବା କଥା ।'

'ଏ.ଟି.ଏସ୍. ମୁଁ ଚାରି ମାସ ତଳେ ନେଇଛି, ସେଥିପାଇଁ ଚିନ୍ତା ନାହିଁ । ଘରେ ଆଜି ଦିନକ ବିଶ୍ରାମ ନେଲେ କାଲିକୁ ଠିକ୍ ହେଇଯିବ ।'

'ହେଲେ ଘରକୁ ଯିବେ କେମିତି ?'

'ସେଇ କଥା ଭାବୁଛି । ... ଆପଣ ଯଦି ଟିକିଏ କଷ୍ଟ କରି ଅଟୋ ଷ୍ଟାଣ୍ଡ୍ ପର୍ଯ୍ୟନ୍ତ ପହଞ୍ଚେଇ ଦେଇ ପାରନ୍ତି ...'

'ଅଟୋ ଷ୍ଟାଣ୍ଡ୍ ନୁହଁ, ମୁଁ ଆପଣଙ୍କୁ ଘରେ ଛାଡି ଦେବି । ଆପଣ ରାମମୂର୍ତ୍ତି ଘରେ ଅଛନ୍ତି ତ ?' ଭେଙ୍କଟ୍‌ଙ୍କର କୌଣସି କଥା ନ ଶୁଣି ବିକ୍ରମ ଗାଡି ଚାବି ପକେଟ୍‌ରେ ରଖିଲା ।

'ଆପଣଙ୍କ ରବିବାର ମୁଁ ନଷ୍ଟ କଲି ।' ଗାଡିରେ ବସି ସିଟ୍ ବେଲ୍ଟ୍ ବାନ୍ଧୁ ବାନ୍ଧୁ ଭେଙ୍କଟ୍ ଲଜ୍ଜିତ ଭାବରେ କହିଲେ । ପ୍ରଥମ ଦେଖା ହେବା ଦିନର ଖାପଛଡା ବ୍ୟବହାର, ଅମାର୍ଜିତ କଥାବାର୍ତ୍ତାର ଚିହ୍ନ ନ ଥିଲା । ଅଞ୍ଜନା ଠିକ୍ କହିଥିଲା, ଭଦ୍ରଲୋକ ବୋଧହୁଏ ଅନ୍ୟମାନଙ୍କ ସହିତ ସହଜ ହେବାକୁ ସମୟ ନିଅନ୍ତି ।

'ମାତ୍ର ତ ଅଧ ଘଣ୍ଟାକର ରାସ୍ତା । ଆଜି ରବିବାରରେ ଟ୍ରାଫିକ୍ ବି କମ୍ ।'

'କମ୍ ଆଉ କ'ଣ ! ଆଗରୁ ଅଫିସ୍ ଦିନରେ ବି ଏତିକି ଟ୍ରାଫିକ୍ ନ ଥିଲା । ପାଞ୍ଚଟା ବର୍ଷରେ ଏ ସହର ଅବସ୍ଥା କ'ଣ ହେଲାଣି । ପହଞ୍ଚି ପ୍ରଥମେ ବିଶ୍ୱାସ ହେଉନି ଯେ ଏଇ ମୋର ନିଜ ସହର ।'

'ଆପଣ ପାଞ୍ଚ ବର୍ଷ ପରେ ଭାରତ ଆସିଲେ ?'

'ହଁ ।'

'କେମିତି ଆସି ନ ଥିଲେ ଏତେ ଦିନ !'

ଟିକିଏ ରହି ଯାଇ ଭେଙ୍କଟ୍ କହିଲେ, 'କେମିତି ଆସିଥାଆନ୍ତି ଏଠିକି ?

ତାନିଆ ଚାଲି ଯିବା ପରେ ଏ ସହରକୁ ଆସିବା କଥା ଜମା ଭାବି ପାରି ନଥିଲି । ତା' ଇଚ୍ଛାରେ ଏଠି ଘର କିଣିଲି, ଅଥଚ ସେଇ ତାନିଆ ହିଁ ରହିଲାନି । ...'

'ଆଇ ଆମ୍ ସରି ।' ବିକ୍ରମ କହିଲା ।

'ହୁଏତ କୌଣସି ଦିନ ଆଉ ଫେରି ନ ଥାଆନ୍ତି । ବାପା, ମା' ବି ନାହାନ୍ତି । ହେଲେ ମୋ ସାନ ଭଉଣୀ ରାଧା, ଏଇ ରାମୁର ସ୍ତ୍ରୀ, ଫୋନ୍‌ରେ ଏମିତି କନ୍ଦାକଟା କଲା ଯେ ନ ଆସି ରହିପାରିଲି ନାହିଁ । ... ପିଲାଦିନରୁ ମୁଁ ଟିକିଏ ଅନ୍ୟରକମର । ଯାହା କହନ୍ତି ରିବେଲିଅସ୍ । ମୋ ବାପା, ମା'ଙ୍କର ସେଥିପାଇଁ ମତେ ନେଇ ମନରେ ବହୁତ ଅଶାନ୍ତି ଥିଲା । କୌଣସି ମତେ ଗ୍ରାଜୁଏସନ୍ ଶେଷ କରି ଚାକିରିଟିଏ ଯୋଗାଡ କରି ମୁଁ ଅଷ୍ଟ୍ରେଲିଆ ଚାଲିଗଲି । ସ୍ୱସ୍ତିର ନିଶ୍ୱାସ ନେଲେ ମୋ' ପରିବାରର ସମସ୍ତେ । ତା'ପରେ ମୁଁ ନିଜ ଇଚ୍ଛାରେ ବଞ୍ଚିଲି ସେଠି । ବାଧା ଦେବାକୁ କେହି ନାହିଁ । ଜୀବନଟା ଲକ୍ଷ୍ୟହୀନ ଭାବରେ ଗଡି ଗଡି କୋଉଠି ଯେ ପହଞ୍ଚିଥାଆନ୍ତା କିଏ ଜାଣେ !'

ଦୀର୍ଘନିଶ୍ୱାସ ନେଲେ ଭେଙ୍କଟ୍ । କହିଲେ, 'ଏକତିରିଶ ବର୍ଷ ତଳେ ହଠାତ୍ ତାନିଆ ସାଙ୍ଗରେ ମୋର ଦେଖା ହେଇଗଲା ଏବଂ ଦୁହେଁ ଦୁହିଁଙ୍କୁ ଭଲ ପାଇ ବସିଲୁ । ତା'ର ବର୍ଷକ ପରେ ସେ ମୋ ଘରକୁ ସବୁଦିନ ପାଇଁ ଚାଲି ଆସିଲା ଏବଂ ବଦଳିଗଲା ମୋର ବାରବୁଲା ଜୀବନ । କିନ୍ତୁ ମୁଁ ମୂର୍ଖ, ଜାଣି ପାରିଲିନି । ବୁଝିବା ବେଳକୁ, ଜାଣିବା ବେଳକୁ ବହୁତ ଡେରି । ତାନିଆର କ୍ୟାନ୍‌ସର୍ ଶେଷ ପର୍ଯ୍ୟାୟରେ ।'

'ଆଇ ଆମ୍ ସୋ ସରି ।' ବିକ୍ରମ ଆଉ ଥରେ କହିଲା ।

ଭେଙ୍କଟ୍ ଯେମିତି ବିକ୍ରମ କଥା ଶୁଣି ପାରି ନାହାନ୍ତି । ଅନ୍ୟମନସ୍କ ଭାବରେ ପୁଣି କହିଲେ, 'ତାନିଆ ଚାଲିଯିବା ପରେ ମୁଁ ଏମିତି ଡିପ୍ରେସନ୍‌ରେ ପଡିଗଲି ଯେ ଦେଢ ବର୍ଷ କାଳ ବିଛଣାରୁ ଉଠି ପାରିଲିନି । ଟିନାର ଯତ୍ନରେ ଧୀରେ ଧୀରେ ଠିକ୍ ହେଲି । ଉଠି ଠିଆ ହେଲି । ବ୍ୟବସାୟ କଥା ବୁଝିବା ଆରମ୍ଭ କଲି । ... ବିଚାରୀ ଟିନା, କେତେ କରିଛି ! ନିଜ ସ୍ୱାମୀ, ଛୋଟ ପିଲା– ସମସ୍ତଙ୍କଠୁଁ ସମୟ କାଢି ମୋର ଯତ୍ନ କରିଛି ।'

'ଟିନା କିଏ ? ଆପଣଙ୍କ ଝିଅ?'

'ମୋ ଝିଅ ନୁହଁ, ତାନିଆର ଝିଅ ।'

ମାନ ଅଭିମାନର କଥା ନୁହଁ, ପରିଷ୍କାର ସହଜ କଥା । ଏହାର କି ପ୍ରତ୍ୟୁତ୍ତର ଦେବ ଜାଣି ନ ପାରି ବିକ୍ରମ ଚୁପ୍ ରହିଲା ।

ତା' ଆଡକୁ ଚୁଲି ଚାହିଁ ଭେଙ୍କଟ୍ ଆଉ ଥରେ କହିଲେ, 'ଟିନା ତାନିଆର ଝିଅ । ... ତାନିଆ ହାଇସ୍କୁଲ୍‌ରେ ପଢିବା ବେଳେ ଟିନା ଜନ୍ମ ହୋଇଥିଲା । ତାନିଆର ସେତେବେଳକାର ବୟଫ୍ରେଣ୍ଡ ଟିନାର ପିତୃତ୍ୱ ସ୍ୱୀକାର କଲାନି । ଏବେକାର କଥା ହେଇଥିଲେ, ଡି.ଏନ୍.ଏ. ଟେଷ୍ଟ ଇତ୍ୟାଦି ହେଇଥାଆନ୍ତା, କିନ୍ତୁ ସେତେବେଳେ ଅଷ୍ଟ୍ରେଲିଆରେ ଏସବୁ କିଛି ନ ଥିଲା । ... ହେଇଥିଲେ ବା କ'ଣ ହେଇଥାଆନ୍ତା ? ତାନିଆ ଭଳି ଆତ୍ମାଭିମାନୀ ଝିଅ କ'ଣ କେବେହେଲେ ସେଇ ଭୀରୁ ମଣିଷଟିର ମୁହଁ ଚାହିଁ ଥାଆନ୍ତା ? ତା'ଠୁଁ ଜବରଦସ୍ତି ଚାଇଲ୍ଡ୍ ସପୋର୍ଟ୍ ପାଇଁ ଟଙ୍କା ଆଦାୟ କରି ଥାଆନ୍ତା ? ... ଏନିଓ୍ୱେ, ତାନିଆ ଯେତେବେଳେ ମୋ ସାଙ୍ଗରେ ରହିଲା, ସେତେବେଳେ ଟିନା ଥିଲା ତା' ସାଙ୍ଗରେ ।'

'ଆପଣ ବାହାଘର ପରେ ଟିନାକୁ ଝିଅ ହିସାବରେ ଗ୍ରହଣ କରିଥିବେ ନିଶ୍ଚୟ ?'

'ବାହାଘର ପରେ !' କରୁଣ ଭାବରେ ହସିଲେ ଭେଙ୍କଟ୍, 'ସେତେବେଳେ ଆଇନ୍ ଅନୁସାରେ ଦତ୍ତକ ନେବା, ନ ନେବାର କୌଣସି ମାନେ ନ ଥିଲା ।'

ଭେଙ୍କଟଙ୍କ କଥା କିଭଳି ପ୍ରହେଳିକାମୟ ମନେ ହେଲା ବିକ୍ରମକୁ ।

ଭେଙ୍କଟ୍ ନିଜ ଚିନ୍ତାରେ ବୁଡିଯାଇଥିଲେ । ହଠାତ୍ କହି ଉଠିଲେ, 'ବିକ୍ରମ, ଆମେ ପୁରୁଷମାନେ ବଡ ଅଦ୍ଭୁତ ଜୀବ ଗୋଟିଏ ଗୋଟିଏ । ପୃଥିବୀଯାକର ସମ୍ପଦ ଆମ ହାତରେ ବେଳେ ବେଳେ କୁଢେଇ ହେଇଯାଏ, ଅଥଚ ଆମେ ବୁଝିପାରୁନି । ବୁଝିବା ବେଳକୁ ବହୁତ ଡେରି ହେଇଯାଇଥାଏ ।'

କୋଉ କଥାରୁ ଏଭଳି ଜୀବନ ଦର୍ଶନ ? ବିନା ହେଲ୍‌ମେଟ୍‌ରେ ମଟର୍ ସାଇକେଲ୍ ଚଲାଉଥିବା କମ୍ ବୟସର ପିଲାଟିଏକୁ ଚପି ଯାଉ ଯାଉ ବିକ୍ରମ କଣେଇ ଥରେ ଭେଙ୍କଟ୍‌ଙ୍କୁ ଦେଖିଲା । ଏବଂ ଅବାକ୍ ହୋଇଗଲା । ବିପତ୍ନୀକ ମଣିଷଟିର ଆଖିରେ ଯନ୍ତ୍ରଣାର ଛାପ ସହିତ ଏ କି ଭାବ ଗୋଳେଇ ହୋଇଯାଇଛି ? ଚାପା କ୍ରୋଧ ଯେମିତି । କିନ୍ତୁ ସେ ଆଉ କୌଣସି ପ୍ରଶ୍ନ କଲା ନାହିଁ । ଏମିତିରେ ବେଶୀ କଥା କହିବା ତା'ର ସ୍ୱଭାବ ନୁହଁ, ପୁଣି ଅନ୍ୟକୁ ନେଇ କୌତୂହଳ ଆହୁରି କମ୍ ।

ତଳ ଓଠ କାମୁଡି ନିଜକୁ ନିୟନ୍ତ୍ରଣ କଲେ ଭେଙ୍କଟ୍ । କିଛି ସମୟ ଚୁପ୍ ରହି ପୁଣି କହିଲେ, 'ତାନିଆ ଭଳି ଜଣଙ୍କୁ ମତେ ଦେଲେ ଠାକୁର । ଏତେ ଗୁଡାଏ ବର୍ଷ ମୋ' ପାଖରେ ରହି ରହି ସେ ମୋ ସୁଖ ଦୁଃଖ ସବୁ ସାଉଁଟି ନେଲା । ଅଥଚ ମୁଁ କିଛି ବୁଝି ପାରିଲି ନାହିଁ । ... କେତେ ଭାଗ୍ୟ କରିଥିଲେ ସେଭଳି ଜଣେ ମିଳେ !'

'ଆପଣ ଠିକ୍ କହୁଛନ୍ତି । ଭାଗ୍ୟ କଲେ ଭଲ ପତ୍ନୀ ମିଳେ । ... ଆଉ ଆମ୍

ଏ ଲକି ମ୍ୟାନ୍ ଟୁ । ଅଞ୍ଜନା ଭଳି ସ୍ତ୍ରୀ ଭାଗ୍ୟ କରିଥିଲେ ମିଳେ ।' କେବେ କାହାକୁ ନ କହୁଥିବା କଥା କେଇ ପଦ ବିକ୍ରମ ଓଠରୁ ଖସି ପଡ଼ିଲା ।

ସହଜ କଥା, କିନ୍ତୁ ବାରୁଦ ଗଦାରେ ନିଆଁ ଲାଗିଗଲା ଯେମିତି । କିଛି ସମୟ ଆଗରୁ ଭେଙ୍କଟ୍‌ଙ୍କ ଆଖିରେ ଦେଖିଥିବା ଚାପା କ୍ରୋଧ ତାଙ୍କର ମୁହଁ, ଦୁଇ ଓଠକୁ ସଂପ୍ରସାରିତ ହୋଇଗଲା । ହଠାତ୍ କରି ସେ ହେଇଗଲେ ସେଇ ପ୍ରଥମ ଦିନର ଅଶାଳୀନ ମଣିଷଟି । ବଡ ପାଟି କରି କହି ଉଠିଲେ, 'ନିଜକୁ ଭାଗ୍ୟବାନ୍ କହୁଛ, ହେଲେ କେବେ ଏକଥା ତୁମ ସ୍ତ୍ରୀଙ୍କୁ କହିଛ ? ତାଙ୍କୁ କହିଛ ଯେ ତାଙ୍କ ଭଳି ପତ୍ନୀ ପାଇ ତୁମ ଜୀବନ ଧନ୍ୟ ହୋଇଯାଇଛି ? କହିଛ କି ? କେତେ ବର୍ଷ ହେଲା ତୁମ ବାହାଘର ? ଦଶ ? ଏଗାର ? ବାର ? ଏଇ ବାର ବର୍ଷରେ ଦଶ ହଜାର ଥର ତୁମ ଆଗରେ ଖାଇବା ବାଢ଼ି ରଖିଥିବେ ତୁମ ସ୍ତ୍ରୀ । ବାର ହଜାର ଥର ଚାହା କଫି ନିଜ ହାତରେ କରି ବଢ଼େଇ ଦେଇଥିବେ । କେବେ ସେଥିପାଇଁ କୃତଜ୍ଞ ହେଇଛ ? ତୁମର ଭଲମନ୍ଦ ଦିନ ପରେ ଦିନ ବୁଝି ଯାଇଥିବେ ସେ, କେବେ ଭାବିଛ ସେକଥା ? କେବେ ତାଙ୍କ ଇଚ୍ଛା ଅନିଚ୍ଛା କଥା ବୁଝିବାର ଚେଷ୍ଟା କରିଛ ?'

ବିକ୍ରମ ଚୁପ୍ ରହିଗଲା ।

'ଏସବୁ କିଛି କରିନ ନା ?' ହଠାତ୍ ଯେମିତି ଧସି ଗଲେ ଭେଙ୍କଟ୍ । ଆଖିର ନିଆଁ ଲିଭିଗଲା । ହଜିଗଲା ମୁହଁର ସବୁ ରଙ୍ଗ । ଅସ୍ପଷ୍ଟ ସ୍ୱରରେ କହିଲେ, 'ମୁଁ ବି କରି ନ ଥିଲି । କେବେ ତାନିଆକୁ କିଛି କହି ନ ଥିଲି । ତା' ମନରେ କି ଆଶା ଅଛି, କ'ଣ ସେ ଚାହେଁ, କେବେ ତଳେଇ ଭାବି ନ ଥିଲି । ବୁଝିବାର ଚେଷ୍ଟା କରି ନଥିଲି । ... ପୁରୁଷ ତ ! ଭାବିଥିଲି ଏ ଭଲ ପାଇବା, ଶ୍ରଦ୍ଧା ମୋର ପ୍ରାପ୍ୟ । ମୁଁ ତାନିଆକୁ ଆର୍ଥିକ ସ୍ୱାଚ୍ଛନ୍ଦ୍ୟ ଦେଇଛି, ବନ୍ଦୀକରି ରଖିନି– ସେତିକ ଯଥେଷ୍ଟ । କିନ୍ତୁ ଏସବୁ ବ୍ୟତୀତ ବି ଯେ ମୋର ଅଧିକ କିଛି ତାକୁ ଦେବା ଉଚିତ୍, ସେକଥା ଭାବି ନଥିଲି । ତାନିଆ ମୋ' ପାଖରେ ରହିବାର ପଚିଶ ବର୍ଷ ଉପରେ ହେଇଯାଇଥିଲା । ହଠାତ୍ ରୁଟିନ୍ ଚେକ୍ ଅପ୍‌ରେ ଜଣାପଡ଼ିଲା ଯେ ତା'ର କ୍ୟାନ୍‌ସର୍ । ଭିତରେ ଭିତରେ ସବୁ ଖାଇଯାଇଛି । ... ମୁଁ ଯେତେବେଳେ ଜାଣିଲି ଯେ ଅଳ୍ପ କେଇ ମାସରେ ମୋତେ ଛାଡ଼ି ତାନିଆ ସବୁ ଦିନ ପାଇଁ ଚାଲିଯିବ, ସେତେବେଳେ ମୁଁ ପାଗଳ ହୋଇଗଲି । ତାନିଆକୁ ବାରମ୍ବାର ପଚାରିଲି– 'କୁହ, କ'ଣ ଇଚ୍ଛା ଅଛି ମନରେ । ତୁମର ସବୁ ଇଚ୍ଛା ପୂରଣ କରିବି ।' ତାନିଆ କିଛି ନ କହି ଖାଲି ହସି ଦେଉଥିଲା । ... ଦିନେ ଟିନାକୁ ମୁଁ ତା' ମା'ର ଇଚ୍ଛା କଥା ପଚାରିଲି । କାଳେ ଝିଅ ପାଖରେ ମା' ମନ ଖୋଲି କିଛି କହିଥିବ !

ସେତେବେଳେ ଟିନା ବାହା ହେଇ ସାରିଛି ।'

'ଟିନା କ'ଣ କହିଲେ ?'

'ଟିନା କ'ଣ କହିଲା ଜାଣ, ବିକ୍ରମ ? ଟିନା କହିଲା – 'ମାମାର ସବୁ ଦିନେ ବାହା ହେବାକୁ ଖୁବ୍ ଇଚ୍ଛା' । ହଠାତ୍ ପିଲାଙ୍କ ଭଳି କାନ୍ଦି ପକେଇଲେ ଭେଙ୍କଟ୍ ।

ବାହା ହେବାର ଇଚ୍ଛା !! ବିକ୍ରମ କିଛି ବୁଝୁ ନ ଥିଲା ।

ଆଖି ଲୁହ ପୋଛି ନେଇ ଭେଙ୍କଟ୍ କହିଲେ, 'ତିରିଶ ବର୍ଷ ମୋ' ପାଖରେ ତାନିଆ ରହିଲା । କିନ୍ତୁ ମୁଁ ତାକୁ ବାହା ହୋଇନଥିଲି, ବିକ୍ରମ । ମୋର ଚିନ୍ତାଧାରା ସବୁଦିନେ ଅନ୍ୟରକମର । ଫ୍ରି ସ୍ପିରିଟ୍ । ବାହାଘର କଥା ମନରେ କେବେ ପଶି ନ ଥିଲା । ତାନିଆର ଯେ ବାହା ହେବାକୁ ସେଇ ପ୍ରଥମ ଦିନରୁ ଇଚ୍ଛା, ତା' ବି ବୁଝି ନ ଥିଲି । ଜାଣି ନଥିଲି ଯେ ମୋ' ଠୁଁ ସେଇ କେତେ ପଦ କଥା ଶୁଣିବା ପାଇଁ ସେ ଦିନ, ମାସ, ବର୍ଷ ଅପେକ୍ଷା କରି କରି କଟେଇ ଦେଇଛି । ... ଟିନାଠୁଁ ତା' ମା'ର ଇଚ୍ଛା କଥା ଶୁଣିବା ପରେ ମୁଁ କ'ଣ କଲି ଜାଣ ? ଘରେ ସିଭିଲ୍ ସେରିମୋନି କରି ତାନିଆକୁ ବାହା ହେଇଗଲି । କିନ୍ତୁ ଯେଉଁ ତାନିଆକୁ ମୁଁ ବିବାହିତାର ସମ୍ମାନ ତିରିଶ ବର୍ଷ ଧରି ଦେଇ ପାରିଥାଆନ୍ତି, ତାକୁ ମାତ୍ର ଦୁଇଟି ମାସ ପାଇଁ ସେ ସମ୍ମାନ ଦେଇ ପାରିଲି ।'

ରାମମୂର୍ତ୍ତିଙ୍କ ଘର ହୋଇଯାଇଥିଲା । ଘର ବାହାରେ ଭେଙ୍କଟ୍‌ଙ୍କୁ ଓହ୍ଲେଇ ଦେଇ ବିକ୍ରମ ଗାଡି ବୁଲାଇଲା । ଘରକୁ ଫେରିବା ବେଳେ ନିହାତି ଅନ୍ୟମନସ୍କ ହୋଇ ଗାଡି ଚଳାଉଥିଲା ସେ । କ'ଣ ଏତେ ଭାବି ହେଉଥିଲା ?

ଭେଙ୍କଟ୍‌ଙ୍କ କଥା ? ତାନିଆ କଥା ?

ନା, ଅଞ୍ଜନା କଥା ?



# ଯଦି ଥରଟିଏ...

ଘର ବାହାରେ ପାଦ ଦେଇ ମୁଁ ଆଶ୍ଚର୍ଯ୍ୟ ହେଲି । ଏଇ କେଇଟା ଘଣ୍ଟା ଭିତରେ କେତେ ବଦଳି ଯାଇଛି ମୋ ଚିହ୍ନା ପୃଥିବୀଟା ! ବାହାରେ ବେଶୀ ଥଣ୍ଡା ନାହିଁ । ବରଫ ନାହିଁ । କୁହୁଡି ବି ନାହିଁ । ସ୍ନିଗ୍ଧ ନରମ ଖରା ଘର ବାହାରର ସବୁଜ ଲନ୍ ଉପରେ ଖେଳାଇ ହୋଇପଡିଛି । ଆଉଁଶି ଦେଉଛି ମା'ଙ୍କ ପ୍ରିୟ ଗୋଲାପଗୁଡିକର ଧଳା ନାଲି ପାଖୁଡାକୁ ।

ଆଃ, ଦିନଟି ଭାରି ସୁନ୍ଦର ! ମାର୍ଚ୍ଚ ମାସ ଆରମ୍ଭ ମାତ୍ର ହୋଇଛି । ଏ ଅସମୟରେ ଏଠି ଯେ ବସନ୍ତ ପ୍ରବେଶ ହୋଇଗଲା ! ଆମର ଏଠି, ଅର୍ଥାତ୍ ପୂର୍ବ ଆମେରିକାର ବ୍ରିଜ୍‌ୱାଟର୍ ସହରରେ ଶେଷ ଏପ୍ରିଲ୍-ମେ ଆରମ୍ଭ ଆଗରୁ ଏଇମିତି ଦିନ କମ୍ ଦେଖିବାକୁ ମିଳେ । ମାର୍ଚ୍ଚର ପ୍ରଥମ ସପ୍ତାହରେ ଏମିତି ସୁନ୍ଦର ଦିନ ଠିକ୍ ନିୟମ ନୁହଁ, ବ୍ୟତିକ୍ରମ ।

ହେଲେ ଗତବର୍ଷଠୁଁ ସବୁ କିଛି ଯେମିତି ବ୍ୟତିକ୍ରମରେ ଚାଲିଛି । କେହି କ'ଣ ଭାବିଥିଲା ଯେ ମା' ତାଙ୍କ କମ୍ପାନୀର ସିନିୟର୍ ଭାଇସ୍ ପ୍ରେସିଡେଣ୍ଟ ହେଇଯିବେ ? ଏବେ ପୁଣି ଗୁଜବ ରଟିଛି ଯେ ବର୍ତ୍ତମାନର ପ୍ରେସିଡେଣ୍ଟ ଡିସେମ୍ବର ମାସରେ ଅବସର ନେଲେ ମା'ଙ୍କ ହାତକୁ ସେଇ ଚାକିରିଟା ଆସିଯିବାର ସମ୍ଭାବନା ବହୁତ । ଆଉ ବାପା ? ଏତେ ବର୍ଷ ଧରି ନିଜ ବ୍ୟବସାୟ ଟାଣିଟୁଣି ଚଳାଉ ଥିଲେ । ହେଲେ ଜାନୁୟାରୀ ମାସରୁ କ'ଣ ଯେ ହେଲା, ହଠାତ୍ ତିନି ଗୁଣ ବଢିଗଲା ଆମଦାନୀ । ଏବେ ଇଉରୋପ୍‌କୁ ରପ୍ତାନୀ କରିବା କଥାବାର୍ତ୍ତା ଚାଲିଛି । ମୋ' ବଡ଼ ଭାଇ ଏବେ ଠାରୁ ବାପାଙ୍କୁ ସାହାଯ୍ୟ କରିବା ଆରମ୍ଭ କରି ଦେଲେଣି । ଆଉ ଦୁଇଟା ମାସ ପରେ ତାଙ୍କ ଏମ୍.ବି.ଏ. ଶେଷ ହୋଇଗଲେ ସେ ବ୍ୟବସାୟର ଅଧା ଭାର ନେବେ ବୋଲି କଥା ହେଇଛି ।

ଏସବୁ ବ୍ୟତିକ୍ରମର ପ୍ରତିଛାୟା ମୋ' ପୃଥିବୀ ଉପରେ ବି ପଡିଛି । ଅନ୍ତତଃ ମୋ ବେଷ୍ଟ ଫ୍ରେଣ୍ଡ ପିଟର୍ ବରମ୍ବାର ସେଇ କଥା କହେ ।

ମୁଁ କ୍ରିଷ୍ଟୋଫର୍ । ମୋ ବୟସ ସତର । ଆଠ ମାସ ତଳେ, ଗତ ଜୁଲାଇରେ, ମୁଁ ସତରରେ ପାଦ ଦେଇଛି । ପିଟର୍ କହେ ସତରରେ ପାଦ ଦେବା ପରଠୁଁ ମୁଁ ଯେମିତି ବଦଳି ବଦଳି ଯାଉଛି । ମୋ ଚିନ୍ତାଧାରା ବଦଳିଛି । କଥାର ଶୈଳୀ

ଅନ୍ୟରକମ । ଆଜିକାଲି କୁଆଡ଼େ ମୋ ଭାଷାରେ କବିତାର ଛୁଆଁ । ତର୍କମାରେ ଦାର୍ଶନିକର ଦୃଷ୍ଟିଭଙ୍ଗୀ ।

ତା' କଥା ବୋଧହୁଏ ସତ । ନହେଲେ କ'ଣ ମୋ' ଭଳି ଜଣେ ବାସ୍ତବବୋଧ ସମ୍ପନ୍ନ ଯୁବକ ମାର୍ଚ୍ଚ ସକାଳର ଖରାକୁ ଉପଭୋଗ କରନ୍ତା ? ଆଗାମୀ ବସନ୍ତର କାଳ୍ପନିକ ପାଦଶବ୍ଦ ଶୁଣି ଶିହରିତ ହୁଅନ୍ତା ?

ଗୋଲାପ ବଗିଚା ଆଉ ଲନ୍‌ରୁ ଆଖି ଫେରାଇ ମୁଁ ଗେଟ୍ ପାଖକୁ ଚାଲିଗଲି । ଆଉ ଅଳ୍ପ ସମୟ ପରେ ମୋ' ସ୍କୁଲ୍ ବସ୍ ଆସିଯିବ ।

ଏଇଟା ମୋର ହାଇସ୍କୁଲ୍‌ର ଶେଷ ବର୍ଷ । ଗତ କେଇ ବର୍ଷ ଧରି, ବିଶେଷ କରି ହାଇସ୍କୁଲ୍‌ରେ ପାଦ ଦେବା ପରଠୁଁ ମୋ' ପୃଥିବୀଟା ଘୂରୁଥିଲା ବାସ୍କେଟ୍ ବଲ୍, ଟେନିସ୍, ମ୍ୟୁଜିକ୍ ଆଉ ସାଙ୍ଗସାଥୀ ନେଇ । କିଛିଟା ପାଠ ପଢିବାକୁ ହୁଏ, ସ୍କୁଲ୍‌ର ହୋମ୍‌ୱାର୍କ୍ କରିବାକୁ ହୁଏ – ସେଥିପାଇଁ କରୁଥିଲି । ଆଗ୍ରହରେ ନୁହଁ କି ଅନାଗ୍ରହରେ ନୁହଁ । ଅନେକଟା ନିୟମପାଳନ କରିବା ଭଳି । କିନ୍ତୁ ସବୁକିଛି ବଡ଼ ସହଜରେ ହୋଇଯାଉଥିଲା । ଅନ୍ୟମାନେ ବୁଝିବା ଆଗରୁ ମୁଁ ଜ୍ୟାମିତିର ଉପପାଦ୍ୟ ବୁଝିନେଉଥିଲି । କେମିଷ୍ଟ୍ରିର ଫର୍ମୁଲା ମୋ' ମନ ଭିତରେ ଛାପି ହେଇ ରହିଯାଉଥିଲା । ଇତିହାସର ପ୍ରତିଟି ତାରିଖ ଆଖି ସାମ୍ନାରେ ଭାସି ବୁଲୁଥିଲା ।

ଫିଜିକ୍‌ସ୍ ଟିଚ୍‌ର୍ ମିସେସ୍ ବେନେଟ୍ କହନ୍ତି– 'କ୍ରିଷ୍ଟୋଫର୍, ଏତେ ବୁଦ୍ଧି ତୁମର, ଆଉ ଟିକିଏ ଅଧିକ ଉପଯୋଗ କର । ଦେଖିବ, ଆଉ ଟିକିଏ ପରିଶ୍ରମ କଲେ ତୁମ ନାଁ ସବୁଠାରୁ ଉପରେ ରହିବ । ଅନ୍ ଦି ଟପ୍ ।'

ପୁଃ ! ଲାଭ କ'ଣ ? ଲାଇବ୍ରେରୀରେ ଘଣ୍ଟା ଘଣ୍ଟା କଟାଇବା, ବହିରେ ମୁହଁ ମାଡି ଦେବା– ଏଇ କ'ଣ ଜୀବନ ? ନା, ମୁଁ ପାରିବି ନାହିଁ । କ'ଣ ଆଉ ହେବ ? ଆମେରିକାର ଭଲ ଭଲ କଲେଜ ମୋର ଦରଖାସ୍ତ ଗ୍ରହଣ କରିବେ ନାହିଁ ତ ? ନକରନ୍ତୁ । ମୋର ବଡ ତିନି ଭାଇଙ୍କ ଭଳି ମୁଁ ଆମେରିକାର ଶ୍ରେଷ୍ଠ କଲେଜମାନଙ୍କରେ ପାଦ ଦେଇ ପାରିବି ନାହିଁ ତ ? ନ ହେଉ । ଯେଉଁଠି ମିଳିବ, ସେଇ କଲେଜରେ ପଢିବି । ଯେଉଁ ଭବିଷ୍ୟତକୁ ମୁଁ କେବେହେଲେ ଦେଖିନି, ତାକୁ ସୁନ୍ଦର କରିବା ଆଶାରେ ମୁଁ ବର୍ତ୍ତମାନକୁ ଜଳାଞ୍ଜଳି ଦେଇ ପାରିବି ନାହିଁ ।

କଲେଜ୍ ଆପ୍ଲିକେସନ୍‌ଗୁଡିକ ପକାଇବାର କିଛି ଦିନ ଆଗରୁ କଥାଟା ଥରେ ଖାଇବା ଟେବୁଲରେ ମୋ ପାଟିରୁ ବାହାରି ଯାଇଥିଲା । ମୁଁ ଦେଖିଥିଲି, ଖାଉ ଖାଉ ରହିଯାଇଥିଲେ ବାପା । ମା'ଙ୍କ ମୁହଁ ବି ହଠାତ୍ ଶୁଖିଯାଇଥିଲା । କିନ୍ତୁ କେହି ମୋତେ କିଛି କହି ନ ଥିଲେ । ମୋ' ଉପରେ ବିରକ୍ତ ହେଇ ନ ଥିଲେ ।

ବୋଧହୁଏ ସେମାନେ ସେଇଭଳି କିଛି କରିଥିଲେ ମୁଁ ବେଶୀ ଖୁସୀ ହେଇଥାଆନ୍ତି । ଯୁକ୍ତି କରିବା ପାଇଁ ମୋତେ ଗୋଟାଏ ସୁଯୋଗ ଯେ ମିଳି ଯାଇ-ଥାଆନ୍ତା । କିନ୍ତୁ ଏମିତି ଭିତରେ ଭିତରେ ମନ ଖରାପ କରି ଚୁପ୍ ରହିଯିବାଟା... ଧେତ୍ ! ମୁଁ ସେଦିନ ରାତିରେ ବହୁତ ସମୟ ଧରି ପଢ଼ା ଟେବୁଲ୍‌ରେ ବସିରହିଥିଲି । କଲେଜ ଆପ୍ଲିକେସନ୍ ସାଙ୍ଗରେ ପଠାଇବା ପାଇଁ ଲେଖିଥିବା ପ୍ରବନ୍ଧଟକ ଆଉ ଟିକିଏ ଗଭୀର ଓ ସୁନ୍ଦର କରିବା ପାଇଁ ଚେଷ୍ଟା କରିଥିଲି । କିଏ ଜାଣେ କାହିଁକି ?

ମୋ ସ୍କୁଲ୍ ବସ୍ ଆସିଗଲା । ବସ ଭିତରେ ଆଖି ବୁଲେଇ ଦେଇ ମୋ' ମନ ଟିକିଏ ଖରାପ ହେଇଗଲା । ଆମ କ୍ଲାସ୍‌ର ବେଶ୍ କେତେଜଣ ପିଲା ଅଛନ୍ତି ବସ୍‌ରେ, କିନ୍ତୁ ମୋର ଭଲ ସାଙ୍ଗ ଜଣେ ବି କେହି ନାହାନ୍ତି । କାହିଁକି ବା ଥାଆନ୍ତେ, ସେମାନେ ସବୁ ଯେ ଆସନ୍ତି ନିଜ ନିଜ ଗାଡିରେ । ନିଜେ ନିଜେ ଗାଡି ଚଳେଇ ।

ସକାଳର ମାଦକତା ହଜି ହଜି ଯାଉଥିଲା ।

ଆମେରିକାର ଆଇନ୍ ଅନୁସାରେ ମୁଁ ଓ ମୋ' ସାଙ୍ଗମାନେ 'ବୟସ୍କ' ରୂପେ ଗଣା ହେଉ ନାହିଁ । ଭୋଟ୍ ଦେବାର ଅଧିକାର ଆମର ନାହିଁ, ପବ୍‌କୁ ଯିବାର ନିୟମ ନାହିଁ, କିନ୍ତୁ ଗାଡି ଚଲାଇବାର ଅନୁମତି ପାଇବା ପାଇଁ ଏ ଦେଶରେ ସତର ବର୍ଷ ଯଥେଷ୍ଟ । ଅବଶ୍ୟ ପ୍ରକୃତ ଲାଇସେନ୍‌ସ୍ ପାଇବା ପାଇଁ ମୋତେ ଆହୁରି ଚାରି ମାସ ଅପେକ୍ଷା କରିବାକୁ ପଡିବ । କିନ୍ତୁ ମୁଁ ଯେହେତୁ ଷୋହଳ ବର୍ଷ ବୟସରେ ଷ୍ଟୁଡେଣ୍ଟ୍ ଡ୍ରାଇଭର୍ ହିସାବରେ ଗାଡି ଚଲା ଶିଖିଥିଲି ଏବଂ ତା'ପରେ ଯେହେତୁ ବିନା ତତ୍ତ୍ୱାବଧାନରେ ଗୋଟିଏ ବର୍ଷ ଗାଡିଚଲାର ଅଭ୍ୟାସ କରିଥିଲି, ସେଥିପାଇଁ ଏବେ ମୋତେ ପ୍ରୋବେସନାରି ଲାଇସେନ୍‌ସ୍ ମିଳିଯାଇଛି । ଏକା ଏକା ଗାଡି ଚଲାଇ ପାରିବି, କିନ୍ତୁ କିଛିଟା ନିୟମ ମାନିବାକୁ ହେବ ।

ଏବେ ବି ମନେ ଅଛି, ଯେଉଁ ଦିନ ମୋତେ ପ୍ରୋବେସନାରି ଲାଇସେନ୍‌ସ୍ ମିଳିଗଲା, ସେଦିନ ମୁଁ ହାତରେ ସ୍ୱର୍ଗସୁଖ ପାଇ ଯାଇଥିଲି । ଦିନଟି ଯେମିତି ଥିଲା ମୋ ଜୀବନର ଗୋଟିଏ ବିଶେଷ ଦିନ । ମୋର ମନେ ହେଇଥିଲା ବିରାଟ ମାଇଲ୍‌ଖୁଣ୍ଟିଏ ମୁଁ ପାର ହେଇଯାଇଛି । ବୟସ୍କଙ୍କ ପୃଥିବୀରେ ମୁଁ ପ୍ରାୟ ପାଦ ରଖିବାର ଅନୁମତି ପାଇଯାଇଛି ।

ମୋର ଆଶା ଥିଲା, ଲାଇସେନ୍‌ସ୍ ପାଇବାର ପରଦିନ ହିଁ ବାପା ମୋତେ ନେଇ ଗାଡିଟିଏ କିଣେଇ ଦେବେ । ନୂଆ ହୁଏତ ନୁହଁ, ତେବେ ଭଲ ମଡେଲ୍‌ର ଗାଡି ନିଶ୍ଚୟ । ହେଲେ ସେମିତି କିଛି ହେଲା ନାହିଁ । ପାଖରେ ବସାଇ ବାପା ମୋତେ କହିଲେ ଯେ ଆହୁରି କିଛି ମାସ ଧରି ଗାଡି ଚଳାର ଅଭ୍ୟାସ ଜାରି

ରଖିବାକୁ ହେବ । ସେମାନଙ୍କ ଉପସ୍ଥିତିରେ । ଯେତେବେଳେ ସେମାନେ ଅନୁଭବ କରିବେ ଯେ ଏକା ଏକା ଗାଡି ଚଳାଇବା ଭଳି ଅଭିଜ୍ଞତା ମୋର ହୋଇଯାଇଛି, ସେତେବେଳେ ମୋ' ପାଇଁ ଗାଡି କିଣିବା କଥା ଉଠିବ । ଆଉ ତ ଚାରିମାସ କଥା– ଅଠର ହେଇଯାଉ । ହାତରେ ପ୍ରକୃତ ଲାଇସେନ୍‌ସ୍ ଆସିଯାଉ ।

ମାନୁଛି, ମୋ' ମନ ଭାଙ୍ଗିଯାଇଥିଲା । କିନ୍ତୁ ମୁଁ ଜିଦି କରି ନ ଥିଲି । କାରଣ ମୁଁ ଜାଣିଥିଲି ଯେ ମୋତେ ଦେଇଥିବା କଥା ବାପା ଠିକ୍ ରଖିବେ । ଅଠର ବର୍ଷ ହେଇଗଲେ ମୋ' ପାଇଁ ଗାଡିଟିଏ କିଣି ଦେବେ । ସେତିକି ଦିନ ଯାଏ ବାପା କିମ୍ବା ମା'ଙ୍କୁ ପାଖରେ ବସାଇ ମୋତେ ଗାଡି ଚଳାଇବାକୁ ହେବ ।

ମୁଁ ଚଳାଉଥିଲି ବି । ଆମେ ବଜାରକୁ ଯିବା ବେଳେ ବା ଆଣ୍ଟଙ୍କ ଘରକୁ ଯିବା ବେଳେ ମା' ମୋ' ପାଖରେ ବସି ମୋତେ ତାଙ୍କ ମାଜ୍‌ଦା ଗାଡି ଚଳେଇବାକୁ ଦେଉଥିଲେ । ଠିକ୍ ସେଇମିତି ବେସ୍ ବଲ୍ ମ୍ୟାଚ୍ ଦେଖିବାକୁ ଗଲାବେଳେ ବା ଗାଡିକୁ ସର୍ଭିସିଙ୍ଗ୍ ପାଇଁ ନେବା ବେଳେ ବାପା ମୋତେ ତାଙ୍କ ନୂଆ ଲେକ୍‌ସସ୍‌ର ଚାବି ଧରେଇ ଦେଇ ପାସେଞ୍ଜର୍ ସିଟ୍‌ରେ ବସି ରହୁଥିଲେ ।

ମୁଁ ଭଲ ଗାଡି ଚଳେଇ ପାରୁଥିଲି । କିନ୍ତୁ ସେଦିନ କ'ଣ ଯେ ହେଲା ! ଜେଜେମା'ଙ୍କ ଆପାର୍ଟ୍‌ମେଣ୍ଟରୁ ଫେରି ଆସି ଗ୍ୟାରେଜ୍‌ରେ ଗାଡି ପୂରାଇବା ବେଳେ ଷ୍ଟିଅରିଙ୍ଗ୍ ହୁଇଲ୍ ଉପରେ ମୋର ନିୟନ୍ତ୍ରଣ ରହିଲା ନାହିଁ । ଗାଡିଟା ଆଉ ଟିକକରେ ପିଟି ହୋଇଯିବ ଗ୍ୟାରେଜ୍ କବାଟରେ । ମୁଁ ବିକଳରେ ବ୍ରେକ୍ କରିବାକୁ ଯାଇ ଭୁଲ୍‌ରେ ଆକ୍‌ସିଲିରେଟର୍ ଉପରେ ପାଦ ଚାପି ଦେଲି ।

ଧକ୍କାଟା ବେଶ୍ ଜୋର୍ ହେଲା । ବାପା ଆଉ ମୁଁ ଦୁଇ ଜଣଯାକ ସିଟ୍ ବେଲ୍‌ଟ୍ ପିନ୍ଧିଥିଲୁ ବୋଲି ଆମର କିଛି ହେଲା ନାହିଁ । କିନ୍ତୁ ଗାଡିର ବନେଟ୍ ଭଲ କରି ଚେପା ହୋଇଯାଇଥିଲା ।

ମୁଁ ଭାବିଥିଲି ବାପା ଗାଳି ଦେବେ । ବିରକ୍ତ ହେବେ । ଯେତେ ଯାହା ହେଲେ ଦାମୀ ଲେକ୍‌ସସ୍ । ପୁଣି ନୂଆ । କିନ୍ତୁ ବାପା ଜମା ରାଗିଲେ ନାହିଁ । ଗମ୍ଭୀର ଭାବରେ ସେ କେବଳ କହିଲେ, 'ଏଇଥିପାଇଁ ମୁଁ ପ୍ରଥମରୁ ଗାଡି କିଣିନି ତୋ' ପାଇଁ । ଲାଇସେନ୍‌ସ୍ ପାଇଗଲେ ଯଥେଷ୍ଟ ନୁହଁ । ଗାଡି ଭଲରେ ଚଳେଇବା ପାଇଁ ଅଭିଜ୍ଞତା ଏକାଠି କରିବାକୁ ହୁଏ ।'

ମୁଁ ମୁଣ୍ଡ ତଳକୁ ପୋତି ସବୁ ଶୁଣିଥିଲି । ମୋର ଭୟ ହୋଇଥିଲା ଯେ ଆଉ ମୋତେ କେହି ଗାଡି ଛୁଇଁବାକୁ ଦେବେ ନାହିଁ । ହେଲେ ମୋତେ ଦେଇଥିବା କଥା ବାପା, ମା' ରଖିଥିଲେ । ଆଗ ଭଳି ଆଖପାଖକୁ ଗଲା ବେଳେ ମୋତେ ଗାଡି

ଚାବି ଧରେଇ ଦେଇ ମୋ' ପାଖ ସିଟ୍‌ରେ ବସି ଯାଉଥିଲେ ସେମାନେ । କିନ୍ତୁ ବେଳେବେଳେ ମୋ' ମନ ଭିତରେ ବିଦ୍ରୋହର ସ୍ୱରଟିଏ ଉଠୁଥିଲା । କାହିଁକି ଏତେ କଟକଣା ? ଥରଟିଏ ଭୂଲ୍ ହେଇଗଲା ବୋଲି କ'ଣ ମୁଁ ବାରମ୍ବାର ଭୁଲ୍ କରି ଚାଲିବି ? କାଇଁ, ମୋ ସାଙ୍ଗମାନଙ୍କ ବାପା ମା' ମାନେ ତ ସେମିତି କରନ୍ତି ନାହିଁ । ନିଜ ପିଲାଙ୍କ ବ୍ୟାପାରରେ ସେମାନେ ତ ବେଶ୍ କୋହଳ । ମୋ' ପାଇଁ ଏତେ ନିୟମର ବେଡ଼ି କାହିଁକି ?

ସେଦିନ ସ୍କୁଲ୍‌ରୁ ବସ୍‌ରେ ଫେରିବା ବେଳେ ଅସନ୍ତୋଷର ଧ୍ୱନି ପୁଣି ଖେଳି ବୁଲିଥିଲା ମୋ' ଭିତରେ । ଗମ୍ଭୀର ଭାବରେ ଘରର ତାଲା ଖୋଲି ଭିତରେ ପଶିବା ବେଳେ ଲେଟର ବକ୍‌ସ୍‌ରୁ ଉଙ୍କି ମାରୁଥିବା ଚିଠି ଥାକଟା କାଢ଼ି ନେଲି । ଯଦିଓ ମୋ' ପାଇଁ କଦାପି କ୍ୱଚିତ୍ ଚିଠି ଆସେ, ତଥାପି ଏଇଟା ମୋ ଦାୟିତ୍ୱ । ମୁଁ ଆଗ ଘରକୁ ଫେରେ ସେଇଥିପାଇଁ । ଥାକଟା କବାଟ ପାଖ ଟେବୁଲରେ ରଖି ଦେଇ ଚାଲି ଯିବା ବେଳେ ପାଦ ଅଟକିଗଲା ମୋର । ଚିଠି ଥାକର ପ୍ରଥମ ଚିଠି ଉପରେ ଯେ ମୋ' ନାଁ ! କିଛିଟା ଆଶ୍ଚର୍ଯ୍ୟ ଭାବରେ, ପୁଣି କିଛି କୌତୂହଳ ନେଇ ଲଫାପାଟା ଖୋଲିଲି । ଧଳା ଲଫାପା । ଅଥଚ ଭିତରେ ଥିବା ଚିଠି ଉପରେ ପ୍ରିନ୍‌ସ୍‌ଟନ୍ ୟୁନିଭର୍ସିଟିର ମୋହର ।

ପ୍ରିନ୍‌ସ୍‌ଟନ୍ ! ମୋ' ଛାତି ଭିତରଟା ଧଡ୍ କରି ହେଇଗଲା । ଏଇ ତ କିଛି ସପ୍ତାହ ତଳେ ଆପ୍ଲିକେସନ୍ ପଠେଇଥିଲି । ଏତେ ଶୀଘ୍ର ପ୍ରତ୍ୟାଖାନ ଖବରଟା ଆସିଗଲା !

ହେଲେ... ଏ କ'ଣ ଲେଖା ହୋଇଛି ! ମାତ୍ର କେଇ ଧାଡ଼ିରେ ପ୍ରିନ୍‌ସ୍‌ଟନ୍ ଆଡ୍‌ମିସନ୍ ଅଫିସ୍‌ର ଜଣେ କର୍ମକର୍ତ୍ତା ଆନନ୍ଦର ସହିତ ଜଣେଇଛନ୍ତି ଯେ ପ୍ରିନ୍‌ସ୍‌ଟନ୍ ବିଶ୍ୱବିଦ୍ୟାଳୟ ମୋତେ ଆଡ୍‌ମିସନ୍ ଦେବା ପାଇଁ ପ୍ରସ୍ତୁତ । ଖୁବ୍ ଶୀଘ୍ର ଆନୁଷ୍ଠାନିକ ଭାବରେ ଖବରଟି ମୋ' ପାଖରେ ପହଞ୍ଚିଯିବ ।

ମୁଁ ଚୁପ୍ ହୋଇ ସେଇଠି ପଡ଼ିଥିବା ଚୌକିରେ ବସିଗଲି କିଛି ସମୟ ପାଇଁ । ପ୍ରିନ୍‌ସ୍‌ଟନ୍ ! ତଥାପି ବିଶ୍ୱାସ ହେଉ ନ ଥିଲା ମୋର । ପ୍ରିନ୍‌ସ୍‌ଟନ୍ ଭଳି ବିଶ୍ୱବିଦ୍ୟାଳୟ ମୋତେ ଆଡ୍‌ମିସନ୍ ଦେବାକୁ ରାଜି ହୋଇଗଲା ! କେମିତି ?

ସକାଳର ମାଦକତା ଫେରିଆସିଲା । ସୁନ୍ଦର ଦିନଟି ଯେମିତି ଆଉ ଟିକିଏ ସୁନ୍ଦର ହୋଇଗଲା । ମୁଁ ଅପେକ୍ଷାକରି ରହିଲି ବାପା ମା' ଘରକୁ ଫେରିବା ପାଇଁ ।

ମୋତେ ନେଇ ବେଳେବେଳେ ମନ ଖରାପ କରିଛନ୍ତି ସେମାନେ, କିନ୍ତୁ ମୁଁ ଜାଣେ ସେମାନଙ୍କର କୌଣସି ଦିନ ଦୁଶ୍ଚିନ୍ତା ହୋଇ ନାହିଁ, ଭୟ ବି ହୋଇ ନାହିଁ ।

ସେମାନେ ଯେମିତି ଜାଣିଥିଲେ ଯେ ସେମାନଙ୍କର ସାମାଜିକ ସ୍ଥିତି ଦୋହଲାଇ ଦେବା ଭଳି ବା ସେମାନଙ୍କୁ ଭୀଷଣ ମାନସିକ ଯନ୍ତ୍ରଣା ଦେବା ଭଳି କୌଣସି କାମ ମୁଁ କେବେହେଲେ କରିବି ନାହିଁ ।

ମୋ ମା', ବାପାଙ୍କ ସମୁଦାୟ ଆୟର ପରିମାଣ ମୁଁ ଜାଣେ ନାହିଁ । ତେବେ ଆମେ ଯେଉଁଭଳି ଘରେ ରହୁ, ଯେଉଁ ଭଳି ଗାଡି ଆମର କିଣା ହୁଏ, ଯେମିତି ଭାବରେ କ୍ରିସ୍‌ମାସ୍ ପାଳନ ହୁଏ, ଆଉ ଦୈନନ୍ଦିନ ଚଳଣି ଆମର ଯେଉଁ ଭଳି – ସେସବୁ ଦେଖିଲେ ଜଣେ ହୁଏତ ଆମକୁ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀବଦ୍ଧ କରିବ । ଯଦି ତିନି ତିନିଟା କଲେଜ ଖର୍ଚ୍ଚ ଦେଉ ନ ଥାଆନ୍ତେ, ତେବେ ମୋ' ମା', ବାପା ଯେ ଉଚ୍ଚ ମଧ୍ୟବିତ୍ତର ପାହାଚ୍‌ରୁ ଉପରକୁ ଉଠି ଧନୀ ପର୍ଯ୍ୟାୟରେ ପହଞ୍ଚି ଯାଇ ସାରନ୍ତେଣି, ସେଥିରେ ମୋର ତିଳେ ହେଲେ ସନ୍ଦେହ ନାହିଁ ।

ମୋ' ଉପରର ତିନି ଭାଇ ଭଲ ଭଲ ପ୍ରାଇଭେଟ୍ କଲେଜରେ ପଢନ୍ତି । ଭଲ ପ୍ରାଇଭେଟ୍ କଲେଜ ମାନେ ଜଣକା ବର୍ଷକୁ ଚାଳିଶ, ବୟାଳିଶ ହଜାର ଡଲାରର ବଜେଟ୍ । ବଡ ଭାଇଙ୍କ ଏମ୍.ବି.ଏ. ଖର୍ଚ୍ଚ ତ ଆହୁରି ବେଶୀ । ସେମାନେ ସମସ୍ତେ ଅବଶ୍ୟ ନିଜ ନିଜ କଲେଜରୁ କିଛିଟା ଆର୍ଥିକ ସାହାଯ୍ୟ ପାଆନ୍ତି । କ୍ୟାମ୍ପସ୍‌ରେ କାମ କରି ନିଜ ହାତଖର୍ଚ୍ଚଟା ଚଳେଇ ନିଅନ୍ତି । ତଥାପି ବେଶୀ ପରିମାଣ ବାପା, ମା'ଙ୍କ ବ୍ୟାଙ୍କରୁ ଯାଏ ।

ମୁଁ ଘରର ସାନ ପୁଅ । ସମସ୍ତଙ୍କର ସ୍ନେହ ଅଧିକ ମୋ' ପ୍ରତି – ମୁଁ ଅନୁଭବ କରିପାରେ । କିନ୍ତୁ ସେଥିପାଇଁ କେହି ମୋତେ ଅଯଥା ମୁହଁବଡା କରେଇ ନାହାନ୍ତି । ବେଳେବେଳେ ଅବଶ୍ୟ ମୁଁ ଉଚିତ୍ ଅନୁଚିତର ଅଲେଖା ଗାର ଟପିବା ପାଇଁ କୌତୁହଳୀ ହୋଇଛି, ପାଦେ ଦୁଇ ପାଦ ଆଗେଇ ଯାଇଛି । କିନ୍ତୁ ବାପାଙ୍କର ଗମ୍ଭୀର ମୁହଁର ଲମ୍ବା ଭାଷଣ, ମା'ଙ୍କର ଛଳଛଳ ଆଖି ମୋତେ ଆଗେଇ ଯିବାକୁ ଦେଇ ନାହିଁ ।

ଆଃ, କେତେବେଳେ ଆସିବେ ବାପା, ମା' ? ମୋତେ ପ୍ରଥମ ଥର ପାଇଁ ନିସ୍ତବ୍ଧ ଘର ଭଲ ଲାଗୁ ନ ଥିଲା ।

ଚିପ୍‌ସ୍‌ର ବଡ ପ୍ୟାକେଟ୍‌ଟିଏ ଆଲମାରିରୁ କାଢି ନେଇ ମୁଁ ଟେଲିଭିଜନ୍ ଖୋଲିଲି । ଆଖି କିନ୍ତୁ ଚାଲି ଯାଉଥାଏ କାନ୍ଥ ଘଡି ଉପରକୁ । ବାପା, ମା' ଫେରିବାକୁ ଆହୁରି ଘଣ୍ଟାଏ, ଦେଢ ଘଣ୍ଟା ଡେରି ଅଛି । ଫେରିବା ପରେ ପ୍ରିନ୍‌ସ୍‌ଟନ୍‌ର ଖବର ପାଇ କି ଖୁସୀ ନ ହେବେ ସେମାନେ ! ରାତିରେ ନିଶ୍ଚୟ ବାହାରକୁ ଖାଇବାକୁ ନେଇଯିବେ ।

ଠିକ୍ ସେଇମିତି ହେଲା । ଖବରଟା ଶୁଣି ମା' ମୋତେ ଧରି ଘେରାଏ ନାଚିଗଲେ । ବାପା କ'ଣ କରିବେ ବୁଝି ନ ପାରି ମୋତେ ଦୁଇ ହାତରେ ଜାବୁଡି ଧରିଲେ । ପର ମୁହୂର୍ତ୍ତରେ ଜେଜେମା', ଜେଜେବାପା ଓ ଆଈଙ୍କ ପାଖକୁ ଖବରଟା ପଠେଇ ଦିଆଗଲା । ତିନି ଭାଇଙ୍କ ପାଖକୁ ଫୋନ୍ ହେଇଗଲା ।

'ଉଇ ହ୍ୟାଭ୍ ଟୁ ସେଲିବ୍ରେଟ୍ ! ଆଜି ବାହାରକୁ ଯିବା ଖାଇବାକୁ ।'

'ସିଓର୍ । କୋଉ ରେଷ୍ଟୋରାଁକୁ ଯିବା, କ୍ରିସ୍ ? ଇଟାଲିଆନ୍ ?'

ମୁଁ ହସି ଦେଇ ମୁଣ୍ଡ ଟୁଙ୍ଗାରି ଥିଲି ।

ମୋର ପ୍ରିୟ 'ଅଲିଭ୍ସ୍ ଆଣ୍ଡ୍ ଚିକ୍' ରେଷ୍ଟୋରାଁର ନୀଳ ସୋଫାରେ ବସି କଣ୍ଟାଚାମଚରେ ଗୁଡେଇ ଗୁଡେଇ ଚିକେନ୍ ପାସ୍ତା ଖାଇବା ବେଳେ ମୋ' ମନରେ ପ୍ରଥମ ଉଠିଲା କଥାଟି । କିନ୍ତୁ ପଚାରିବା କ'ଣ ସମୀଚୀନ ହେବ ? ଆଜି ବୋଧହୁଏ ମୋତେ କେହି କିଛି ମନା କରିବେ ନାହିଁ, ତଥାପି ... । ନା, ଆପାତତଃ କଥାଟି ଥାଉ ।

ମୁଁ ଏଥର ଅନ୍ୟ ପ୍ରଶ୍ନଟିଏ କଲି । ପଚାରିଲି, 'ମୋ' ସାଙ୍ଗମାନଙ୍କୁ ଆର ସପ୍ତାହରେ ପାର୍ଟିଟିଏ ଦେଇପାରିବି ? ଏଇ ରେଷ୍ଟୋରାଁରେ ?'

'ସିଓର୍ ।' ମା' କହିଲେ ।

'ଅଫ୍ କୋର୍ସ୍ ।' ଯୋଡିଲେ ବାପା ।

ମୁଁ ଜାଣିଥିଲି ଏ ପ୍ରଶ୍ନର ଏଇଭଳି ଉତ୍ତର ପାଇବି ବୋଲି । ଏଥର ମୋର ସାହସ ବଢିଗଲା । ଯେଉଁ ପ୍ରଥମ କଥାଟି ମୋ ମନକୁ ଆସିଥିଲା ଏବଂ ଯେଉଁଟା ଏବେ ବି ମୋ' ମନ ଭିତରେ ଖେଳି ବୁଲୁଥିଲା, ଏଥର ସେଇ ପ୍ରଶ୍ନଟି ମୁଁ ମା, ବାପାଙ୍କ ସାମ୍ନାରେ ରଖି ଦେଲି ।

ମୁଁ ପଚାରିଲି, 'କାଲି ମୁଁ ଗାଡି ନେଇ ସ୍କୁଲ ଯାଇପାରେ କି ?'

ମୋ ମୁହଁରୁ ଏ ପ୍ରଶ୍ନ ଶୁଣିବେ ବୋଲି ବୋଧହୁଏ ବାପା କି ମା' ଆଶା କରି ନ ଥିଲେ । ମା' ଚାହିଁଲେ ବାପାଙ୍କ ମୁହଁକୁ । ମୁଁ ଜାଣେ, ତାଙ୍କ ଆଖି ଅବ୍ୟକ୍ତ ଭାବରେ କହୁଥିଲା, 'ସମ୍ମତି ଦେଇ ଦିଅ, ପ୍ଲିଜ୍ ।' ବାପା ମୁହୂର୍ତ୍ତଟିଏ ଭାବି ହେଲେ । ତା'ପରେ ରହି ରହି କହିଲେ, 'ମୋ' ଗାଡି କାଲି ସର୍ଭିସିଙ୍ଗ୍ ପାଇଁ ଯିବ ।'

'ମୋ' ଗାଡି ସେ ନେଇପାରିବ ।' ମା'ଙ୍କ ପାଟିରୁ ବାହାରି ଗଲା । 'ତୁମେ ଗାଡି ସର୍ଭିସିଙ୍ଗ୍‌କୁ ଦେବାକୁ ଗଲା ବେଳେ ମୋତେ ଅଫିସ୍‌ରେ ଛାଡି ଦେଇପାରିବ । ପୁଣି ସନ୍ଧ୍ୟା ବେଳେ ନେଇଆସିବ ।'

'ହଉ ।' ବାପା ଧୀରେ ଧୀରେ ମନ ସ୍ଥିର କରୁଥିଲେ । 'ଓକେ, କ୍ରିସ୍, ତୁ ତା'ହେଲେ କାଲି ମା'ଙ୍କ ଗାଡି ସାବଧାନରେ ଚଲେଇ କରି ଯିବୁ । ଘରୁ ସ୍କୁଲ୍‌କୁ । ସ୍କୁଲ୍‌ରୁ ସିଧା ଘରକୁ । ମନେ ରହେ ଯେମିତି ।'

'ନିଶ୍ଚୟ ।' ମୋ ମନ ଆକାଶରେ ଉଡିବାକୁ ଲାଗିଲା ।

ପର ଦିନ ସକାଳୁ ନିଦରୁ ଉଠି ମୁଁ ଝର୍କାର ପର୍ଦ୍ଦା ଟେକି ବାହାର ପୃଥିବୀ ଉପରେ ଆଖି ବୁଲେଇ ଆଣିଲି । ଗଭୀର ରାତିରେ ଅଳ୍ପ ବର୍ଷା ହୋଇଥିଲା ବୋଧହୁଏ । ରାସ୍ତାଘାଟ, ଗଛବୃକ୍ଷ ସାମାନ୍ୟ ଭିଜା ଭିଜା । କିନ୍ତୁ ସକାଳର ପରିଷ୍କାର ଆକାଶ ଜଣେଇ ଦେଉଛି ଯେ ଆଜିର ଦିନଟି ହେବ ସୁନ୍ଦର । ଠିକ୍ ଗତକାଲିର ସୁନେଲୀ ଦିନ ଭଳି ।

ମୁଁ ଗୁଣୁଗୁଣୁ ଗୀତ ଗାଇ ସ୍କୁଲ୍ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲି । ମା'ଙ୍କର ଧଳା ମାଜ୍‌ଦା ନେଇ ସାତଟା ବେଳେ ସ୍କୁଲ୍ ଗଲାବେଳେ ମୋତେ ଲାଗୁଥିଲା ସମସ୍ତେ ଯେମିତି କେବଳ ମୋତେ ଦେଖୁଛନ୍ତି । ମୋ' କୃତିତ୍ୱରେ ମୁଗ୍ଧ ହେଉଛନ୍ତି । ମୋ'ରି ପାଇଁ ଯେମିତି ଆଜି ଦିନଟିରେ ପୁଣି ଥରେ ବସନ୍ତର ଛୁଆଁ ଲାଗିଛି ।

ଆଜି ଶୁକ୍ରବାର । ଶୁକ୍ରବାର ଦିନ ମୋର କ୍ଲାସ୍ ଶେଷ ହୁଏ ଠିକ୍ ଦିନ ତିନିଟାରେ । ତା'ପରେ ପରେ ହିଁ ସ୍କୁଲ୍ ବସ୍‌ରେ ଉଠିବାକୁ ହୁଏ । ଅନ୍ୟ ଦିନ ଭଳି ବାସ୍କେଟ୍ ବଲ୍ ପ୍ରାକ୍ଟିସ୍ କରି ହୁଏ ନାହିଁ । କାରଣ ଶୁକ୍ରବାର ଲେଟ୍ ବସ୍ ନାହିଁ । ତେବେ ଆଜି ତ ମୋ ପାଖରେ ମା'ଙ୍କର ଗାଡି । ମୋତେ ହଳଦିଆ ରଙ୍ଗର ସ୍କୁଲ୍ ବସ୍‌ରେ କିଚିରିମଚିରି ହେଉଥିବା ଆଉ ତିରିଶଟା ପିଲାଙ୍କ ସାଙ୍ଗରେ ଏକାଠି ଯିବାକୁ ହେବ ନାହିଁ ।

ଶେଷ କ୍ଲାସ୍ ସାରି ବାହାରୁ ବାହାରୁ ମୁଁ ଆଞ୍ଜେଲାକୁ କହିଲି, 'ଆଞ୍ଜେଲା, ଆଜି ବସ୍‌ରେ ଯାଅ ନାହିଁ । ମୁଁ ତୁମକୁ ଘରେ ଛାଡି ଦେବି ।'

ଆଞ୍ଜେଲା ବର୍କ୍ ମୋ ଗାର୍ଲ୍ ଫ୍ରେଣ୍ଡ୍ । ଏଲିମେଣ୍ଟାରି ସ୍କୁଲ୍‌ରୁ ଆଜି ଯାଏଁ ଆମେ ଏକାଠି ପଢି ଆସିଛୁ । ଏମିତିରେ ଆମର ସବୁ ଦିନ ବନ୍ଧୁତ୍ୱ ଥିଲା । କିନ୍ତୁ ବିଶେଷ ବନ୍ଧୁତ୍ୱ ହେଲା ସାତ ମାସ ତଳେ । ମୁଁ ଜାଣେ ଆମ ଦୁଇ ଜଣଙ୍କର ବନ୍ଧୁତ୍ୱକୁ ଦୁଇ ପରିବାରର ଲୋକମାନେ ପସନ୍ଦ କରନ୍ତି । ଭବିଷ୍ୟତ କଥା ଜାଣେ ନାହିଁ । ତେବେ ବର୍ତ୍ତମାନ ଆଞ୍ଜେଲା ବ୍ୟତୀତ ଜୀବନ କଥା ମୁଁ ଭାବି ପାରେ ନାହିଁ । ତା' ସାଙ୍ଗରେ ଦିନେ ଦେଖା ନ ହେଲେ କିଛି ଭଲ ଲାଗେ ନାହିଁ । ଆଜି ଆଞ୍ଜେଲାକୁ ତା' ଘରେ ଛାଡିବା କଥା କହିବା ବେଳେ ମୋ' ଛାତି ଫୁଲି ଉଠିଥିଲା ।

'ତୁମେ ଗାଡି ନେଇ ଆସିଛ ?' ଆଞ୍ଜେଲାର ଆଖି ଚକଚକ କରି ଉଠିଲା ।

'ହଁ । ମା'ଙ୍କ ମାଜ୍‌ଦା ।' ମୁଁ ପକେଟ୍‌ରୁ ଚାବିଟା କାଢି ଝଣଝଣ କରି ପକେଇଲି ।

'ହାଓ ୱଣ୍ଡରଫୁଲ୍ ! ହେଲେ ...' ଆଞ୍ଜେଲା ମୁହଁ ଶୁଖେଇ ନେଇ କହିଲା, 'ମୁଁ ଜ୍ୟାନେଟ୍‌କୁ କଥା ଦେଇ ଦେଇଛି ଯେ ସ୍କୁଲ୍ ପରେ ତା' ସାଙ୍ଗରେ ଷ୍ଟାର୍‌ବକ୍‌ସ୍ ଯିବି ବୋଲି । କଫି ପାଇଁ ।'

ଆଞ୍ଜେଲାର ବେଷ୍ଟ ଫ୍ରେଣ୍ଡ ଜ୍ୟାନେଟ୍ । ଗତ ଜୁନ୍ ମାସରେ ଲାଇସେନ୍‌ସ୍ ପାଇବା ପରେ ତାକୁ ତା' ଘରୁ ପୁରୁଣା ଗାଡିଟିଏ ମିଳି ଯାଇଛି । ଅଧିକାଂଶ ଶୁକ୍ରବାର ଦିନ ସ୍କୁଲ୍‌ରୁ ଘରକୁ ଯିବା ବାଟରେ ଜ୍ୟାନେଟ୍ ଓ ଆଞ୍ଜେଲା କଫି ପାଇଁ ବା ଆଇସ୍‌କ୍ରିମ୍ ପାଇଁ ପାଖ ମଲ୍‌କୁ ଚାଲିଯାଆନ୍ତି । ମୋତେ ଆଞ୍ଜେଲା ଆଗରୁ ଏକଥା କହିଛି ।

ମୁଁ ଟିକିଏ ଭାବି ହେଲି । ତା'ପରେ ଉଦାର ଭାବରେ କହିଲି, 'ଚାଲ, ଜ୍ୟାନେଟ୍‌କୁ ବି ନେଇ ଯିବା । ତା' ଗାଡି ଏଇଠି ଥାଉ । ଫେରିବା ବେଳେ ପୁଣି ମୁଁ ତାକୁ ଏଇଠି ଛାଡି ଦେବି । ରୁହ, ପିଟରେ୍‌କୁ ବି ମୁଁ ପଚାରେ ସେ ଯାଇ ପାରିବ କି ନାହିଁ । ଆଜି ମୁଁ ତୁମ ସମସ୍ତଙ୍କୁ ଆଇସ୍‌କ୍ରିମ୍ ଖୁଆଇବି ।'

'ରିଏଲି ?'

*

ଆଜି ମୋ' ମନ ସତରେ ଆକାଶରେ ଉଡୁଛି । ବାଁ ହାତରେ ଷ୍ଟିଅରିଙ୍ଗ୍ ହୁଇଲ୍ । ଡାହାଣ ହାତ ଆଞ୍ଜେଲାର କାନ୍ଧରେ । ପଛ ସିଟ୍‌ରେ ବସିଛନ୍ତି ମୋ' ବେଷ୍ଟ ଫ୍ରେଣ୍ଡ ପିଟର୍ ଆଉ ଆଞ୍ଜେଲାର ବେଷ୍ଟ ଫ୍ରେଣ୍ଡ ଜ୍ୟାନେଟ୍ । ମୋର ମନେ ହେଉଛି ଯେମିତି ମା'ଙ୍କର ନୂଆ ମଡେଲ୍‌ର ଅଟୋମେଟିକ୍ ମାଜ୍‌ଦା କଂକ୍ରିଟ୍‌ର ରାସ୍ତା ଉପରେ ଚାଲୁ ନାହିଁ, ଧଳା ମେଘ ଉପରେ ଭାସି ଚାଲିଛି ।

'ହେ କ୍ରିସ୍, ଯାଉଛୁ କୁଆଡେ ?' ପଛରୁ ପିଟର୍ କହି ଉଠିଲା ।

'ମଲ୍‌କୁ ।'

'ମଲ୍‌ର ରାସ୍ତା ତ ପଛ ପଟେ ରହିଗଲା । ତୁ ଏ ବାଁ ପଟେ କୁଆଡେ ଗାଡି ବୁଲାଇଲୁଣି ?'

ମୁଁ ରିଅର୍ ଭ୍ୟୁ ମିରର୍ ଦେଇ ପିଟରେ୍ ମୁହଁକୁ ଚାହିଁ ହସି ଦେଲି । କହିଲି, 'ନ୍ୟୁ ଜର୍ସିରେ କ'ଣ ଖାଲି ଏଇ ଗୋଟିଏ ମଲ୍ ? ଚାଲ, ଆଜି ମୁଁ ତୁମମାନଙ୍କୁ ଶର୍ଟ୍ ହିଲ୍‌ସ୍ ମଲ୍‌ରେ ଆଇସ୍‌କ୍ରିମ୍ ଖୁଆଇବି ।'

'ଅସମ୍, ମ୍ୟାନ୍ !'

'କୁଲ୍ ।'

ଗାଡିକୁ ୨୮୭ ନମ୍ବର ହାଇୱେ ଉପର ଦେଇ ନେବା ବେଳେ ମୋ' ମନ ଭିତରକୁ ଥରେ ପଶି ଆସିଥିଲା ବାପାଙ୍କର ଚେତାବନୀ ।

'ଘରୁ ସ୍କୁଲକୁ ଯିବୁ । ସ୍କୁଲରୁ ଘରକୁ ଆସିବୁ ।'

କିନ୍ତୁ ମୁଁ ମନରୁ ଆଡେଇ ଦେଇଥିଲି କଥାଟା । ସାମାନ୍ୟ ଅବାଧ ହେଉଛି ସତ, ହେଲେ ଆଜି ଭଳି ଦିନରେ ବାପା କ୍ଷମା ରାଗିବେ ନାହିଁ ମୋ' ଉପରେ । ଏମିତିରେ ତ ଅନ୍ୟଦିନମାନଙ୍କରେ ମୁଁ ଲେଟ୍ ବସ୍‌ରେ ଫେରିବା ବେଳେ ପାଞ୍ଚଟା ବାଜି ଯାଏ । ଆଜି ସେଇ ପାଞ୍ଚଟା ଭିତରେ ଫେରିଲେ ହେଲା ।

ମୁଁ ହାତ ଘଣ୍ଟା ଉପରେ ଥରେ ଆଖି ବୁଲେଇ ନେଇ ଗାଡିର ସ୍ପିଡ୍ ବଢ଼େଇ ଦେଲି । ଖୋଲା ଝର୍କା ଦେଇ ଥଣ୍ଡା ପବନ ପଶି ଆସୁଛି । ଚିନ୍ତା ନାହିଁ, ସମସ୍ତଙ୍କ ଦେହରେ ଉଷ୍ମ ଜ୍ୟାକେଟ୍ । ଦେହକୁ ଆଉ ଟିକିଏ ଉଷ୍ମ କରି ଦେଉଛି ଜେନିଫର୍ ଲୋପେଜ୍‌ଙ୍କର ନୂଆ ସି.ଡି. । ଯାହା କୁହ, ମା'ଙ୍କ ଗାଡିର ମ୍ୟୁଜିକ୍ ସିଷ୍ଟମ୍ ଫାଣ୍ଟାଷ୍ଟିକ୍ ।

ପାଖ ସିଟ୍‌ରୁ ଆଞ୍ଜେଲା ମୋ' ଆଡ଼କୁ ବଢେଇ ଦେଲା ଖୋଲା ଚିପ୍‌ସ୍‌ର ପ୍ୟାକେଟ୍‌ଟିଏ । ସେଥିରୁ ଗୋଟାଏ ନେଇ ପାଟିରେ ପକେଇଲି ମୁଁ । ହଠାତ୍ ପଛ ପଟୁ କ୍ୟାନ୍‌ଟିଏ ବଢେଇ ଦେଲା ପିଟର୍ । ସେଥିରୁ ଢୋକେ ନେଇ ମୁଁ ମନେ ମନେ ଚମକି ପଡିଲି– କୋକାକୋଲା ନୁହଁ, ବିଅର୍ ।

ମୁଁ ଜାଣେ, ବିଅର୍ ବା ସେଇଭଳି କିଛି ପାନୀୟ ଗଳାଃଧକରଣ କରିବା ବୟସ ଆମର ହୋଇ ନାହିଁ । ଆଇନ୍‌ତଃ ଆଲ୍‌କୋହଲ୍ ପିଇବା ପାଇଁ, କିଣିବା ପାଇଁ, ଏ ଦେଶରେ ବୟସ ହେବା ଦରକାର ଏକୋଇଶ । କିନ୍ତୁ କିଏ ବା ମାନେ ସେ ମାନ୍‌ଧାତା ଅମଳର ନିୟମ ? ସ୍କୁଲ୍ ଛୁଟି ପରେ ପାର୍କିଙ୍ଗ୍ ଲଟ୍‌ରେ ବିଅର୍ କ୍ୟାନ୍ ଘୁରି ବୁଲେ । ଆମ ସାଙ୍ଗମାନଙ୍କ ପାର୍ଟିରେ ବିଅର୍‌ର ଅଭାବ ହୁଏ ନାହିଁ ।

ମୁଁ ଆଗରୁ ଥରେ ଅଧେ ବିଅର୍ ପିଇଛି । ସ୍ୱାଦ ଠିକ୍ ଭଲ ଲାଗିନି, କିନ୍ତୁ ସେକଥା ତ କାହାକୁ କହି ହୁଏ ନାହିଁ । ଆଜି ମଧ ଚୁପ୍ ରହିଲି । ପାଖରେ ଗାର୍ଲ୍‌ଫ୍ରେଣ୍ଡ୍‌କୁ ବସେଇ ୧୧୦ କିଲୋମିଟର୍ ସ୍ପିଡ୍‌ରେ ଗାଡି ଚଳାଉଥିବା କ୍ରିଷ୍ଟୋଫର୍ ଯଦି କହେ ସେ ବିଅର୍ ପିଇବନି, ତେବେ ସେଇଟା କ'ଣ ଭଲ ଶୁଣାଯିବ ?

ମୁଁ ଆଉ ଦୁଇ ଢୋକ ପିଇ ଦେଇ ଆକ୍‌ସିଲିରେଟର୍ ଉପରେ ପାଦ ଚାପି ଦେଲି । ଗାଡି ଉଡି ଚାଲିଥିଲା ପବନ ବେଗରେ । ଆଞ୍ଜେଲାର ସୁନେଲୀ ବାଳ

ପବନରେ ଉଡି ଆସି ମୋ' ମୁହଁରେ ପିଟି ହୋଇ ଯାଉଥିଲା ।

ହଠାତ୍ ଜ୍ୟାନେଟ୍ ପଛ ପଟୁ ପାଟି କରି ଉଠିଲା, 'ଗୋ ସ୍ଲୋ, ମ୍ୟାନ୍ । ପୋଲିସ୍ ଧରିବ ।'

'ଡୋଣ୍ଟ୍ ୱରି ।' ମୁଁ ସବ୍‌ଜାନ୍‌ତା ହସଟିଏ ହସି କହିଲି, 'ମୁଁ ଆଖି ରଖିଛି । ଦୂରରେ କୋଉଠି ପୋଲିସ୍ ଗାଡି ଦେଖିଲେ ସ୍ପିଡ୍ କମେଇ ନେବି ।'

ଗାଡି ଆଗେଇ ଚାଲିଥିଲା । ଆଉ ଗୋଟାଏ ଏକ୍‌ଜିଟ୍ ପରେ ମଲ୍‌କୁ ଯିବାର ଏକ୍‌ଜିଟ୍ । ଏଇ ତ, ଆସିଗଲା । ଏଥର ସ୍ପିଡ୍ କମେଇ ହାଇୱେରୁ ବାହାରି ଯିବାକୁ ହେବ । ମୁଁ ବ୍ରେକ୍ ଉପରେ ପାଦ ଦେଲି । ହେଲେ ... ହେଲେ ... ଏଇ ଗୋଟାଏ ମୁହୂର୍ତ୍ତରେ ଏ କ'ଣ ହେଇଗଲା ! ମୁଁ ବ୍ରେକ୍‌ରେ ନୁହଁ, ଆକ୍‌ସିଲିରେଟର୍ ଉପରେ ଯେ ପାଦ ଚାପି ଦେଇଛି ! ସ୍ପିଡ୍ କମିବା ବଦଳରେ ହଠାତ୍ ବଢିଗଲା ଯେ !!

ଓଲଟି ଯାଇ ରାସ୍ତା କଡକୁ ଗାଡି ଗଡି ଗଲାବେଳେ ମୁଁ କେବଳ ଥରଟିଏ ଶୁଣିଥିଲି ଆଞ୍ଜେଲା, ଜ୍ୟାନେଟ୍ ଓ ପିଟର୍‌ଙ୍କ ସମ୍ମିଳିତ ଚିତ୍କାର ।

ତା'ପରେ ସବୁ ଅନ୍ଧାର ।

ଆଖି ଖୋଲିଲି ମୁଁ ।

ଆଶ୍ଚର୍ଯ୍ୟ, ମୁଁ ଆଖି ଖୋଲିଛି ଏବଂ ମୋ ନିଜକୁ ମୁଁ ନିଜେ ଦେଖି ପାରୁଛି !

ଏଇ ତ, ଖଟ ଉପରେ ଶୋଇ ରହିଛି ମୁଁ । ଏ ମୋ ନିଜ ଖଟ ନୁହଁ । ଧଳା ଖଟ, ଧଳା ବିଛଣା ଚଦର, ପାଖରେ ଘୂରି ବୁଲୁଛନ୍ତି ଧଳା କୋଟ୍ ପିନ୍ଧିଥିବା ମଣିଷମାନେ ।

ଓହୋ, ମୁଁ ହସ୍‌ପିଟାଲ୍‌ରେ ତାହେଲେ !

ରୁମ୍‌ର ଗୋଟାଏ କଣରେ ପଡିଥିବା ସୋଫାରେ ବସିଛନ୍ତି ମା' । ଦୁଇ ହାତରେ ମୁହଁ ଚାପି ଧରିଛନ୍ତି । ଆଉ ଆଙ୍ଗୁଠି ଭିତର ଦେଇ ବୋହି ଚାଲିଛି ଲୁହ ଧାର । ତାଙ୍କ ପାଖରେ ବସିଛନ୍ତି ବାପା । ଦୁଇ ଓଠ ଚାପି ହେଇ ଯାଇଛି । ତାଙ୍କ ଆଖିରୁ ବି ଲୁହ ବୋହୁଛି ! ମା'ଙ୍କ ଭଳି କୋହରେ ତାଙ୍କର ବି ଦେହ ଥରି ଯାଉଛି ।

'ସରି ମମ୍ । ସରି ଡାଡ୍ ।'– ମୁଁ ଦୁଃଖିତ ସ୍ୱରରେ କହିଲି ।

କୌଣସି ପ୍ରତିକ୍ରିୟା ନାହିଁ । ମୋ କଥା ବୋଧହୁଏ ସେମାନଙ୍କ ପାଖରେ

ପହଞ୍ଚି ପାରିଲା ନାହିଁ ।

ରୁମ୍‌ର କବାଟ ଖୋଲିଗଲା । ଭିତରକୁ ପଶି ଆସିଲେ ଜେଜେ ମା', ଜେଜେ ବାପା, କକେଇ, ଖୁଡୀ । ତାଙ୍କ ପଛେ ପଛେ ଆଈ । ଆଉ ବଡ ଭାଇ ବି ! ସେ ବି ନ୍ୟୁୟର୍କ୍ ୟୁନିଭର୍ସିଟିରୁ ଚାଲି ଆସିଛନ୍ତି ମୋତେ ଦେଖିବାକୁ ?

ସମସ୍ତଙ୍କ ଆଖି ଛଳ ଛଳ । ସମସ୍ତଙ୍କ ମୁହଁରେ ଯନ୍ତ୍ରଣା ।

'ପ୍ଲିଜ୍, ତୁମେମାନେ ଆଉ ମନ ଖରାପ କରନି । ଆଈ ଆମ୍ ସରି, ସମସ୍ତଙ୍କ ମନ ଖରାପ କରେଇ ଦେଲି । ଆଉ କରିବି ନାହିଁ । ଆଉ କାହା ମନରେ କେବେ କଷ୍ଟ ଦେବି ନାହିଁ । ପ୍ଲିଜ୍ ଲୁହ ଝରାଅ ନାହିଁ ।'

କେହି କାହିଁକି ମୋ କଥା ଶୁଣୁ ନାହାନ୍ତି ? କାହିଁକି ସେମାନଙ୍କର କୋହ କେବଳ ବଢି ବଢି ଚାଲିଛି ?

ଆରେ ... ଆରେ... ଏ କ'ଣ ? ଧଳା ଖଟ ଉପରେ ଅସାଢ଼ ହୋଇ ପଡିଥିବା ମୋ ଦେହ ଉପରେ ଧଳା ଚାଦରଟିଏ କାହିଁକି ଘୋଡେଇ ଦେଉଛନ୍ତି ଧଳା ଡ୍ରେସ୍ ପିନ୍ଧିଥିବା ନର୍ସ ଜଣକ ?

ମୁଁ ପାଟି କରି ଉଠିଲି– 'ନା, ସେମିତି କର ନାହିଁ । ମୋ' ଜୀବନ ଏଇ ମାତ୍ର ଆରମ୍ଭ ହେଇଛି । ସେଥିରେ ପୂର୍ଣ୍ଣଚ୍ଛେଦ ପକାଅ ନାହିଁ । ମୋର କରିବାକୁ ଯେ ଆହୁରି କେତେ କାମ ବାକୀ । ପ୍ରିନ୍‌ସ୍‌ଟନ୍ ଯିବି । ସେଠୁଁ ବି.ଏ. ପାସ୍ କରି ହାର୍ଭାର୍ଡ ଲ' ସ୍କୁଲ୍‌ରେ ପଢିବି । ଖରାଛୁଟିମାନଙ୍କରେ ଯିବି ଇଉରୋପ୍, ଆଫ୍ରିକା, ଅଷ୍ଟ୍ରେଲିଆ । ଲ' ପାସ୍ କରି କକେଇଙ୍କ ଲ' ଫାର୍ମରେ କାମ କରିବି । ତା'ପରେ ଅତି ପ୍ରିୟ ଜଣଙ୍କ ସାଙ୍ଗରେ ସଂସାର ପାତିବି । ... ଏପର୍ଯ୍ୟନ୍ତ ଯେ ମୁଁ ଏସବୁ କିଛି କରି ନାହିଁ ।'

ନା, ସେମାନେ କେହି ମୋ କଥା ଶୁଣୁ ନାହାନ୍ତି । ଶୁଣି ପାରୁ ନାହାନ୍ତି । ମୁଁ ବିକଳ ହୋଇ ଈଶ୍ୱରଙ୍କୁ ଡାକିବାକୁ ଲାଗିଲି ।

'ମୋତେ ଆଉ ଥରଟିଏ ସୁଯୋଗ ଦିଅ, ପ୍ରଭୁ । ଥରଟିଏ କେବଳ । ମୋ' ଆଡେ ଚାହିଁ ଦେଖ । ଦୟା କର ଟିକିଏ । ତୁମେ କୁହ, ମୋର କ'ଣ ସଂସାର ଛାଡି ଚାଲିଯିବାର ବୟସ ହୋଇଛି ? ମୋ' ବୟସ ଯେ ମାତ୍ର ସତର ।'



# ଯୀଶୁ

ସୋମବାର ଦିନ ଅଫିସ୍‌ରେ ପହଞ୍ଚିବା ମାତ୍ରକେ ମିଜାଜ୍‌ଟା ଖରାପ ହୋଇଗଲା ଶାଶ୍ୱତୀର । ସାମ୍ନାରେ କ୍ରେଡିଟ୍ କାର୍ଡ୍ ବିଲ୍ । ବୋଧହୁଏ ଶନିବାର ଦିନ କୁରିଅର୍ ଦେଇଯାଇଛି । ଆଉ ବିଲ୍‌ର ପ୍ରଥମ ପୃଷ୍ଠାରେ ଭଦ୍ର ଭାବରେ ତାଗିଦା– 'ବିଲ୍ ଦେବାର ଶେଷ ତାରିଖ ସେପ୍ଟେମ୍ବର ଚବିଶ' । ଅର୍ଥାତ୍, ଆସନ୍ତାକାଲି । କ'ଣ କେମିତି କରିବ ଶାଶ୍ୱତୀ ? ଆଜି କନ୍‌ଫରେନ୍‌ସ୍ ଚାଲିବ ସାରା ଦିନ । ଆସନ୍ତାକାଲି ସକାଳୁ ସକାଳୁ ତାକୁ ଯିବାକୁ ହେବ ଦିଲ୍ଲୀ । ଯଦି ତା' ସ୍ୱାମୀଟି ସହରରେ ଥାଆନ୍ତା, ତା'ହେଲେ କାମଟି ତା' ମୁଣ୍ଡରେ ସେ ଚାପି ଦେଇ ପାରି ଥାଆନ୍ତା । କିନ୍ତୁ ଗତ ସାତଦିନ ଧରି ପ୍ରବୀର ବସିଛି ଟୋକିଓରେ । ଶୁକ୍ରବାର ରାତିରେ ଫେରିବାର ଥିଲା, କିନ୍ତୁ ସେ ଖବର ପଠେଇଛି, ଫେରୁଫେରୁ ଆହୁରି ପାଞ୍ଚଦିନ ଲାଗି ଯାଇପାରେ । ଆଠ ବର୍ଷର ପୁଅ ରୋହନ୍‌କୁ ଶାଶୂଙ୍କ ଦାୟିତ୍ୱରେ ପୂରାପୂରି ଛାଡି ଦେଇ ଦିଲ୍ଲୀ ଯିବା ପାଇଁ ଶାଶ୍ୱତୀକୁ ଭଲ ଲାଗେ ନାହିଁ, କିନ୍ତୁ ଏଥର ଉପାୟ ନାହିଁ । ଜରୁରୀ କଷ୍ଟମର୍ ମିଟିଙ୍ଗ୍ ।

ହେଲେ ତା' ଆଗରୁ ତାକୁ ଏଇ କ୍ରେଡିଟ୍ କାର୍ଡ ସମସ୍ୟାଟା ସମାଧାନ କରିବାକୁ ହେବ ।

ଆଜିକାଲି ଏଇମିତି ହିଁ ହେଉଛି । ବିଲ୍ ପଇଠ କରିବା ଶେଷ ତାରିଖର ଠିକ୍ ଦିନେ କି ଦୁଇ ଦିନ ପୂର୍ବରୁ ଆସି ପହଞ୍ଚୁଛି କ୍ରେଡିଟ୍ କାର୍ଡ୍‌ର ଷ୍ଟେଟ୍‌ମେଣ୍ଟ୍ । ସେତେବେଳେ ଯଦି ତମେ ଟିକିଏ କାର୍ଯ୍ୟ ବ୍ୟସ୍ତ ରହିଗଲ ବା ସାମାନ୍ୟ ହେଳା କରି ଦେଲ, ବାସ୍ – ସରିଗଲା କଥା । ଆର ମାସକୁ 'ଫିନାନ୍‌ସିଆଲ୍ ଚାର୍ଜ୍' ବାହାନାରେ ମୋଟା ଅଙ୍କର ଫାଇନ୍ । ଅର୍ଥାତ୍, ତାଗିଦା ଆସିବା ମାତ୍ରକେ ଶାଶ୍ୱତୀର ସଚେତନ ହୋଇ କାମଟି କରିବା ଛଡ଼ା ଉପାୟ ନାହିଁ । କେତେ ଥର ସେ ଅଭିଯୋଗ କଲାଣି, ହେଲେ ଶୁଣୁଛି କିଏ ? ବିରକ୍ତିରେ ସେ କ୍ରେଡିଟ୍ କାର୍ଡ୍ ବନ୍ଦ କରେଇ ଦେବା ଉପରେ ଥିଲା । କିନ୍ତୁ ତା' ଭଳି ଘନ ଘନ ଟୁର୍ କରୁଥିବା ଜଣେ ବ୍ୟସ୍ତ ମଣିଷ କ୍ରେଡିଟ୍ କାର୍ଡ୍ ବ୍ୟତିରେକ ଜୀବନ ଚିନ୍ତା କରିପାରେ ନାହିଁ ।

ଅଗତ୍ୟା ଭରସା ସେଇ ଜଣେ । ଯୀଶୁ ।

ଫୋନ୍ ସାମ୍ନାକୁ ଟାଣି ଆଣି ଯୀଶୁର ମୋବାଇଲ୍ ନମ୍ବର ଲଗେଇଲା ଶାଶ୍ୱତୀ ।

ଏବଂ ସବୁ ଶୁଣି ଯୀଶୁର ଆଶ୍ୱାସନା ଭରା ଉତ୍ତର– 'ନୋ ପ୍ରବ୍ଲେମ୍, ମ୍ୟାଡ୍ମ୍ । ଆପଣ ରିସେପ୍ସନିଷ୍ଟ ପାଖରେ ଚେକ୍ ରଖି ଦିଅନ୍ତୁ, ମୁଁ ଭରି ଦେବି ।'

ସ୍ୱସ୍ତିର ନିଶ୍ୱାସ ନେଇ ଶାଶ୍ୱତୀ କହିଲା, 'ଥ୍ୟାଙ୍କ୍ସ୍, ଯୀଶୁ ।'

କେବଳ କ୍ରେଡିଟ୍ କାର୍ଡ୍‌ର ବିଲ୍ ଦେବା ପାଇଁ ନୁହଁ, ସଂସାରର ଓ ବେଳେ ବେଳେ ସଂସାର ବାହାରର ଯାବତୀୟ ଝଂଝାଳ ପାଇଁ ଭରସା ଏଇ ଯୀଶୁ । ଏକା ଶାଶ୍ୱତୀର ନୁହଁ, ଅଫିସ୍‌ର ପ୍ରାୟ ସମସ୍ତଙ୍କର ।

ଶହେ ଲୋକଙ୍କର ଅଫିସ୍ । ସବୁ ଦିନ ଅନ୍ତତଃ ପଚାଶ ରକମର କାମ ବାହାରେ । ଆଉ ସେଥିପାଇଁ ଆରାଧନା କେବଳ ସେଇ ଜଣଙ୍କୁ– ଯୀଶୁ ।

ତରବର ହୋଇ ଦୁଇ ମହଲାରେ ଥିବା କନ୍‌ଫରେନ୍ସ୍ ହଲ୍ ଆଡକୁ ଯାଉ ଯାଉ ଶାଶ୍ୱତୀ ପ୍ରାୟ ନିଜକୁ କହିବା ଭଳି କହିଲା, 'କ'ଣ ଯେ ହୁଅନ୍ତା ଯୀଶୁ ନ ଥିଲେ !'

'ମୋତେ କିଛି କହିଲେ, ମ୍ୟାଡମ୍ ?' ତା' ପଛେ ପଛେ ଯେ ଟ୍ରେନିଙ୍ଗ୍ ଡିପାର୍ଟ୍‌ମେଣ୍ଟର ରଫିକ୍ ଆସୁଥିଲା, ସେକଥା ଶାଶ୍ୱତୀ ଠିକ୍ ଲକ୍ଷ୍ୟ କରିନି ।

ହସି ଦେଇ କହିଲା, 'ନା । ନିଜକୁ କହୁଥିଲି । ଆଉ ଈଶ୍ୱରଙ୍କୁ ଧନ୍ୟବାଦ ଦେଉଥିଲି ଯେ ଯୀଶୁଭଳି ଜଣଙ୍କୁ ଆମ ଅଫିସ୍‌ରେ ଜୁଟେଇଛନ୍ତି ।'

'ଠିକ୍ କହିଛନ୍ତି, ମ୍ୟାଡମ୍,' ରଫିକ୍ କହିଲା, 'ଗତ ବର୍ଷ ସିଡିରୁ ପଡିଯାଇ ଯେତେବେଳେ ବାଁ ହାତ ଭାଙ୍ଗିଲି, ସେତେବେଳେ ଏଇ ଯୀଶୁ ହିଁ ମୋ ତ୍ରାଣକର୍ତ୍ତା ହୋଇଯାଇଥିଲେ ! ମୋଟର୍‌ସାଇକେଲ୍ ଚଳେଇବା ବନ୍ଦ ହୋଇଗଲା । ଅଟୋ ରିକ୍ସାରେ ଅଫିସ୍ ଆସିବା ଛଡା ଗତି ନାହିଁ । ଆଉ ଅଟୋ ରିକ୍ସାରେ ଯିବା-ଆସିବା ମାନେ ଆଉ ଦୁଇ ଚାରିଟା ଭଲ ହାତ ଭାଙ୍ଗିବା ଅବସ୍ଥା । ସେତେବେଳେ ସପ୍ତାହ ପରେ ସପ୍ତାହ ମୋତେ ନିଜ ସ୍କୁଟର୍‌ରେ ଅଫିସ୍ ନେବା ଆଣିବା କରିଛନ୍ତି ଏଇ ଯୀଶୁ ।... ମୁଁ ଥରେ ପେଟ୍ରୋଲ୍ ଖର୍ଚ୍ଚ ଦେବା କଥା ପରୋକ୍ଷରେ ଉଠେଇଥିଲି । କଥାଟା ଶୁଣି ତାଙ୍କର ସେ କି ରାଗ !'

ଯୀଶୁ ପୁଣି କାହାଠୁଁ କିଛି ନେବ ! ସେ ତ ଖାଲି ଦେଇ ଜାଣେ ।

ଶାଶ୍ୱତୀର କ୍ରେଡିଟ୍ କାର୍ଡ଼ ଚେକ୍ ଦେବା ଭଳି କାମ ତ ନିହାତି ଛୋଟ, ଆହୁରି କେତେ ରକମର କାମ ଥାଏ ସମସ୍ତଙ୍କର । ଏଇ ଯେମିତି ମନୋଜର ଗୃହ-ପ୍ରବେଶ । ମେଦିନୀପୁରରୁ ଆସିଥିବା ମନୋଜ ଏଠି ନୂଆ । କିଛି ଜଣା ନାହିଁ ।

ଖାଲି ଆପାର୍ଟ୍‌ମେଣ୍ଟ କିଣି ଦେଲେ ତ କାମ ହୁଏ ନାହିଁ । ପୂଜା ହେବ । ଲୋକ ଖାଇବେ । କମ୍ ଝାମେଲା ? ଅଥଚ ସବୁ ସମ୍ଭାଳିନେଲା ଯୀଶୁ । ପୁରୋହିତଙ୍କଠୁଁ ଆରମ୍ଭ କରି ଭଲ କେଟରର୍ ଯୋଗାଡ଼– ସବୁ କିଛି ।

ମଟର ସାଇକେଲ୍ ଆକ୍‌ସିଡେଣ୍ଟରେ ରଚନାର ବାଇଶ ବର୍ଷର ଭାଇଟି ମରିଗଲା । ସେତେବେଳେ ଶୋକଗ୍ରସ୍ତ, ସ୍ତବ୍ଧ ପରିବାରର ଯାହା ଅବସ୍ଥା ! ତା'ରି ଭିତରେ ପୋଲିସ୍, ପୋଷ୍ଟ ମର୍ଟ୍‌ମ୍, ଗୁଜବ– ଏସବୁ ସମ୍ଭାଳି ଥାଆନ୍ତା କିଏ ? ସେଇ ଯୀଶୁ । କେହି ଡାକିବା ପର୍ଯ୍ୟନ୍ତ କଥା ଗଲାନି । ନିଜେ ନିଜ କାନ୍ଧ ଉପରକୁ ସବୁ ଦାୟିତ୍ୱ ସେ ନେଇଯାଇଥିଲା ।

କାହା ବାପାଙ୍କ ଶ୍ରାଦ୍ଧ, କାହା ସ୍ତ୍ରୀର ଅପରେସନ୍, ଆଉ ପୁଣି ବି.ଡି.ଏ. ଅଫିସ୍‌ରେ କାହାର ଜମି ରେଜିଷ୍ଟ୍ରେସନ୍ । ସଂସାରରେ ରହିଲେ କ'ଣ କାମର ଅଭାବ ହୁଏ ?

ଯୀଶୁ ନ ଥିଲେ କ'ଣ କେମିତି ହୁଅନ୍ତା କେଜାଣି ! କଥାଟା ଗୁଡେଇ ତୁଡେଇ ପୁଣି ଶାଶ୍ୱତୀ ମନକୁ ଆସିଥିଲା । ସାଢେ ଏଗାରଟା ବେଳେ କନ୍‌ଫରେନ୍‌ସ୍‌ର କଫି-ବ୍ରେକ୍ ସମୟରେ କଥାଟି ଖାପଛଡ଼ା ଭାବରେ ତା' ପାଟିରୁ ବାହାରି ପଡିଥିଲା ବି ।

'ଏକଥାର ମାନେ କ'ଣ ? ଯୀଶୁ ପୁଣି ରହିବେନି ଏଠି ?'– କିଏ ଜଣେ ଆତଙ୍କିତ ସ୍ୱରରେ କହିଲା । ପୁଣି ସେଇ ରଫିକ୍ ।

'ନା ମାନେ... ଶାଶ୍ୱତୀ ସାମାନ୍ୟ ଇତସ୍ତତଃତା ମଝିରେ ଉତ୍ତର ଦେଲା, 'ଆଜିକାଲି କେତେ କିଏ ଚାକିରି ଛାଡି ଅନ୍ୟାନ୍ୟ ଜାଗାକୁ ଚାଲି ଯାଉଛନ୍ତି ... କିଏ କହି ପାରିବ ... ଯଦି କୋଉଠି କିଏ ଦରମା ବେଶୀ ଦିଏ ତାକୁ ...'

'ଦରମା ! ସତରେ କ'ଣ ଯୀଶୁ କେବଳ ଦରମା ଲୋଭରେ ପଡିଛନ୍ତି ଏଠି ?'

ନା, ଶାଶ୍ୱତୀର ମଧ୍ୟ ସେମିତି ମନେ ହୁଏ ନାହିଁ । ଏଗାର ବର୍ଷ ତଳେ ସେ ଯେତେବେଳେ ଏଠି ନୂଆ ନୂଆ ଚାକିରି ଆରମ୍ଭ କରିଥିଲା ଏବଂ ଅଜଣା ନୂଆ ସହର ନେଇ ଭୟ ପାଇଥିଲା, ସେତେବେଳେ ଏଚ୍.ଆର୍.ର ବନ୍ଦନା କହିଥିଲା, 'ଭୟ ପୁଣି କ'ଣ ? ଯୀଶୁ ଅଛନ୍ତି । ... ଆରେ, ତୁମେ ଯୀଶୁଙ୍କୁ ଚିହ୍ନିନ ? ମୁଁ ଚିହ୍ନେଇ ଦେଉଛି । ସେ ତୁମକୁ ସାହାଯ୍ୟ କରିବେ ।'

ସତରେ ଯୀଶୁ ହେଇ ଯାଇଥିଲା ତା' ଭରସା । ପଚିଶ ବର୍ଷର ଝିଅଟି କୋଉଠି ରହିବ, ଖିଆପିଆର ବ୍ୟବସ୍ଥା କ'ଣ ହେବ, ଆଉ ପୁଣି ଅଫିସ୍ ଯାତାୟତ କଥା ଅଛି – ସବୁ ସଜାଡି ଦେଇଥିଲା ଯୀଶୁ । ତା'ର ବର୍ଷେ ପରେ ପ୍ରବୀର ସାଙ୍ଗରେ ବାହାଘର ହୋଇଥିଲା ଶାଶ୍ୱତୀର । ସେତେବେଳେ ବି ନିର୍ଭର ସେଇ

ଯୀଶୁ ଉପରେ । ଛୋଟ ଆପାର୍ଟ୍‌ମେଣ୍ଟ ଭଡା ନେବାକୁ ହେବ ? ଚିନ୍ତା ନାହିଁ, ଯୀଶୁର ଚିହ୍ନା ବ୍ରୋକର୍ ଅଛି । ଫ୍ରିଜ୍ କିଣିବେ ? ଓ୍ୱାଶିଙ୍ଗ୍ ମେସିନ୍ ? ଗାନ୍ଧୀ ବଜାରର ଅମୁକ ଇଲେକ୍‌ଟ୍ରିକାଲ୍ ଦୋକାନୀ ମାଲିକ ପରା ଯୀଶୁର ଲେଖାଯୋଖାରେ ଭାଇ ! ଛୋଟ ଗାଡ଼ି ଦରକାର ? ନୋ ପ୍ରବ୍ଲେମ୍ । ହ୍ୟୁଣ୍ଡାଇ ଶୋ ରୁମ୍‌ରେ ତା' ସାଙ୍ଗ ଚାକିରି କରେ । ଭଲ ଡିସ୍‌କାଉଣ୍ଟ ଦେବ ।

ବାହାଘରର ଦେଢ଼ ବର୍ଷ ପରେ ପୁଅ କୋଳକୁ ଆସିଥିଲା । ଡାକ୍ତର, ନର୍ସିଙ୍ଗ୍ ହୋମ୍‌ର ବ୍ୟବସ୍ଥା ସିନା ଶାଶ୍ୱତୀ, ପ୍ରବୀର କରିଥିଲେ, କିନ୍ତୁ ସମସ୍ତ ଦୌଡ଼ାଦୌଡ଼ି ପାଇଁ ଯୀଶୁ ହିଁ ଲୋଡା ହୋଇଥିଲା ।

ଯୀଶୁ । ଯୀଶୁ । ଯୀଶୁ ।

କେବଳ ଶାଶ୍ୱତୀର ନୁହଁ, ସମସ୍ତଙ୍କର ଆଶାବାଡି ସେଇ ଯୀଶୁ ।

ଅଥଚ ଆଶ୍ଚର୍ଯ୍ୟର କଥା, ଯେଉଁ ଯୀଶୁ ନ ହେଲେ କାହାର ଦିନଟିଏ ଚଳେନି, ତା' ସମ୍ପର୍କରେ ଅଫିସ୍‌ରେ କେହି କିଛି ଜାଣି ନ ଥିଲେ । ବହୁତ ଦିନ ତଳେ ଥରେ ଶାଶ୍ୱତୀ ପଚାରିଥିଲା କେଇ ଜଣଙ୍କୁ, 'ଯୀଶୁ କେବେଠୁଁ ଏଇଠି ?'

ପଚାରିବା ଦୃଷ୍ଟି ନେଇ ଯେ ତାକୁ, ସେ ଯାକୁ ଚାହିଁ ଥିଲେ । ଏ ପ୍ରଶ୍ନର ଉତ୍ତର ଯେ କାହାକୁ ଜଣା ନ ଥିଲା !

କୌତୂହଳରେ ଶାଶ୍ୱତୀ ପୁଣି ପଚାରିଥିଲା ସ୍ୱୟଂ ଯୀଶୁକୁ । ହେଲେ ସେ ମଧ୍ୟ କିଛି କହି ନ ଥିଲା । ହସି ଦେଇ କଥା ଆଡେଇ ଦେଇଥିଲା କେବଳ । ବୋଧହୁଏ ସେସବୁ ଆଲୋଚନା କରିବା ପାଇଁ ସମୟ ଓ ସ୍ପୃହାର ଘୋର ଅଭାବ ।

ଅଫିସ୍‌ର ବେଶ୍ ପୁରୁଣା ମଣିଷ ଆକାଉଣ୍ଟ୍‌ସ୍‌ର ଶୈଳେଶ । ସେ ମଧ୍ୟ ସଠିକ୍ ଭାବରେ କିଛି ଜାଣି ନ ଥିଲେ । ତଥାପି ଶୁଣା କଥାରୁ କହିଥିଲେ ଯେ କମ୍ପାନୀ ଯେତେବେଳେ ନୂଆ ଆରମ୍ଭ ହେଲା, ସେତେବେଳେ କୁଆଡେ ଏହାର ପ୍ରତିଷ୍ଠାତା ରମେନ୍ ଗୁପ୍ତା ଯୀଶୁକୁ ଧରି ଆଣିଥିଲେ ।

ଏହା ଭିତରେ ରମେନ୍ ଗୁପ୍ତା ଗଲେଣି । ନିଜ ଶେଆର୍ ବିକ୍ରି କରିଦେଇ ଡେରାଡୁନ୍ ନା ନୈନିତାଲ୍ କୋଉଠି ଅବସର ଜୀବନ କାଟୁଛନ୍ତି । ତାଙ୍କର ପ୍ରତିଷ୍ଠିତ ଏଇ କମ୍ପାନୀ ମଧ୍ୟ ଆନ୍ତର୍ଜାତିକ ବଜାରରେ ଦୁଇଥର କିଣାବିକା ହୋଇସାରିଲାଣି । ପ୍ରତିଥରର କିଣାବିକା ପରେ ବହୁ ଚିହ୍ନାମୁହଁ ବଦଳିଛନ୍ତି । କେତେ ନୂଆ ମୁହଁ ପୁଣି ଉଭା ହୋଇଛନ୍ତି । କିନ୍ତୁ ରହି ଯାଇଛି ଯୀଶୁ ।

ଶାଶ୍ୱତୀ ଯେତେବେଳେ ଚାକିରି ଆରମ୍ଭ କଲା, ସେତେବେଳେ ଯୀଶୁର ଡେଜିଗ୍‌ନେସନ୍ ଥିଲା 'ଜୁନିଅର୍ ଆଡ୍‌ମିନିଷ୍ଟ୍ରେଟିଭ୍ ଆସିଷ୍ଟାଣ୍ଟ' । ଏତେ ବର୍ଷ

ଭିତରେ ପଦୋନ୍ନତି ହୋଇ ଏବେ ସେ 'ସିନିୟର୍ ଆଡ୍‌ମିନିଷ୍ଟ୍ରେଟିଭ୍ ଆସିଷ୍ଟାଣ୍ଟ୍' । ନିଶ୍ଚିତ ଭାବରେ ଅଫିସ୍ କାମର ଯାହା ପରିସର ଥିଲା, ତାହା ବଦଳି ଯାଇଛି । ଉପର ପାହାଚକୁ ଉଠିବା ପରେ ଯେଉଁ କେତୋଟି ସୁବିଧା ସ୍ୱାଭାବିକ ରୂପେ ସମସ୍ତଙ୍କୁ ମିଳେ ତା' ବି ତାକୁ ମିଳିଛି । କିନ୍ତୁ ବଦଳି ନ ଥିଲା ଯୀଶୁ ।

ରଙ୍ଗ ଶ୍ୟାମଳ । ଉଚ୍ଚତା ଛଅ ଫୁଟ୍ ପାଖାପାଖି । ଏଗାର ବର୍ଷ ତଳେ ଯେମିତି ପତଳା ଚେହେରା ତା'ର ଦେଖିଥିଲା ଶାଶ୍ୱତୀ, ଏବେ ମଧ୍ୟ ଠିକ୍ ସେଇମିତି । ବୟସ ଯେମିତି ଯୀଶୁକୁ ଛୁଇଁବା କଥା ଭୁଲି ଯାଇଛି । କାନପାଖରେ ଅଳ୍ପ କେଇଟି ବାଳ ସଦ୍ୟ ରୂପେଲୀ ହୋଇଛନ୍ତି ସତ, କିନ୍ତୁ ମୁହଁରେ ବା ବେକରେ ବଳିରେଖା ନାହିଁ । ଚେହେରା ଦେଖି ଲୋକଟିର ବୟସ ଅନ୍ଦାଜ କରିବା ସହଜ ନୁହଁ ।

ଅନ୍ଦାଜ୍ କରିବା ପାଇଁ ଅନ୍ୟମାନଙ୍କର ବିଶେଷ ଆଗ୍ରହ ଥିଲା କି ? ବୋଧହୁଏ ନା । କମ୍ପାନୀ କାମରେ ସମସ୍ତଙ୍କୁ ବ୍ୟସ୍ତ ରହିବାକୁ ହୁଏ । ଏମିତିରେ ତ ଅଫିସ୍‌ର କାଗଜପତ୍ରରେ ଲେଖା ଯେ ସପ୍ତାହକୁ ପାଞ୍ଚ ଦିନ ଚାକିରି । ନଅଟାରୁ ଛଅଟା । କିନ୍ତୁ ଶାଶ୍ୱତୀ ସମେତ ଅନ୍ୟମାନଙ୍କୁ ଏହାଠାରୁ ଢେର୍ ଅଧିକ କାମ କରିବାକୁ ପଡ଼େ । ନିୟମିତ ଭାବରେ ଟୁର୍ ବି କରିବାକୁ ହୁଏ । ଅଫିସ୍‌ର ଦାୟିତ୍ୱପୂର୍ଣ୍ଣ କାମ । ବାକୀ ସମୟରେ ପାରିବାରିକ ଝଞ୍ଜାଳ । କାହାର ବା ସମୟ ଥିଲା ଅନ୍ୟ-ଜଣଙ୍କ ବ୍ୟକ୍ତିଗତ ଜୀବନ ନେଇ କୌତୂହଳୀ ହେବା ।

କିନ୍ତୁ ଜଣଙ୍କୁ ନେଇ କୌତୁହଳୀ ହେବା ଏବଂ ସେଇ ଜଣଙ୍କୁ ଭଲ କରି ଜାଣିବାରେ କ'ଣ ତଫାତ୍ ନାହିଁ ? କଥାଟି ବେଳେବେଳେ ଶାଶ୍ୱତୀ ମନକୁ ଆସେ, ପୁଣି ପର ମୁହୂର୍ତ୍ତରେ ଅନ୍ୟ କୋଉ କାମ ନେଇ ବାନ୍ଧି ହୋଇଯାଏ ସେ । ଭାବନାଟି ଆଡ଼େଇ ହୋଇ ରହିଯାଏ ।

ଏହା ଭିତରେ କଟିଗଲା କିଛି ସପ୍ତାହ । ପ୍ରବୀର ଟୋକିଓରୁ ଫେରି ସାରିଛି । ଦିଲ୍ଲୀରୁ ଫେରିବା ପରେ ଶାଶ୍ୱତୀ ବି କାମରେ ତିନି ଦିନ ପାଇଁ ହାଇଦ୍ରାବାଦ୍ ଯାଇ ଆସି ସାରିଲାଣି । ହାଇଦ୍ରାବାଦ୍‌ରୁ ଫେରିବାର ସାତଦିନ ପରର ଘଟଣା । ଶାଶ୍ୱତୀ ଅଫିସ୍‌ରେ ବସିଛି, ହଠାତ୍ ତା' ମୋବାଇଲ୍ ଫୋନ୍ ବାଜିଲା । ଅଜଣା ନମ୍ବର । ତଥାପି ସେ ଫୋନ୍ ଉଠେଇଲା ।

– 'ମୁଁ ସୁଷମା ରାୟ । ରୋହନ୍ ସ୍କୁଲ୍‌ରୁ କହୁଛି ।'

ସ୍କୁଲ୍‌ରୁ ! ଶାଶ୍ୱତୀ ଛାତି ଭିତର ଚାଉଁ କରି ହେଇଗଲା । କ'ଣ ହେଇଛି ?

'ରୋହନ୍ ଆଙ୍ଗୁଠି କବାଟରେ ଚାପି ହୋଇଯାଇଛି । ଆମେ ପ୍ରାଥମିକ ଭାବରେ ଯାହା କରିବା କଥା କରିଛୁ । କିନ୍ତୁ ଜଣେ ସ୍ପେସିଆଲିଷ୍ଟଙ୍କୁ ଦେଖାଇଲେ

ଭଲ ହୁଅନ୍ତା । ଆପଣ ଯଦି ଆସି ପାରନ୍ତେ ଏବେ ...’

‘ଆସୁଛି । ସାଙ୍ଗେ ସାଙ୍ଗେ ।’ ଟେଲିଫୋନ୍‌ରେ ପିଲାଟିଏର ଚାପା କାନ୍ଦ ଶାଶ୍ୱତୀ କାନରେ ପଡିଥିଲା । ରୋହନ୍ କି ? ପ୍ରଭୁ ହେ !

ବିଭ୍ରାନ୍ତ ଭାବରେ ପ୍ରବୀରକୁ ଫୋନ୍ କରୁ କରୁ ଶାଶ୍ୱତୀ ଅଫିସ୍‌ରୁ ବାହାରିଗଲା । ଦୁଇଜଣଯାକ ଯେତେବେଳେ ସ୍କୁଲ୍‌ରେ ଯାଇ ପହଞ୍ଚିଲେ, ସେତେବେଳେ ଆଙ୍ଗୁଠି ଚାପି ହେବା ଘଟଣାର ଦୁଇ ଘଣ୍ଟା କଟି ସାରିଛି । ଅଥଚ ଧଳା ଗଜ୍ କନା ଗୁଡା ବାଁ ହାତର ବିଶି ଆଙ୍ଗୁଠିକୁ ଚାହିଁ ଚାହିଁ ସେପର୍ଯ୍ୟନ୍ତ କାନ୍ଦି ଚାଲିଛି ରୋହନ୍ ।

ରୋହନ୍‌ର କ୍ଲାସ୍ ଟିଚର୍ ସୁଷମା ରାୟ କ’ଣ କେମିତି ହେଲା କହି ଚାଲିଥିଲେ, କିନ୍ତୁ ସେସବୁ କଥା ଭଲରେ ଶାଶ୍ୱତୀ କି ପ୍ରବୀର କାନରେ ପଶୁ ନ ଥିଲା । ଛିଣ୍ଡା ଛିଣ୍ଡା ଭାବରେ ପଡିଥିଲା କେବଳ ଏତିକି– ଗୋଟିଏ ପେନ୍ ନେଇ କ୍ଲାସ୍‌ର ପିଲାଟିଏ ସାଙ୍ଗରେ ରୋହନ୍‌ର କଳି ହେଲା । ସେଇ ପିଲାଟି ପେନ୍ ଟାଣି ନେଇ ବାହାରି ଯାଉ ଯାଉ କବାଟଟା ଜୋର୍‌ରେ ବନ୍ଦ କରି ଦେଲା । ଆଉ ରୋହନ୍‌ର ଆଙ୍ଗୁଠି ...’।

ଡାକ୍ତର କହିଲେ ହେଆର୍ ଲାଇନ୍ ଫ୍ରାକ୍‌ଚର୍ । ଯେଉଁଲି ଭାବରେ ଆଙ୍ଗୁଠିଟା ଖଣ୍ଡିଆ ହେଇଛି, ସେଥିରୁ ଜଣାପଡୁଛି ଯେ ଖୁବ୍ ଜୋର୍‌ରେ କବାଟଟା ଆଙ୍ଗୁଠି ଉପରେ ପଡିଛି । ବହୁତ କିଛି ହେଇ ପାରି ଥାଆନ୍ତା, ଭାଗ୍ୟ ଭଲ ରୋହନ୍ ଅଳ୍ପକେ ବର୍ତ୍ତି ଯାଇଛି । ଲକି ବୟ୍ ।

ରୋହନ୍‌ର ଆଙ୍ଗୁଠି ଚାପି ହେବା ଘଟଣା ଶାଶ୍ୱତୀ କିଛି ଦିନ ଭିତରେ ଭୁଲି ଯାଇଥାଆନ୍ତା, କିନ୍ତୁ ସାତ ଦିନ ଭିତରେ ଆଉ ଦୁଇଥର ସ୍କୁଲ୍‌ରେ ‘ଦୁର୍ଘଟଣା’ ଘଟିଗଲା । ଥରେ ଜଣେ ତା’ ସାର୍ଟ୍ ଚିରିଦେଲା । ଆଉ ଥରେ ତାକୁ ଏକ୍‌ସର୍‌ସାଇଜ୍ ବିମ୍ ଉପରୁ ଠେଲି ଗଡେଇ ପକେଇଲା ଜଣେ । ରୋହନ୍ ଭୀଷଣ ଶାନ୍ତ, ପତଳା । ବୟସ ତୁଳନାରେ ବେଶ୍ ଛୋଟ ବି । ସବୁବେଳେ ବହିରେ ମୁହଁ ମାଡ଼ି ବସିଥିବ । ତା’ର ପୁଣି ଅନ୍ୟମାନଙ୍କ ସାଙ୍ଗରେ ଝଗଡା ହୁଏ କେମିତି ?

ଶାଶ୍ୱତୀ ସ୍କୁଲ୍ ଚିହ୍ନା କେତେଜଣ ବାପା ମା’ଙ୍କ ସାଙ୍ଗରେ କଥାବାର୍ତ୍ତା କରି ଯାହା ବୁଝିଲା, ସେତିକିରେ ତା’ ମୁଣ୍ଡ ଗରମ । ଏଭଳି ‘ଦୁର୍ଘଟଣା’ କୁଆଡେ ଜଣା ଅଧିକେ ସମସ୍ତଙ୍କର ହୋଇସାରିଛି । ସ୍କୁଲ୍ କର୍ତ୍ତୃପକ୍ଷ ନିସ୍ପୃହ । ତଥାପି ନିଜେ ଥରେ ବୁଝିନେବା ପାଇଁ ଶାଶ୍ୱତୀ, ପ୍ରବୀର ସ୍କୁଲ୍ ପ୍ରିନ୍‌ସିପାଲ୍‌ଙ୍କୁ ଦେଖା କଲେ । ପ୍ରିନ୍‌ସିପାଲ୍‌ଙ୍କର ସେଇ ଏକା କଥା । ‘ପିଲାମାନଙ୍କୁ ପ୍ରାକୃତିକ ଭାବରେ ବଢିବାକୁ ଦେବା ଉଚିତ୍ ।’

‘ଡିସିପ୍ଲିନ୍ ?’

'ଆବଶ୍ୟକତା ନାହିଁ । ଦିନେ ନା ଦିନେ ଭଲ ମନ୍ଦ ବୁଝିବେ ସେମାନେ । ଆଫ୍‌ଟର୍ ଅଲ୍ ବଏଜ୍ ଉଇଲ୍ ବି ବଏଜ୍ !' ମିଟିଙ୍ଗ୍ ଶେଷ ।

ଘରକୁ ଫେରିବା ବେଳେ ଶାଶ୍ୱତୀ ରାଗରେ ଫାଟିପଡ଼ିଥିଲା । 'କୋଉଠି ଶୁଣିଛ ଏମିତି କଥା ! ମୁଁ ରୋହନ୍‌କୁ ଏ ସ୍କୁଲ୍‌ରୁ ଉଠେଇ ନେବି । ଜାଣିଜାଣି ପିଲାକୁ ଏମିତି ଢିଲା ସ୍କୁଲ୍‌କୁ ପଠାଇ ପାରିବିନି ।'

ରୋହନ୍ ପାଇଁ ଏଇ ସ୍କୁଲ୍ ବାଛିବା ପଛରେ ପ୍ରବୀରର ହିଁ ବିଶେଷ ହାତ ଥିଲା । ସାରା ଜୀବନ ସାଧାରଣ ସରକାରୀ ସ୍କୁଲ୍‌ରେ ପଢ଼ିଥିବା ପ୍ରବୀର ନିଜ ପୁଅକୁ ସହରର ସର୍ବ ଶ୍ରେଷ୍ଠ ସ୍କୁଲ୍‌ରେ ପଢ଼େଇବା ପାଇଁ ଚାହିଁଥିଲା । ତେଣୁ ପ୍ରାୟ ସହର ବାହାରେ ଗଢ଼ି ଉଠିଥିବା ଏଇ ସ୍କୁଲ୍‌କୁ ବାଛିଥିଲା ସେ । କିନ୍ତୁ ଏସବୁ ଘଟଣା ଘଟିବା ପରେ, ପୁଣି ପ୍ରିନ୍‌ସିପାଲ୍‌ଙ୍କ କଥା ଶୁଣିବା ପରେ ଶାଶ୍ୱତୀ କଥାରେ ସେ ଅମତ ହୋଇପାରିଲା ନାହିଁ । ରୋହନ୍‌ର ସ୍କୁଲ୍ ବଦଳେଇବା କଥା ସେ ମଧ୍ୟ ଭାବିବା ଆରମ୍ଭ କରିଦେଇଥିଲା ।

ହେଲେ କେବଳ ଭାବିଲେ ତ ହେବ ନାହିଁ । ଏ ଦେଶରେ କ'ଣ ସହଜରେ ସ୍କୁଲ୍ ଆଡ୍‌ମିସନ୍ ହୁଏ ? ପୁଣି ବର୍ଷ ମଝିରେ ?

'ତୁମେ ଚିନ୍ତା କରନି । ମୁଁ ଏବେ ଯୀଶୁଙ୍କୁ କହୁଛି ।' ଶାଶ୍ୱତୀ ସ୍ୱରରେ ଦମ୍ଭ ।

'ସ୍କୁଲ୍? ଓ, ଆଚ୍ଛା...' ଯୀଶୁ କଥାରେ କିଭଳି ଅନ୍ୟମନସ୍କ ଭାବ । ଶାଶ୍ୱତୀକୁ ସାମାନ୍ୟ ଖଟ୍‌କା ଲାଗିଲା, କିନ୍ତୁ ସେ ନିଜକୁ ବୁଝେଇବାକୁ ଚେଷ୍ଟା କଲା । ହୁଏତ ଭୀଷଣ ବ୍ୟସ୍ତ ଏବେ ଯୀଶୁ । ସବୁବେଳେ ଯେ ପାଟିରୁ କଥା ନ ସରୁଣୁ 'ହେଇଯିବ, ମ୍ୟାଡମ୍'ର ଭରସା ସେ ଦେଇପକେଇବ, ତା' କେମିତି ହେବ ?

ଶାଶ୍ୱତୀ ଏଥର ବିସ୍ତାରିତ ଭାବରେ ନିଜ ସମସ୍ୟା ଯୀଶୁଙ୍କୁ କହିବା ଆରମ୍ଭ କଲା । ରୋହନ୍‌ର ଗୋଟିଏ ପରେ ଗୋଟିଏ 'ଦୁର୍ଘଟଣା', ସ୍କୁଲ୍‌ରେ ଶୃଙ୍ଖଳାର ଅଭାବ, ପ୍ରିନ୍‌ସିପାଲ୍‌ଙ୍କ ନିସ୍ପୃହତା – କିଛି ବାଦ୍ ଦେଲାନି ସେ ।

ନିରବ ଭାବରେ ସବୁ ଶୁଣି ଯୀଶୁ କହିଲା, 'ମୁଁ ଦେଖୁଛି, ମ୍ୟାଡମ୍ । ନ୍ୟାସ୍‌ନାଲ୍ ସ୍କୁଲ୍‌ର ଅଫିସ୍‌ରେ ମୋର ଜଣେ ଭାଉଜ କାମ କରନ୍ତି । ମୁଁ ତାଙ୍କ ସାଙ୍ଗରେ କଥା କହି ଦେଖୁଛି, ଏବେ ଆପ୍ଲିକେସନ୍ ଫର୍ମ୍ ଆଣି ହେବ କି ନାହିଁ ।'

ଯୀଶୁ ଏମିତି ଇତସ୍ତତଃ ନେଇ କଥା କହୁଛି କାହିଁକି ? ଆଗରୁ ତ କେତେ କାହାର ପିଲା ପାଇଁ ସ୍କୁଲ୍‌ମାନଙ୍କରୁ ସେ ଫର୍ମ ଆଣିଦେଇଛି । ଶାଶ୍ୱତୀ ତ ଆଉ ସାତ ତାଳ ପଙ୍କ ତଳୁ ରୂପା ଫରୁଆ ଆଣିଦେବା କଥା କହୁନି ! ସେ ଜୋର୍ ଦେଇ କହିଲା, 'ଯେମିତି ହେଲେ ଆଣି ଦିଅ, ଯୀଶୁ । ଆଜି ଅଣେଇବାର ଚେଷ୍ଟା-

କର । ପ୍ଲିଜ୍ । ସେ ସ୍କୁଲ୍‌କୁ ରୋହନ୍‌କୁ ପଠେଇବାପାଇଁ ମୋର ସାହସ ହେଉନି ।'

ଯୀଶୁ କଥା ରଖିଥିଲା । ଯଦିଓ ଏଇମିତି ନଭେମ୍ବର ଶେଷରେ ବର୍ଷ ମଝିରେ ଆପ୍ଲିକେସନ୍ ଫର୍ମ୍ ଦେବାର ନିୟମ ନ ଥିଲା, ତଥାପି କୁହାବୋଲା କରି ନୂଆ ସ୍କୁଲ୍‌ରୁ ଫର୍ମ୍ ଆଣିଦେଇଥିଲା ସେ । ତା'ପରେ ଆରମ୍ଭ ହୋଇଥିଲା ଶାଶ୍ୱତୀ, ପ୍ରବୀରଙ୍କର ଚଟି ଘୋଷରା ପର୍ବ । ପୁଅକୁ ନେଇ ରିଟିନ୍ ଟେଷ୍ଟ୍ । ଦୁଇଦୁଇ ଥର ଇଣ୍ଟରଭ୍ୟୁ । ସବୁ ଭିତରେ କିନ୍ତୁ ଗୋଟାଏ ଅସ୍ୱାଚ୍ଛନ୍ଦ୍ୟ ରହିଯାଉଥିଲା ଶାଶ୍ୱତୀ ମନରେ । ହଠାତ୍ ଏଭଳି ବୀତସ୍ପୃହ କାହିଁକି ହୋଇଗଲା ଯୀଶୁ ?

ସେ ଯେ ତା' ସମ୍ପର୍କୀୟ ଭାଉଜଙ୍କ ସାଙ୍ଗରେ କଥା କହି ରଖିଥିଲା ତା' ଅବଶ୍ୟ ଜଣା ପଡିଯାଇଥିଲା । କାରଣ ପ୍ରତିଥର ସ୍କୁଲ୍‌ରେ ସେଇ ବୟସ୍କ ଭାଉଜଟି ହସ ହସ ମୁହଁରେ ବାହାରକୁ ଆସି ଚୁପ୍ ଚୁପ୍ ଶାଶ୍ୱତୀ, ପ୍ରବୀରଙ୍କୁ ଭରସା ଦେଇଯାଉଥିଲେ ।

'ଆପଣ ଚିନ୍ତା କରିବେନି, ମ୍ୟାଡମ୍ । ପ୍ରିନ୍‌ସିପାଲ୍ ଆପଣଙ୍କ ଭଳି ପ୍ରଫେସନାଲ୍ ମାନଙ୍କ ପିଲାମାନଙ୍କୁ ପସନ୍ଦ କରନ୍ତି ।' କିମ୍ବା, 'ରୋହନ୍ ରିଟିନ୍ ଟେଷ୍ଟ୍‌ରେ ବହୁତ ଭଲ କରିଛି । ଚିନ୍ତା କରନ୍ତୁନି, ହେଇଯିବ ।'

ଏଭଳି କଥା ଯୀଶୁ ମୁହଁରୁ ଶୁଣିବାର ଆଶା ରଖିଥିଲା ଶାଶ୍ୱତୀ, କିନ୍ତୁ ଯୀଶୁ କାହିଁ ? ଅଫିସ୍‌ରେ ଆଜିକାଲି ତା'ର ପ୍ରାୟ ଦେଖା ମିଳେନି । ଶାଶ୍ୱତୀ ତିନିଥର ଫୋନ୍ ବି କରିଥିଲା ତାକୁ । କିନ୍ତୁ ଫୋନ୍ ବାଜି ବାଜି ବନ୍ଦ ହୋଇଗଲା । ଯୀଶୁ ଫୋନ୍ ଉଠାଇଲାନି କି 'ମିସ୍‌ଡ୍ କଲ୍' ଦେଖି ନିଜ ତରଫରୁ ଫୋନ୍ ବି କଲା ନାହିଁ । ପ୍ରବୀର ତ ଥରେ ଦୁଇଥର ଥଟ୍ଟାରେ କହିଦେଲା– 'ତୁମମାନଙ୍କ ତ୍ରାଣକର୍ତ୍ତାଟିର ଦେଖାଦର୍ଶନ ନାହିଁ କାହିଁକି ? ତୁମ ପ୍ରଭୁ କ'ଣ ବିମୁଖ ??'

ଶାଶ୍ୱତୀର ଅସ୍ୱସ୍ତି ହୋଇଥିଲା । ସେ କ'ଣ ଯୀଶୁକୁ ଅସନ୍ତୁଷ୍ଟ କରିବା ଭଳି କିଛି କଥା କହିଦେଇଛି କି ?

ସେଦିନ କଫି ପିଉ ପିଉ ଯୀଶୁ କଥା ହିଁ ଭାବି ହେଉଥିଲା ଶାଶ୍ୱତୀ । ଆଉ ଦେଖ, ନିଜ କଫି କପ୍ ଧରି ପାଖ ଚୌକିରେ ବସିଯାଇ ତା' ଜୁନିୟର୍ ସମରେନ୍ଦ୍ର ସେଇ ଏକା କଥା ହିଁ ପକେଇଲା !

ଅଫିସ୍‌ରେ ମାତ୍ର ପାଞ୍ଚ ମାସ ତଳେ ଯୋଗ ଦେଇଛି ସମରେନ୍ଦ୍ର । ତା' ଆଗରୁ ଥିଲା ନାଗପୁର୍‌ରେ । ତା'ର ନା ଏ ସହର ଚିହ୍ନା, ନା ତାକୁ ଏ ସହରର ଭାଷା ଜଣା । ଅଗତ୍ୟା ନୂଆ ପରିବେଶରେ ଯୀଶୁ ହୋଇଯାଇଥିଲା ତା'ର ଏକମାତ୍ର ଅବଲମ୍ବନ । କିନ୍ତୁ ହଠାତ୍ ଯେ ଯୀଶୁ ସମରେନ୍ଦ୍ରର ଧରାଛୁଆଁ ବାହାରେ !

ସମରେନ୍ଦ୍ର ପଚାରିଲା, 'ମ୍ୟାଡମ୍, କିଛି ମନେ କରିବେନି ଏମିତି ରୋକ୍‌ଠୋକ୍ ପଚାରୁଛି ବୋଲି । ଯୀଶୁଙ୍କୁ କ'ଣ ଆପଣମାନେ କିଛି କିଛି ବକ୍‌ସିସ୍ ଦିଅନ୍ତି ?'

'ବକ୍‌ସିସ୍ !!'

'ହଁ ... ମାନେ ... ସମସ୍ତଙ୍କ ପାଇଁ ସେ ଏତେ କିଛି କରନ୍ତି, ତା' ବଦଳରେ କିଛି ଦିଅନ୍ତି ନାହିଁ ଆପଣମାନେ ? ... ଇନ୍ କ୍ୟାଶ୍ ଅର୍ କାଇଣ୍ଡ୍ ...' ସମରେନ୍ଦ୍ର କଥା ଶୁଣି ଶାଶ୍ୱତୀ ହତବାକ୍ । ଯୀଶୁ ବିଷୟରେ ଏଭଳି କଥା !

'କ'ଣ କହୁଛ, ସମରେନ୍ଦ୍ର ! ଯୀଶୁ ତ ଅନ୍ୟ ପାଇଁ ନିଜ ପକେଟ୍‌ରୁ କେତେ ଖର୍ଚ୍ଚ କରିଦିଅନ୍ତି, ତା'ର ହିସାବ ନାହିଁ, ତାଙ୍କୁ ପୁଣି ଦେବା କଥା କାହିଁକି ଉଠୁଛି ? ... କିନ୍ତୁ ହଠାତ୍ ଏଭଳି କଥାଟିଏ ପଚାରିଲ କାହିଁକି ?'

'ନା ...' ଏଥର ଇତସ୍ତତଃ ହେବାର ପାଳି ସମରେନ୍ଦ୍ରର, 'ମୋତେ ଶସ୍ତାରେ ସେକେଣ୍ଡ୍ ହ୍ୟାଣ୍ଡ୍ ମାରୁତିଟିଏ କିଣେଇ ଦେବା କଥା ସେ କହିଥିଲେ । ଅଥଚ ଏବେ ଫୋନ୍ କଲେ ଫୋନ୍ କାଟି ଦେଉଛନ୍ତି । ଅଫିସ୍‌ରେ ଦେଖି ନ ଦେଖିବା ଭଳି ରହିଯାଉଛନ୍ତି । ମୁଁ ବୁଝିପାରୁନି ବ୍ରୋକରେଜ୍ ଭଳି କିଛି ଦେବା କଥା ମୋର ଉଠେଇବା ଉଚିତ ଥିଲା କି ନାହିଁ ...'

'ଆଦୌ ନୁହଁ । ଏତେ ବର୍ଷ ଧରି ତାଙ୍କୁ ଦେଖୁଛି ମୁଁ । ... ହେଲେ ଏସବୁ ତ ଠିକ୍ ତାଙ୍କ କାମ ନୁହଁ, ବୋଧହୁଏ ଯୀଶୁଙ୍କର ଆଜିକାଲି ଅଫିସ୍‌ରେ ଦାୟିତ୍ୱ ବଢିଯାଇଛି ।' ଶାଶ୍ୱତୀ ସମରେନ୍ଦ୍ରକୁ କହିଥିଲା । କିନ୍ତୁ ମନ ଭିତରେ ପ୍ରଶ୍ନଟିଏ ଉଠିଥିଲା ତା'ର– ଯୀଶୁର ଅଫିସ୍‌ରେ ଦାୟିତ୍ୱ ବଢିଯାଇଛି ନା ପରୋପକାର କରିବାର ସ୍ପୃହା ଚାଲିଯାଇଛି ?

'କ'ଣ ଚାଲିଛି ଆଲୋଚନା ?' କଫି ଆସରରେ ରଫିକ୍ ଆସି ଯୋଗଦେଲା ।

'ନା, ଯୀଶୁଙ୍କୁ ନେଇ କଥା ହେଉଥିଲା ।' ଅନ୍ତକେ ଶାଶ୍ୱତୀ କହିଲା ।

'ଓ ଯୀଶୁ ! ଦି ଗ୍ରେଟ୍ ମହାପୁରୁଷ ! ଦିନଯାକ ତାଙ୍କୁ ନ ଭଜି ଉପାୟ କାହିଁ ଆମମାନଙ୍କର ?'

'କରେକ୍ଟ୍ !' ହଠାତ୍ ଥଟ୍ଟାଳିଆ ସ୍ୱରରେ ସମରେନ୍ଦ୍ର ଯୋଡିଲା, 'ଏଇ ପାଞ୍ଚ ମାସର ଚାକିରି ଭିତରେ ମୁଁ ଗୋଟାଏ ବିଷୟ ଜାଣିନେଇଛି । ଏ ଅଫିସ୍‌ରେ କାମ କଲେ ଈଶ୍ୱରପ୍ରାପ୍ତି ସୁନିଶ୍ଚିତ । ଖ୍ରୀଷ୍ଟିଆନ୍ ଠାକୁର ହୁଅନ୍ତୁ ନା କାହିଁକି । ... ଦିନକୁ କେତେ ଥର ଆମେ 'ଯୀଶୁ', 'ଯୀଶୁ' – କହି ଭଜି ହେଉ କୁହନ୍ତୁ ତ !'

'ଖ୍ରୀଷ୍ଟିଆନ୍ ଠାକୁର କହୁଛ କାହିଁକି ? ଯୀଶୁ ତ ଖ୍ରୀଷ୍ଟିଆନ୍ ନୁହଁନ୍ତି ।' ରଫିକ୍ କହିଲା ।

ଶାଶ୍ୱତୀର କଫି କପ୍ ଓଠ ପାଖରେ ଅଟକିଗଲା । ମୁହଁ ବୁଲାଇ ସେ ରଫିକ୍‌କୁ କହିଲା, 'ଯୀଶୁ ପୁଣି ଖ୍ରୀଷ୍ଟିଆନ୍ ନୁହଁନ୍ତି ! କିଏ କହିଲା ?'

'ମୁଁ କହୁଛି ।'

'ତୁମେ ଜାଣିଲ କେମିତି ? ମୁଁ ତ ସବୁ କ୍ରିସ୍‌ମାସ୍‌ରେ ତାଙ୍କୁ ଶୁଭକାମନା ଜଣାଏ । ଉତ୍ତରରେ ସେ ବି ଧନ୍ୟବାଦ ଜଣାଏ ।' ଶାଶ୍ୱତୀ ସ୍ୱରରେ ଆପତ୍ତି ।

'କ୍ରିସ୍‌ମାସ୍‌ର ଶୁଭକାମନା ତ ସମସ୍ତେ ସମସ୍ତଙ୍କୁ ଜଣାନ୍ତି । ଆପଣ ମତେ 'ମେରି କ୍ରିସ୍‌ମାସ୍' ଜଣାଇ ଦେଖନ୍ତୁ ନା, ମୁଁ ବି କହିବି– ଥ୍ୟାଙ୍କ୍ ୟୁ ।' ରଫିକ୍ ମହମ୍ମଦ କହିଲା ।

ସତ କଥା ।

'ହେଲେ ତୁମେ ଜାଣିଲ କେମିତି ?' ଆଉ ଥରେ ଶାଶ୍ୱତୀ ପଚାରିଲା ।

'ନିଜେ ଯୀଶୁ କହିଛନ୍ତି ମତେ', ରଫିକ୍ ଉତ୍ତର ଦେଲା, 'ସ୍କୁଟର୍‌ରେ ଯିବା-ଆସିବା କରିବାବେଳେ କେତେ ଆଡ଼ର କେତେ କଥା ଆମର ହେଉଥିଲା । ସେତେବେଳେ ମୁଁ ଥରେ ତାଙ୍କୁ ପଚାରିଥିଲି ସେ କ୍ୟାଥୋଲିକ୍ ନା ପ୍ରୋଟେଷ୍ଟାଣ୍ଟ୍ । ସେଇଠୁଁ ସେ କହିଥିଲେ ଯେ ସେ ଖ୍ରୀଷ୍ଟିଆନ୍ ନୁହଁ, ହିନ୍ଦୁ । ... ଜନ୍ମପରେ ତାଙ୍କର ବୁଆଡ଼େ ବଞ୍ଚିବାର ଆଶା ଥିଲା ବହୁତ କମ୍ । ଜଣେ ଖ୍ରୀଷ୍ଟିଆନ୍ ଡାକ୍ତରଙ୍କ ଚେଷ୍ଟାରେ ସେ ବଞ୍ଚିଗଲେ । ତାଙ୍କ ନାଁ ଅନୁସାରେ ତାଙ୍କ ବାପା ମା' ପୁଅର ନାଁ ରଖିଥିଲେ ଯୀଶୁ ।'

ଶାଶ୍ୱତୀ ଅବାକ୍ । ଯୀଶୁ ନାମଧାରୀ ମଣିଷଟି ଯୀଶୁ ପଦାବଲମ୍ବୀ ନୁହଁ ? ଏତେ ବର୍ଷ ଭିତରେ ସେ ଏଇ କଥାଟି କେମିତି ଜାଣି ପାରିନି ! କେବଳ ସେ କାହିଁକି, ରଫିକ୍ ବ୍ୟତୀତ ଆଉ କେହି ଜାଣନ୍ତି କି ?

ଏହାରି ଭିତରେ କ୍ରିସ୍‌ମାସ୍ ଆସି ଚାଲିଗଲା । ତଥାପି ନ୍ୟାସ୍‌ନାଲ୍ ସ୍କୁଲ୍‌ରୁ କୌଣସି ଖବର ନାହିଁ । ଯୀଶୁଙ୍କୁ ଫୋନ୍ କରିବ କି ଶାଶ୍ୱତୀ ?

'ଅପେକ୍ଷା କରିଯାଅ କିଛି ଦିନ । ଏବେ ତ ସ୍କୁଲ୍ ଅଫିସ୍ ବନ୍ଦ ଥିବ ।' ପ୍ରବୀର ଅଟକେଇ ଦେଲା ।

ପୁଣି କଟିଗଲା ଗୋଟାଏ ସପ୍ତାହ । ନୂଆ ବର୍ଷ ଆସିଗଲା । ଯଦିଓ ସ୍କୁଲ୍ ସବୁ ଖୋଲିବ ଜାନୁଆରୀ ପାଞ୍ଚରେ, ସ୍କୁଲ୍ ଅଫିସ୍ ନିଶ୍ଚୟ ଖୋଲିଯାଇଛି ଏହା ଭିତରେ । ନା, ଶାଶ୍ୱତୀ ଆଉ ଅପେକ୍ଷା କରିପାରିବନି । ଆଜି ଅଫିସ୍‌ରେ ଯୀଶୁଙ୍କୁ ଧରିବ ସେ ।

ହେଲେ କାହିଁ ଯୀଶୁ ? ତା' ଆସିଷ୍ଟାଣ୍ଟ ଜଣେଇଲା ଯେ ଯୀଶୁ ଆଜି ଛୁଟିରେ ।

ଛୁଟି !! ଯୀଶୁ ପୁଣି କେବେ ଛୁଟି ନିଏ ନା କ'ଣ ? ତା' ପୁଣି ବର୍ଷ ଆରମ୍ଭରୁ ? ନା, କାଲି ନିଶ୍ଚୟ ନୂଆବର୍ଷକୁ ସ୍ୱାଗତ କରିବା ପାଇଁ ରାତି ଡେରି ଯାଏଁ ପାର୍ଟି କରିଛି ସେ । ସକାଳୁ ହୁଏତ ଉଠିବା ସମ୍ଭବ ହୋଇନି । ବାଧ୍ୟରେ ଛୁଟି । ଅଫିସ୍‌ର କଲିଗ୍ ହିସାବରେ ସିନା ଯୀଶୁକୁ ସେ ଜାଣେ, କିନ୍ତୁ ମଣିଷଟିର ବ୍ୟକ୍ତିଗତ ରୁଚି-ଅରୁଚି ଯେ ତା'ର ସମ୍ପୂର୍ଣ୍ଣ ଅଜଣା ।

ଆଉ ଅଧିକ ଚିନ୍ତା ନକରି ଶାଶ୍ୱତୀ ଯୀଶୁକୁ ମୋବାଇଲ୍‌ରେ ଫୋନ୍ ଲଗେଇଲା । ନୂଆବର୍ଷର ଶୁଭେଚ୍ଛା ଜଣେଇବା ବାହାନା କରି ତ ଫୋନ୍ କରାଯାଇପାରେ ।

ବେଶ୍ କେତେ ଥର ବାଜିବା ପରେ ନିଜ ମୋବାଇଲ୍ ଫୋନ୍ ଉଠେଇଲା ଯୀଶୁ । 'ଗୁଡ୍ ମର୍ଣ୍ଣିଙ୍ଗ୍, ମ୍ୟାଡମ୍ ।'

ସ୍ୱର ଅନ୍ୟରକମ ମନେହେଉଛି ନା ? କେମିତି ବସା ବସା । ରାତି ଅନିଦ୍ରା ?

'ଗୁଡ୍ ମର୍ଣ୍ଣିଙ୍ଗ୍ ଯୀଶୁ । ହ୍ୟାପି ନିଉ ଇଅର୍ ଟୁ ୟୁ ।'

'ସେମ୍ ଟୁ ୟୁ, ମ୍ୟାଡମ୍ ।'

'ନିଦରୁ ଉଠେଇ ଦେଲି ?'

'ନା, ଶୋଇନି ଏପର୍ଯ୍ୟନ୍ତ ।' ସେଇଥିପାଇଁ ଏମିତି ଶୁଖିଲା ତା' ସ୍ୱର ? ରାତିଯାକ ଅନିଦ୍ରା ? ବାଃ, ବେଶ୍ ପାର୍ଟି କରିପାରେ ତା'ହେଲେ ଯୀଶୁ !

ରାତିର ଆଲୋଚନାକୁ ନ ଯାଇ ଶାଶ୍ୱତୀ ଏଥର ନିଜ କଥାକୁ ଆସିଲା । 'ନ୍ୟାସ୍‌ନାଲ୍ ସ୍କୁଲ୍‌ରୁ ଏପର୍ଯ୍ୟନ୍ତ କିଛି ଖବର ଆସିଲା ନାହିଁ, ଯୀଶୁ । ତୁମ ଭାଉଜଙ୍କୁ ଟିକିଏ ପଚାରିବ ?'

'ଭାଉଜଙ୍କୁ !!' ଯେମିତି ଭାଉଜଟି କିଏ ସେ ଜାଣିପାରୁନି, ସେଇ ସ୍ୱରରେ ପଚାରିଲା ଯୀଶୁ ।

'ହଁ, ତୁମର ସେଇ ଭାଉଜ, ଯିଏ ନ୍ୟାସ୍‌ନାଲ୍ ସ୍କୁଲ୍‌ର ଅଫିସ୍‌ରେ କାମ କରନ୍ତି ...' ଶାଶ୍ୱତୀ ମନେ ପକାଇଦେଲା ।

'ଓ ଆଚ୍ଛା । ବୁଝିକରି ଫୋନ୍ କରିବି, ମ୍ୟାଡମ୍ ।'

ସେଦିନ କିନ୍ତୁ ଫୋନ୍ ଆସିଲା ନାହିଁ ଯୀଶୁର । ପରଦିନ ଯେତେବେଳେ ଦୁଇଟା ବେଳେ ହାତରେ ମୋବାଇଲ୍ ଫୋନ୍ ଧରି ପୁଣି ଫୋନ୍ କରିବ କି ନାହିଁ ଶାଶ୍ୱତୀ ଭାବି ହେଉଛି, ଠିକ୍ ସେତିକି ବେଳେ ଯୀଶୁର ଫୋନ୍ ।

'କ'ଣ ହେଲା ଯୀଶୁ ?'

'ଏଇମିତି ସେଶନ୍ ମଝିରେ ଛାତ୍ର ବାଛିବା ଦାୟିତ୍ୱ ସ୍କୁଲ୍ ପ୍ରିନ୍‌ସିପାଲ୍‌ଙ୍କର ।

ସେ ଛୁଟିରେ ଯାଇଛନ୍ତି ଏବେ । ସାତ ତାରିଖ ପରେ ସେ ଫେରିଲେ ଯାଇ ଜଣାପଡ଼ିବ ।' ପୂର୍ବ ଦିନ ଭଳି ଯୀଶୁର ଶୁଖିଲା ସ୍ୱର । ଏପର୍ଯ୍ୟନ୍ତ ରାତି ଅନିଦ୍ରା କ୍ଳାନ୍ତି ଯାଇନି ?

'ତୁମେ ଟିକିଏ ବୁଝି ମତେ ଜଣେଇବ, ଯୀଶୁ ?'

ଯୀଶୁ ଚୁପ୍ ରହିଲା । ସବୁଥର ଭଳି ଚଟ କରି କହିଲା ନାହିଁ, 'ନୋ-ପ୍ରବ୍ଲେମ୍, ମ୍ୟାଡମ୍', ବରଂ ରହି ରହି କହିଲା, 'ଭାଉଜଙ୍କୁ ଆପଣଙ୍କ ନମ୍ବର ଦେଇଦେଇଛି । ସେ ନିଜେ ଫୋନ୍ କରିବେ କହିଛନ୍ତି ।' ଏଇ ବୋଧହୁଏ ପ୍ରଥମଥର ପାଇଁ ନିଜ ଦାୟିତ୍ୱ ଆଉଜଣଙ୍କ କାନ୍ଧରେ ପକେଇଦେଲା ଯୀଶୁ । ଶାଶ୍ୱତୀକୁ କଥାଟି ଟିକିଏ ଅସ୍ୱାଭାବିକ ଲାଗିଲା, କିନ୍ତୁ ସେ ଆଉ କିଛି ପଚାରିଲା ନାହିଁ । ଏବେ ତ ପ୍ରିନ୍ସିପାଲ୍‌ଙ୍କର ଫେରିବା ପାଇଁ ଅପେକ୍ଷା କରିବାକୁ ହିଁ ହେବ ।

ସ୍କୁଲ୍ ଖୋଲିଗଲା । ଅନ୍ୟନ୍ୟୋପାୟ ହୋଇ ରୋହନକୁ ପୁରୁଣା ସ୍କୁଲ୍‌କୁ ପଠେଇବାକୁ ହେଲା । ଯୀଶୁକୁ ବେଳେବେଳେ ଅଫିସ୍‌ରେ ଦେଖୁଛି ଶାଶ୍ୱତୀ, କିନ୍ତୁ ମଣିଷଟି ଯେମିତି ଧରାଛୁଆଁ ଦେବାକୁ ନାରାଜ । ଶାଶ୍ୱତୀକୁ ଦେଖି ନ ଦେଖିବା ଭଳି ରହିଯାଉଛି । କୌଣସି ପ୍ରଶ୍ନ ନାହିଁ, କଥା ନାହିଁ । ଲୋକଟିର ପରୋପକାର କରିବାର ନିର୍ଦ୍ଧାରିତ ପରିମାଣ ବୋଧହୁଏ ଶେଷ ! ବିରକ୍ତିରେ ଶାଶ୍ୱତୀ ପ୍ରବୀରକୁ ଅନ୍ୟ ସ୍କୁଲ୍‌ମାନଙ୍କରେ ବୁଝାବୁଝି କରିବାକୁ କହିଦେଲା । ନିଜେ ବି ଏଠି ସେଠି ପଚରାପଚିରି ଆରମ୍ଭ କରିଦେଲା । ଯୀଶୁ ସାହାଯ୍ୟ ବିନା କ'ଣ କୌଣସି କାମ ଅଟକିଯିବ' ନା ସହରରେ ସ୍କୁଲ୍‌ମାନଙ୍କର ଅଭାବ !

ସେଦିନ ସେଥିପାଇଁ ହଠାତ୍ ନ୍ୟାସ୍‌ନାଲ୍ ସ୍କୁଲ୍‌ରୁ ଯୀଶୁ ଭାଉଜଙ୍କର ଫୋନ୍ ପାଇ ସେ ଅବାକ୍ ହୋଇଗଲା ।

'ପ୍ରିନ୍ସିପାଲ୍ ଫେରିଛନ୍ତି । ସେ କାଲି ଆପଣମାନଙ୍କୁ ଦେଖା କରିବାକୁ ଚାହୁଁଛନ୍ତି ।'

'କାଲି ତ ମଙ୍ଗଳବାର । ରୋହନ୍‌ର ସ୍କୁଲ୍ ଅଛି ...'

'ନା ନା, ରୋହନ୍‌କୁ ନୁହଁ । ଆପଣଙ୍କୁ ଓ ଆପଣଙ୍କ ସ୍ୱାମୀଙ୍କୁ ।'

ଶାଶ୍ୱତୀ ଚିନ୍ତାରେ ପଡିଗଲା । ସେ କିଛି କହିବା ଆଗରୁ ଭରସା ଦେବା ଭଳି ଯୀଶୁ ଭାଉଜ କହିଲେ, 'ଆପଣ ଚିନ୍ତା କରିବେନି, ମ୍ୟାଡମ୍ । ... ମୋର ଅବଶ୍ୟ ଆପଣଙ୍କୁ କହିବା କଥା ନୁହଁ, କିନ୍ତୁ ପ୍ରିନ୍ସିପାଲ୍ ଫେଭରେବଲ୍ ଡିସିସନ୍ ନେଇଛନ୍ତି । କେବଳ ଫର୍ମାଲିଟି ପାଇଁ ଥରେ ଦେଖା କରିବାକୁ ଚାହୁଁଛନ୍ତି । –

'ହେଲେ ମୋ' ସ୍ୱାମୀ ଟୁର୍‌ରେ ।' ପ୍ରବୀର ପୁଣି ଟୋକିଓରେ ଯାଇ ବସିଛି । ପନ୍ଦର ଦିନ ଆଗରୁ ଫେରିବାର ଆଶା ନାହିଁ । ଦିନେ ଦୁଇ ଦିନ କଥା ହୋଇଥାଆନ୍ତା କି ସ୍କୁଲ୍ ଅଫିସ୍‌ରେ ଅନୁରୋଧ କରି ଶାଶ୍ୱତୀ ତାରିଖ ବଦଳେଇ ନେଇଥାଆନ୍ତା । କିନ୍ତୁ ପନ୍ଦର ଦିନ !

'ଓ । ତା'ହେଲେ ... ତା'ହେଲେ ଆପଣ ଏକା ଆସନ୍ତୁ । କିନ୍ତୁ ସାଙ୍ଗରେ ଆଉ କାହାକୁ ନେଇକରି ଆସିବେ, ନହେଲେ ଦୌଡ଼ାଦୌଡ଼ି କରି ହଇରାଣ ହେଇଯିବେ ।' ସ୍ୱର କମେଇନେଇ ସେ ଯୋଡିଲେ, 'ଜାଣନ୍ତି ତ ଆଡ୍‌ମିସନ୍ କଥା । ପୁରୁଣା ସ୍କୁଲ୍‌ରୁ ଟି.ସି, କଣ୍ଡକ୍ଟ୍ ସାର୍ଟିଫିକେଟ୍ ଅଣାଅଣି ... । ବ୍ୟାଙ୍କ୍‌ରୁ ଡିମାଣ୍ଡ୍ ଡ୍ରାଫ୍ଟ୍... । କାଲି ସାଢେ ଦଶଟା ବେଳେ ତା'ହେଲେ ... ।'

ଆନନ୍ଦର ଝଲକଟିଏ ଛୁଇଁଗଲା ଶାଶ୍ୱତୀକୁ । ଆଡ୍‌ମିସନ୍ ! ଆଡ୍‌ମିସନ୍ କଥା କହିଲେ ନା ଭଦ୍ରମହିଳା ! ତାହେଲେ ତ ତାରିଖ ବଦଳେଇବାର ପ୍ରଶ୍ନ ଉଠୁନି । ଯେତେ ଶୀଘ୍ର ଆଡ୍‌ମିସନ୍ କାମ ଶେଷ ହେବ, ଭଲ । ଟିକିଏ ନିଶ୍ଚିନ୍ତ ହୋଇପାରିବ ସେ । ହେଲେ ତା' ପାଇଁ ଦୌଡାଦୌଡି କରିବ କିଏ ?

ଅଗତ୍ୟା ଅନିଚ୍ଛାରେ ଯୀଶୁକୁ ଫୋନ୍ କଲା ସେ ।

'ଯୀଶୁ, ତୁମ ଭାଉଜଙ୍କର ଫୋନ୍ ଆସିଥିଲା । କାଲି ପ୍ରିନ୍‌ସିପାଲ୍ ଦେଖା-କରିବାକୁ ଚାହୁଁଛନ୍ତି । ତା'ପରେ କୁଆଡ଼େ ସାଙ୍ଗେସାଙ୍ଗେ ଆଡ୍‌ମିସନ୍ କରିବାକୁ ହେବ ରୋହନ୍‌ର । ପ୍ରବୀର ଟୋକିଓରେ । ତୁମେ ଟିକିଏ ଆସିବ ମୋ ସାଙ୍ଗରେ ? କାଗଜପତ୍ର ପାଇଁ ପୁରୁଣା ସ୍କୁଲ୍ ଦୌଡାଦୌଡି କରିବାକୁ ହେବ ।'

ଏଥରକ ଶାଶ୍ୱତୀ ଶୁଣିବାକୁ ଆଶା ରଖିଥିଲା, 'ସିଓର୍, ମ୍ୟାଡମ୍ ।' କିନ୍ତୁ ଯୀଶୁ ସେଭଳି କିଛି କହିଲା ନାହିଁ । ବରଂ କେମିତି ଶୁଖିଲା ଭାବରେ କହିଦେଲା, 'କାଲି ତ ଜମା ହେବନି । କାଲି ମୁଁ ଯାଇପାରିବିନି, ମ୍ୟାଡମ୍ । ସରି ।'

ଶାଶ୍ୱତୀ ଦେହରେ ରାଗ ଚରିଗଲା । 'ଓକେ ।' ଗୋଟିଏ ଶବ୍ଦରେ କଥା ଶେଷ କରିଦେଇ ଫୋନ୍ ବନ୍ଦ କରିଦେଲା ସେ । ମଣିଷ ଏମିତି ବଦଳି ଯାଇପାରେ ? ଏମିତି ଅହଙ୍କାରୀ ହୋଇଯାଇପାରେ ?

କିଛି ସମୟ ଗୁମ୍ ମାରି ବସିବା ପରେ ସମରେନ୍ଦ୍ରକୁ ଫୋନ୍ ଲଗେଇଲା ସେ । ଇଚ୍ଛା ନ ଥିଲେ ବି ଏଇ କଲିଗ୍‌ର ସାହାଯ୍ୟ ନେବାକୁ ହିଁ ପଡିବ ତାକୁ । ପରେ ଦିନେ ହୁଏତ ଏଇ ସାହାଯ୍ୟର ମୂଲ୍ୟ ମାଗିନେବ ସେ । କିନ୍ତୁ ବର୍ତ୍ତମାନ ପାଇଁ ଶାଶ୍ୱତୀ ନାଚାର ।

ସମରେନ୍ଦ୍ର ଦୌଡ଼ାଦୌଡି କରିଲା ବିନା ଆପତ୍ତିରେ । ନ୍ୟାସ୍‌ନାଲ୍ ସ୍କୁଲ୍‌ରେ ରୋହନ୍‌ର ଆଡମିସନ୍ ବି ହୋଇଗଲା । କିନ୍ତୁ ଶାଶ୍ୱତୀ ମନରେ ଯୀଶୁକୁ ନେଇ ଯେଉଁ ରାଗ ରହିଯାଇଥିଲା, ତା' ଆଉ ଲିଭିଲା ନାହିଁ ।

ଜାନୁଆରୀ ତୃତୀୟ ସପ୍ତାହରେ ସବୁ ବର୍ଷ ଭଳି ସେମାନଙ୍କ କମ୍ପାନୀର ପ୍ଲାନ୍ ମିଟିଙ୍ଗ୍ ଆରମ୍ଭ ହୋଇଗଲା । କାହାକୁ ନିଶ୍ୱାସ ନେବାକୁ ବେଳ ନାହିଁ । ଶେଷଦିନ ତ ରାତି ସାଢ଼େ ନଅଟା ବାଜିଗଲା ଅଫିସ୍‌ରେ । ଏତେ ରାତିରେ ଅଟୋ ନେବାକୁ ହେବ ତାକୁ ? ମିଳିବ ତ ? ଶାଶ୍ୱତୀ ବିବ୍ରତ । ଏତେ ଦିନପାଇଁ ଟୋକିଓରେ କାହିଁକି ବସିଛି ପ୍ରବୀର ?

'ମୁଁ ଆପଣଙ୍କୁ ଘରେ ଛାଡି ଦେବି କି ମ୍ୟାଡମ୍ ?' ଚାଲି ଯାଉ ଯାଉ ତା' ପାଖରେ ମୋଟର୍‌ସାଇକେଲ୍ ଅଟକେଇ ହଠାତ୍ ରଫିକ୍ ପଚାରିଲା ।

'ଅସୁବିଧା ହେବନି ତ ?'

'ନା, ନା, ଅସୁବିଧା କ'ଣ ? ଆସନ୍ତୁ ।'

ଅଫିସ୍‌ରୁ ଶାଶ୍ୱତୀ ଘର ମାତ୍ର ପନ୍ଦର ମିନିଟ୍ ବାଟ । ଅଥଚ ସେଇ ସମୟ ଭିତରେ ସଂସାରଯାକର କଥା କହିପକେଇବ ଯେମିତି ରଫିକ୍ ।

'ରେଖାର ନିର୍ବନ୍ଧ ... ତାମିଲ୍ ପିଲା ... ମହେଶ ହଣ୍ଡା ସିଟି ... ସୁନେଲୀ ... ହସ୍‌ପିଟାଲ୍ ଯାଇଥିଲି ... ସବିତାଙ୍କର କେମୋ ... ଆଗରୁ ଦୁଇଥର ...'

ମୋଟର୍‌ସାଇକେଲ୍‌ର ଗର୍ଜନ ଟପି ଶାଶ୍ୱତୀ କାନରେ ଅଧା କଥା ପଡୁଥିଲା, ଅଧା ପଡୁ ନ ଥିଲା । ହଠାତ୍ ତା' କାନ ସଜାଗ ହୋଇଗଲା ଯେମିତି । ଏ କାହା କଥା କହୁଛି ରଫିକ୍ ? ଏଇ ନାଁ ତ ଆଗରୁ ଶୁଣିନି ସେ ?

'କାହାକୁ ଦେଖିବାକୁ ହସ୍‌ପିଟାଲ୍ ଯାଇଥିଲ, ରଫିକ୍ ?'

'ସବିତା ।'

'ସବିତା କିଏ ?'

'ଆପଣ ସବିତାଙ୍କୁ ଚିହ୍ନନ୍ତିନି ?' ଏଗାର ବର୍ଷ ଭିତରେ କେବେ ଏଇ ନାଁଟି ଅଫିସ୍‌ରେ ଶୁଣିନି ଶାଶ୍ୱତୀ । କିଏ ଏଇ ସବିତା ?

ଘର ସାମ୍ନାରେ ରଫିକ୍ ମୋଟର୍ ସାଇକେଲ୍ ଅଟକେଇଲା । 'ସବିତା ପରା ଯୀଶୁଙ୍କ ସ୍ତ୍ରୀ ।'

ଯୀଶୁର ସ୍ତ୍ରୀ ?

'ଦେହ ଟିକିଏ ଟିକିଏ ଭଲ ରହୁ ନ ଥିଲା । ଜ୍ୱର ରହୁଥିଲା ସବୁବେଳେ ।

ଦୁଇ ମାସ ତଳେ ଅବସ୍ଥା ବେଶୀ ଖରାପ ହେବାରୁ ଡାକ୍ତର ପାଖକୁ ଗଲେ । ତା'ପରେ ବିଭିନ୍ନ ପରୀକ୍ଷାନିରୀକ୍ଷା । ଜଣାପଡିଲା କ୍ୟାନ୍‌ସର୍ । ସାଙ୍ଗେ ସାଙ୍ଗେ ସର୍ଜରୀ ହେଲା । ତା'ପରେ କେମୋଥେରାପି । ... ହେଲେ କିଛି ଲାଭ ହେବା ଭଳି ଜଣାପଡୁନି । ... କ'ଣ ଯେ ହେବ ? ତିନିଟା ପିଲା ଯୀଶୁଙ୍କର । ସ୍କୁଲ୍ ପାସ୍ କରିନାହାନ୍ତି ଏପର୍ଯ୍ୟନ୍ତ ।'

ଯୀଶୁର ପିଲା ବି ଅଛନ୍ତି ? ତିନିଟା ପିଲା ? ଆଗରୁ କେବେ କାହିଁକି ଏସବୁ ବିଷୟରେ ଜାଣିବାକୁ ଆଗ୍ରହ ଦେଖାଇନି ଶାଶ୍ୱତୀ ? ସତରେ କ'ଣ ଏମିତି ବ୍ୟସ୍ତ ରହିଯାଉଥିଲା ସେ ?

ମୋଟର୍ ସାଇକେଲ୍ ରହିବା ଶବ୍ଦରେ ଝରକା ପାଖକୁ ଚାଲି ଆସି ପାଟି କରୁଥିଲା ରୋହନ୍, 'ମା..ମା ...'

ହେଲେ ଶାଶ୍ୱତୀର ପାଦଦୁଇଟି ଯେମିତି ପଥର ହୋଇଯାଇଥିଲା । ସବିତାର କ୍ୟାନ୍‌ସର୍ ଦୁଇ ମାସ ତଳେ ଜଣାପଡିଲା ? ଦୁଇମାସ ? ଅର୍ଥାତ୍ ସେ ଓ ପ୍ରବୀର ଯେତେବେଳେ ରୋହନ୍‌ର ସ୍କୁଲ୍ ବଦଳେଇବା ଭଳି ସାମାନ୍ୟ ଘଟଣା ନେଇ ବିବ୍ରତ ହୋଇପଡିଥିଲେ, ସେତେବେଳେ ଯୀଶୁକୁ କ୍ୟାନ୍‌ସର୍‌ର ସାମ୍ନା କରିବାକୁ ହୋଇଥିଲା ! ସ୍ତ୍ରୀର ସମ୍ଭାବ୍ୟ ମୃତ୍ୟୁ ସାଙ୍ଗରେ ଯୁଦ୍ଧ କରିବା ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ହେଉଥିଲା !

ବର୍ଷର ଶେଷ ଦିନଟି କାହିଁକି ଶୋଇ ନ ଥିଲା ଯୀଶୁ ? ସ୍ତ୍ରୀ ପାଖରେ ସାରା ରାତି ବସି ରହିଥିଲା କି ହସ୍‌ପିଟାଲ୍‌ରେ ? ତା' ସାଙ୍ଗରେ ସେଦିନ ନ୍ୟାସ୍‌ନାଲ୍ ସ୍କୁଲ୍ ଯିବାକୁ ମନା କାହିଁକି କରିଦେଇଥିଲା ସେ ? ତା' ସ୍ତ୍ରୀର କେମୋଥେରାପି ଥିଲା କି ସେଦିନ ?

ଆଃ !

ଜଣକ ସାଙ୍ଗରେ ଏଗାର ବର୍ଷ ଧରି ଗୋଟିଏ ଅଫିସ୍‌ରେ କାମ କରିଲା, ସବୁବେଳେ ତା'ଠୁଁ ସାହାଯ୍ୟ ମାଗିନେଲା, ଅଥଚ ସେଇ ମଣିଷଟି ସମ୍ପର୍କରେ କିଛି ବି ଜାଣିବାର ଚେଷ୍ଟା କଲା ନାହିଁ ?

ଶାଶ୍ୱତୀ ହାତ ଘଣ୍ଟାକୁ ଚାହିଁଲା । ଏବେ ବି ଦଶଟା ବାଜିନି । କ'ଣ ବହୁତ ଡେରି ହୋଇଯାଇଛି ?

ଗୋଟିଏ ହୋସ୍‌ରେ ପର୍ସ୍‌ରୁ ମୋବାଇଲ୍ ଫୋନ୍ କାଢିଲା ସେ ।



# ଅନ୍ତରାଳ

ସକାଳୁ ସକାଳୁ ଚାଲିଛି ମା’ ପୁଅଙ୍କର ପାଟିତୁଣ୍ଡ । ନୂଆ କଥା କିଛି ନୁହଁ । ଶନି ରବି ଦୁଇ ଦିନ ଛାଡିଦେଲେ ବାକୀ ପାଞ୍ଚ ଦିନର ଅତି ଜଣାଶୁଣା ରୁଟିନ୍ । କିନ୍ତୁ ପ୍ରସନ୍ନ ଆଜି ବିଗିଡି ଗଲା । ଦାନ୍ତ ଘଷୁ ଘଷୁ ବାଥ୍‌ରୁମ୍‌ରୁ ବାହାରି ଆସିଲା ସେ ।

‘କ’ଣ ହେଇଛି ?? ସକାଳୁ ଏତେ ପାଟିତୁଣ୍ଡ ନ କଲେ ହେଉନି ?’

‘କାହାକୁ ଭଲ ଲାଗୁଛି ମ ଏଇମିତି ପାଟିତୁଣ୍ଡ !’ ତମତମ ହେଇ କହିଲା ସ୍ୱାତୀ, ‘ତୁମେ ଆସି ସମ୍ଭାଳୁନ ତୁମ ଗୁଣମଣି ପୁଅକୁ !’

‘କ’ଣ ହେଇଛି ?’– ଆଉ ଥରେ ପ୍ରସନ୍ନ ପଚାରିଲା ।

କ’ଣ ହେଇଛି ! କାଲି ସ୍କୁଲ୍ ଗଲା ବେଳେ ପାଉଁରୁଟି ଖାଇବନି ବୋଲି ପାପୁ ଏମିତି କନ୍ଦାକଟା କଲା ଯେ ଆଜି ସକାଳୁ ଉଠି ନିଜର ସବୁ କାମ ଛାଡି ଲାଗିପଡି ପରଟା ତରକାରୀ କଲି । ଆଉ ଏ ନବାବ୍‌ଙ୍କ ନାତି କହୁଛନ୍ତି ତରକାରୀ ଖାଇବେନି, ପରଟା ସାଙ୍ଗରେ ଅଣ୍ଡା ଅମ୍‌ଲେଟ୍ ଦରକାର !’

‘ଓହୋ, କରିଦିଅ ଅମ୍‌ଲେଟ୍ । କେତେ ଆଉ ସମୟ ଲାଗିବ !’

‘ହ, ତୁମର କ’ଣ ଅଛି, ଅର୍ଡର୍ ହାଙ୍କି ଦେଲେ ହେଇଗଲା । ... ଅଣ୍ଡା ଥିଲେ ତ ଅମ୍‌ଲେଟ୍ କରିବି !’ ସ୍ୱାତୀ ବିରକ୍ତିରେ କହିଲା ।

‘ମୁଁ ଆଣିଦେଉଛି ଅଣ୍ଡା । ଘରଟାକୁ ସକାଳୁସକାଳୁ ଆଉ ମାଛହାଟ କରନି ।’ କୌଣସିମତେ ମୁହଁଟା ଧୋଇ ନେଇ ରାତି ପିନ୍ଧା ପାଇଜାମା ପଞ୍ଜାବୀରେ ପ୍ରସନ୍ନ ଘରୁ ବାହାରିଗଲା । ହାତରେ ସ୍କୁଟର୍ ଚାବି ।

ଭାଗ୍ୟକୁ ତାଙ୍କ ଗଳି ଶେଷ ମୁଣ୍ଡରେ ଛୋଟ ଚାହା ଦୋକାନଟିଏ । ପି.ୟୁ.ସି. ପରେ ଚାକିରି ବାକିରି ନ ମିଳିବାରୁ ଖୋଲି ବସିଛି ଏଇଠିକାର ପିଲାଟିଏ । ବଡ଼ ପରିଶ୍ରମୀ । ସକାଳ ଛଅଟା ବେଳେ ଖୋଲି ବସିଯାଏ ଦୋକାନ । ଆଗରୁ ସେ କେବଳ ଦେଶୀ ବିସ୍କୁଟ୍, କେକ୍ ରଖୁଥିଲା ଚାହା ସାଙ୍ଗରେ ଲୋକଙ୍କୁ ଦେବାକୁ । ଆଜିକାଲି ଜିନିଷ ସଂଖ୍ୟା ବଢିଲାଣି । ଗଳିର ଲୋକଙ୍କ ଚାହିଦା ଅନୁସାରେ

ପାଉଁରୁଟି, ଅଣ୍ଡା ସାଙ୍ଗକୁ ନୁଡଲ୍ସ, ଚିନି, ଲୁଣ, ତେଲ ବି ରଖିଲାଣି ।

ଦୁଇ ମିନିଟ୍‌ରେ ଫେରିଆସିଲା ପ୍ରସନ୍ନ । ସେତେବେଳକୁ ସ୍ୱାତୀ ଅମ୍ଲେଟ୍ ପାଇଁ ପିଆଜ କାଟିବା ମଧ୍ୟ ଆରମ୍ଭ କରିନି । 'ଏତେ ଶୀଘ୍ର ନେଇଆସିଲ ଅଣ୍ଡା ?' – ଅବାକ୍ ଭାବରେ ସେ ପଚାରିଲା ।

ଡାଇନିଙ୍ଗ୍ ଟେବୁଲ୍‌ର ଚୌକିରେ ଫାଁ ମାରି ବସିଯାଇ ପ୍ରସନ୍ନ କହିଲା, 'ଗଲି ଆଉ କେତେବେଳେ ? ସ୍କୁଟର୍ ସାମ୍ନା ଚକ ପଙ୍କଚର୍ ।'

'ଚକ ପଙ୍କଚର୍ !! ପ୍ରଭୁ ହେ !' ରୋଷେଇ ଘରୁ ବାହାରି ଆସିଲା ସ୍ୱାତୀ, 'କ'ଣ ହେବ ଏବେ !' ପ୍ରସନ୍ନ ଭଳି ଧସି ଯାଇ ସେ ଆଉ ଗୋଟିଏ ଚୌକିରେ ବସିଗଲା ।

ଚିନ୍ତାର ବିଷୟ ନିଶ୍ଚିତ ଭାବରେ । ଗତ କାଲି ସଂଧ୍ୟା ବେଳେ ସ୍ୱାତୀକୁ ତା' ବ୍ୟାଙ୍କରୁ ନେଇ ଘରକୁ ଫେରିବା ବାଟରେ ସ୍କୁଟର୍‌ର ପଛ ଚକ ପଙ୍କଚର୍ ହୋଇଯାଇଥିଲା । ପ୍ରସନ୍ନ ଷ୍ଟେପ୍‌ନି ତ ବଦଳେଇ ଦେଇଥିଲା, କିନ୍ତୁ ପଙ୍କଚର୍ ଆଉ ଠିକ୍ କରି ପାରିନି । ଆଜି ସଜାଡିବ ବୋଲି ଭାବି ରଖିଥିଲା । ଅଥଚ ଦେଖ, ଆଜି ସକାଳୁ ସକାଳୁ ଏଇ କାଣ୍ଡ !

'କ'ଣ ହେବ ଏବେ ?' ସ୍ୱାତୀ ବ୍ୟସ୍ତ ଭାବରେ ଆଉ ଥରେ ପଚାରିଲା ।

'କ'ଣ ଆଉ ହେବ ! ଅଟୋ ରିକ୍‌ସା ନେଇ ଯିବାକୁ ହେବ !'

'ଆଜି ପରା ଅଟୋବାଲାଙ୍କର ଷ୍ଟ୍ରାଇକ୍ ।' ସ୍ୱାତୀ ମନେ ପକାଇଦେଲା ।

ସତ କଥା ତ । କିଛି ଦିନ ଧରି ଭଡା ବଢେଇବା ନେଇ ମିଟିଙ୍ଗ୍, ଆଲୋଚନା ଚାଲିଥିଲା । କିଛି କୁଆଡୁ ନ ହେବାରୁ ଆଜି ଷ୍ଟ୍ରାଇକ୍ ଘୋଷଣା କରିଦେଇଛି ଅଟୋବାଲାଙ୍କ ଆସୋସିଏସନ୍ ।

ଆଜି ହେବାର ଥିଲା !

ଏବେ ଉପାୟ ? ଶେଷରେ କ'ଣ ସ୍ୱାତୀର ବ୍ୟାଙ୍କ୍ ଆଉ ତା' ଅଫିସ୍‌ରୁ ଛୁଟି ନେବାକୁ ହେବ ? ପ୍ରସନ୍ନ ଭାବି ହେଲା ଟିକିଏ ।

'ଶୁଣ, ତୁମେ ଗୋଟିଏ କାମ କର । ଏଇଠି ନୂଆ ହେଇ ପ୍ରାଇଭେଟ୍ ଟ୍ୟାକ୍‌ସି କମ୍ପାନୀଟିଏ ଖୋଲିଛି । କିଛି ଦିନ ତଳେ କାଗଜରେ ବିଜ୍ଞାପନ ଦେଇଥିଲେ ସେମାନେ । ମୁଁ କ'ଣ ଭାବି ନମ୍ବରଟା ଲେଖି ରଖିଥିଲି । ସେଇଠୁ ଟ୍ୟାକ୍‌ସିଟିଏ ଏବେ ମଗେଇ ଦେଉଛି । ତୁମେ ବ୍ୟାଙ୍କ୍‌କୁ ଚାଲିଯାଅ । ମୁଁ ସ୍କୁଟର୍ ଚକ ସଜାଡି ଡେରିରେ ଅଫିସ୍ ଯିବି ।'

'ତୁମେ ଚକ ସଜାଡିବାକୁ ଯିବ କେମିତି ?'

'ମୁଁ ମୋହନକୁ କହି ଦେବି ଅଫିସ୍ ଯିବା ବାଟରେ ମତେ ଅବ୍‌ଦୁଲ୍‌ର ଗ୍ୟାରେଜ୍ ପାଖରେ ଛାଡିଦେବ । ଚକ ଠିକ୍ ହେଇଗଲେ ନିଜେ ଅବ୍‌ଦୁଲ୍ ମତେ ଘରେ ଛାଡି ଦେବ । ... ତୁମେ ମୋ କଥା ଭାବନି, ମୁଁ ଠିକ୍ ମ୍ୟାନେଜ୍ କରିଦେବି ।'

ସ୍ୱାତୀ ସତରେ ଆଉ ଭାବିଲା ନାହିଁ । ସେମାନଙ୍କ ଘର ପାଖରେ ରହୁଥିବା ପ୍ରସନ୍ନର କଲିଗ୍ ମୋହନ ସାହାଯ୍ୟ କରିବାକୁ ସବୁବେଳେ ପ୍ରସ୍ତୁତ । ସେ ହୁଏତ ପ୍ରସନ୍ନକୁ କେବଳ ଗ୍ୟାରେଜ୍‌ରେ ଛାଡିବନି । ଚକ ସଜଡ଼ା ହେବା ପର୍ଯ୍ୟନ୍ତ ଅପେକ୍ଷା କରି ପ୍ରସନ୍ନକୁ ଘରେ ହିଁ ଛାଡି ଦେଇଯିବ ।

'ମୁଁ ଯାଉଛି । ବାଏ ।' ବାପା ମା'ଙ୍କ ଦୁର୍ଭାବନା ଦେଖି ଅମ୍‌ଲେଟ୍‌ର ଜିଦି ଭୁଲି ଯାଇଛି ପାପୁ । ଚୁପ୍‌ଚାପ୍ ପରଟା ତରକାରୀ ଖାଇ ସ୍କୁଲ୍ ବାହାରିଗଲା ସେ ।

ଏଥର ତରବର ହୋଇ ଗାଧୁଆ ଘରେ ପଶିଲା ସ୍ୱାତୀ ।

ଠିକ୍ ସାତଟା ପଚିଶରେ ଆସିଗଲା ଟ୍ୟାକ୍‌ସି । ଘରୁ ବ୍ୟାଙ୍କ୍‌କୁ ଯିବାକୁ କୋଡିଏ ପଚିଶ ମିନିଟ୍ ଲାଗିଯାଏ । ସ୍ୱାତୀର ବ୍ୟାଙ୍କ ଖୋଲେ ଆଠଟାରେ । ଅନ୍ତତଃ ପନ୍ଦର ମିନିଟ୍ ଆଗରୁ ପହଞ୍ଚିବା କଥା । କିନ୍ତୁ ଆଜି ଆଉ ତା' ହେବନି । ଡେରି ହୋଇଯିବ ପାଞ୍ଚ ସାତ ମିନିଟ୍ । ମାସେ ତଳେ ଆସିଥିବା ନୂଆ ମ୍ୟାନେଜର୍ ହୁଏତ ବିରକ୍ତ ହିଁ ହେବେ । ଟିକିଏ ରାଗୀ ଲୋକ ମନେ ହୁଅନ୍ତି । ସମସ୍ତଙ୍କ ସାମ୍ନାରେ ପାଟି କରିବେନି ତ ?

ଚିନ୍ତିତ ଭାବରେ ଟ୍ୟାକ୍‌ସିର ପଛ କବାଟ ଖୋଲି ଭିତରେ ବସିଲା ସେ । ଗନ୍ତବ୍ୟ-ସ୍ଥଳ କହିବା ଆଗରୁ ପଛକୁ ମୁହଁ ନ ବୁଲାଇ ଡ୍ରାଇଭର୍‌ଟି କହିଲା, 'ମ୍ୟାଡମ୍, ବ୍ୟାଙ୍କ୍‌କୁ ଯିବେ ତ ?'

ଛମ୍ କରି ହେଇଗଲା ସ୍ୱାତୀର ଛାତି ଭିତରଟା । ସେ ଯେ ବ୍ୟାଙ୍କ୍‌ରେ କାମ କରେ ଜାଣିଲା କେମିତି ଲୋକଟି ! ଆଜିକାଲି ଖବରକାଗଜରେ ଏମିତି ଖବର କିଛି କମ୍ ଶୁଣିବାକୁ ମିଳୁନି ! ଚୁପ୍ ଚାପ୍ ଲୋକମାନଙ୍କର ସବୁ ଖବର ସଂଗ୍ରହ କରି ତା'ପରେ ଦିନେ ଆକ୍ରମଣ... । ପ୍ରସନ୍ନ ବି ସବୁବେଳେ ଆଗଚଲା । କି ଯେ ବିଜ୍ଞାପନ ଦେଖିଲା କାଗଜରେ, କୌଣସି ଖୋଜଖବର ନେବା କଥା ନାହିଁ, ସିଧା-ଡକେଇ ଦେଲା ଟ୍ୟାକ୍‌ସି ।

ହେଲେ ... ପ୍ରସନ୍ନ କହିଦେଇଛି କି ବ୍ୟାଙ୍କ୍ ଯିବା କଥା ? ନା, ତାକୁ ଏବେ ଆଉ ପଚାରି ହେବନି । ସକାଳର ତରବରରେ ମୋବାଇଲ୍‌ଟା ବି ବୋଧହୁଏ ଘରେ ଛାଡି ଆସିଲା ସେ ।

'କ'ଣ ହେଲା ମ୍ୟାଡମ୍, ବ୍ୟାଙ୍କ୍‌କୁ ଯିବେ ତ ?' ଗାଡି ଗଡିବା ଆରମ୍ଭ କରିଛି । ତଥାପି ଖାଲି ରାସ୍ତାରୁ ଆଖି କାଢି ମୁହଁ ପଛକୁ ବୁଲେଇ ଆଉ ଥରେ ପ୍ରଶ୍ନ କଲା ଡ୍ରାଇଭର୍ ।

'ଆରେ ! ଆପଣ !' – ଏତେବେଳକୁ ସ୍ୱାତୀର କିଛିଟା ଅସ୍ୱସ୍ତି କଟିଛି । ଡ୍ରାଇଭର୍‌ର ଧଳା ୟୁନିଫର୍ମ ବଦଳରେ ଖବରକାଗଜ ପ୍ରିଣ୍ଟର ଅଜବ ସାର୍ଟ୍ ପିନ୍ଧିଥିବା ଲୋକଟିକୁ ବ୍ୟାଙ୍କ୍‌ରେ ବେଶ୍ କେତେ ଥର ଦେଖିଛି ସେ । ନାଁ ଜଣା ନାହିଁ । ତେବେ ମୁହଁ ଚିହ୍ନା । ଦେହରେ ସବୁବେଳେ ସେଇ ଏକା ରକମର ସାର୍ଟ୍ । କାନରେ ନୋଳି । ପାଟିରେ ପାନ । ଥରେ ଦେଖିଲେ ମଣିଷର ମନେ ରହିବ । ଆଉ ସ୍ୱାତୀ ତ ବୋଧହୁଏ ତାକୁ କେଇ କେଇ ସପ୍ତାହର ଅନ୍ତରରେ ବ୍ୟାଙ୍କ୍‌ରେ ଦେଖିଛି ବେଶ୍ କେତେ ଥର । ତା' ସାଙ୍ଗରେ କେବେ କୌଣସି ଆବଶ୍ୟକତା ପଡିନି ଅବଶ୍ୟ । ତେବେ ବ୍ୟାଙ୍କ୍‌ର କଷ୍ଟମର ତ !

'ହଁ, ବ୍ୟାଙ୍କ୍‌କୁ ଯିବି । ଆଜି ମୋର ଡେରି ହୋଇଗଲା । ଟିକିଏ ଶୀଘ୍ର ଚଳେଇବାକୁ ହେବ ...'

'ଆଜ୍ଞା ।' ଆକ୍ସିଲିରେଟର୍ ଉପରେ ପାଦ ରଖି ଯଥା ସମ୍ଭବ ସ୍ପିଡ୍‌ରେ ଟ୍ୟାକ୍ସି ଚଳାଉ ଚଳାଉ ଲୋକଟି କହିଲା, 'ମୋ ନାଁ ସୁରେଶ ରାଏ । ଏଇଠି ନୂଆ କରି ଟ୍ୟାକ୍ସି ଅଫିସ୍ ଖୋଲିଛି ।'

ସ୍ୱାତୀ ସେତେବେଳେ ମୋବାଇଲ୍‌ର ଖୋଜ୍‌ରେ ପର୍ସ ଭିତରଟା ଘାଣ୍ଟି ପକାଉ-ଥିଲା । ଅନ୍ୟମନସ୍କ ଭାବରେ ସେ ମୋବାଇଲ୍‌ଟା ପର୍ସ୍‌ରେ ଗଳେଇ ଦେଇନି ତ ! ଟ୍ୟାକ୍ସି ଡ୍ରାଇଭର୍‌ର ନାଁ ଶୁଣି ହାତ ତା'ର ଅଟକିଗଲା । ସୁରେଶ ରାଏ ? କିଛି ଦିନ ଆଗରୁ ସୁଷମା ପାଟିରୁ ଏଇ ନାଁ ଟି ସେ ଶୁଣିଥିଲା ନା ? ସୁଷମା ତ ରୀତିମତ ରକ୍ତଚାଉଳ ଚୋବାଉଥିଲା ଲୋକଟି ଉପରେ ।

ଏଇ ସେଇ ? କିଏ ଜାଣେ ? ଏକା ନାଁରେ ଏ ଅଞ୍ଚଳରେ ଦୁଇଟା ମଣିଷ ବି ଥାଇପାରନ୍ତି ।

ଥରେ ପରଖି ନେବାକୁ ସ୍ୱାତୀ ପଚାରିଲା, 'ଆମ ବ୍ୟାଙ୍କ୍‌ରେ ଆପଣଙ୍କର କ'ଣ ସେଭିଙ୍ଗସ୍ ଆକାଉଣ୍ଟ ଅଛି ?'

'ସେଭିଙ୍ଗସ୍ ଆକାଉଣ୍ଟ ତ ବହୁତ ଦିନ ଧରି ଅଛି । ଏବେ କିଛି ଦିନ ତଳେ କରେଣ୍ଟ ଆକାଉଣ୍ଟ ଖୋଲିଲି । ବ୍ୟବସାୟ ପାଇଁ । ... ଏଇଠି ଖୋଲିଛି ମୋ' ଅଫିସ୍ – 'ରାଏ ଟ୍ରାଭେଲ୍‌ସ୍' ।

ଆଉ ସନ୍ଦେହ ନାହିଁ । ଏଇ ସେଇ ।

ସ୍ୱାତୀର କିଛି ଦିନ ତଳ କଥା ମନେ ପଡିଯାଇଥିଲା । ଡିପୋଜିଟ୍‌ସ୍‌ରେ ବସୁଥିବା ସୁଷମା ବ୍ୟାଙ୍କ ବନ୍ଦ ହେବା ପରେ ବାକି କାମ ଶେଷ କରୁ କରୁ ଗଜର ଗଜର ହୋଇ ଚାଲିଥିଲା । ସଦା ଅସନ୍ତୁଷ୍ଟ ମଣିଷ ସୁଷମା । ତା' କଥା ଶୁଣେ କିଏ ? ଅଶୁଣା ଭାବରେ ସ୍ୱାତୀ ନିଜ କାମରେ ମନ ଦେଇଥିଲା । କିନ୍ତୁ ନୂଆ ଚାକିରିରେ ଯୋଗଦେଇଥିବା କେରଳୀ ପିଲା ଜେମ୍‌ସ୍ ରହି ନ ପାରି ପଚାରିଥିଲା, 'କ'ଣ ହେଲା କି ସୁଷମା ମ୍ୟାଡମ୍ ?'

'କ'ଣ ହେଲା ପଚାରୁଛ ? ... କହିବି । ସବୁ କହିବି । କିନ୍ତୁ ତୁମକୁ ମୋର ଗୋଟିଏ ପ୍ରଶ୍ନ ...' ଚଟ୍ କରି ନିଜ କଥା ନ କହି ସୁଷମା ସବୁବେଳେ ବୁଲେଇ ବୁଲେଇ କଥା କହିବାକୁ ପସନ୍ଦ କରେ । 'ତୁମେ ତ ଭଲରେ ପାଠଶାଠ ପଢି କଲେଜ ପାସ୍ କଲ, ଜେମ୍‌ସ୍ । ତାପରେ କି ଦୁର୍ଭାବନା ମୁଣ୍ଡରେ ପଶିଲା ଯେ କୋଚିନ୍ ଛାଡି ଏତେ ଦୂର ଆସି ଚାକିରି ନେଲ ? ନେଲ ତ ନେଲ, ପୁଣି ବ୍ୟାଙ୍କ ଚାକିରି !'

'କ'ଣ କହୁଛନ୍ତି ମ୍ୟାଡମ୍ ! ବ୍ୟାଙ୍କ ଚାକିରି ବୋଲି କଥା ।'

'ହଁ, କେବେ ଥିଲା ଏ ଚାକିରିର ଚାର୍ମ୍ । ଆଉ ଏବେ ? ଏବେ ଗଟର୍‌ରୁ ସବୁ ଉଠି ଆସୁଛନ୍ତି ଲୋକମାନେ ଆକାଉଣ୍ଟ ଖୋଲିବାକୁ । ବାଜେଲୋକଙ୍କ ସାଙ୍ଗରେ କଥା କହି କହି ମୁଣ୍ଡଟା ଯାଉଛି । ମୁଁ ଖାଲି ଅପେକ୍ଷା କରି ରହିଛି କେବେ ଭି.ଆର୍.ଏସ୍. ପାଇଁ ଏଲିଜିବଲ୍ ହେବି । ଆଉ ସବୁଦିନ ପାଇଁ ବ୍ୟାଙ୍କ୍‌ରୁ ଛୁଟି ନେଇ ଘରେ ବସି ଯାଇପାରିବି ।'

ସ୍ୱାତୀ ଆଉ ରହିପାରି ନ ଥିଲା । ସାମାନ୍ୟ ଶ୍ଳେଷ ନେଇ ପଚାରି-ଦେଇଥିଲା, 'ଆଜି କୋଉ ଲୋକ ତୁମ ମୁଣ୍ଡ ଖରାପ କଲା, ସୁଷମା ଦିଦି ?'

'ସେଇ ସୁରେଶ ରାଏ । ଆଉ କିଏ ?'– ପ୍ରଥମ ଥର ପାଇଁ ନାଁ ଟି ସେଦିନ ଶୁଣିଥିଲା ସ୍ୱାତୀ । ସେ କିଛି କହିବା ଆଗରୁ ଆଗ ଭଳି ଅସନ୍ତୋଷ ନେଇ ସୁଷମା ଯୋଡିଥିଲା, 'ବୁଝିଲ, ସ୍ୱାତୀ, ଲୋକଟା ଏମିତି ଅତିଷ୍ଠ କରି ଦେଇପାରେ, ଚିନ୍ତା କରିପାରିବନି !'

'ସୁଷମା ମ୍ୟାଡମ୍, କ'ଣ କଲା ସେ ସୁରେଶ ରାଏ ?' କୌତୁହଳରେ ପୁଣି ଜେମ୍‌ସ୍ ପଚାରିଥିଲା ।

'ତା'ର ସବୁ ଦିନେ ଗୋଟିଏ ଗୋଟିଏ ରକମର ନାଟ । ଗୋଟାଏ ମିନିଟ୍‌ର ଟ୍ରାନ୍‌ଜାକ୍‌ସନ୍‌କୁ ଟାଣି ଟାଣି ସାତ ଆଠ ମିନିଟ ଲଗେଇବ । ହଜାରେ ପ୍ରଶ୍ନ । ତା'ର ସବୁ ବିଷୟରେ ଜାଣିବା ଦରକାର । ସବୁ ନିୟମ କାନୁନ୍ ଘୋଷିବା

ଦରକାର । ... ଆରେ ବାବୁ, ନିୟମ କାନୁନ୍ ଚୋବେଇ ହଜମ କରିବାକୁ ଆମେ ଅଛୁ । ତୁ ଯୋଉ କାମରେ ବ୍ୟାଙ୍କକୁ ଆସିଛୁ, ସେଇଟା ଶେଷ କର, ଘରକୁ ଯା । ଅଯଥା ...'

ପ୍ରଶ୍ନ ପଚାରିବାରେ କ୍ଷତି କ'ଣ ରହିଲା, ତା' ବୋଧହୁଏ ଜେମ୍ସ୍ ଭାବି ପାରି ନ ଥିଲା । ତେଣୁ କଥା ସେଇ ଦିନର ଘଟଣାକୁ ଟାଣି ଆଣି ପଚାରିଥିଲା, 'ଆଜି କ'ଣ କଲା ସେ ଲୋକ ?'

'ଆଜି ? ଆଜି ମେଞ୍ଚାଏ ରେଜା ଟଙ୍କା ଆଣି ଡିପୋଜିଟ୍ କରିବାକୁ ଦେଲା । ତା'ର ଦୁଇ ଦିନର ରୋଜଗାର । ଭାବିପାରୁଥିବ । ଭଙ୍ଗା ଟ୍ୟାକ୍ସିର ଖୁଚୁରା ଆୟ ! ଟଙ୍କିକିଆ, ପାଞ୍ଚ ଟଙ୍କିଆ, ଦଶ ଟଙ୍କିଆ ହୋଇ ଗଦାଏ । ଆଣିଲୁ ତ ଆଣିଲୁ, ଡିପୋଜିଟ୍ ନେଉଥିବା ମଣିଷ କଥା ଟିକିଏ ଭାବ । ଗଦାଏ ରେଜା ଟଙ୍କା ଗଣିବା କ'ଣ ସହଜ କାମ ନା କ'ଣ ? ... ହେଲେ ଲୋକଟା ମତେ ତିନି ତିନି ଥର ଗଣେଇଲା ସେତକ ଟଙ୍କା । କ'ଣ ନା ଗୋଟିଏ ଟଙ୍କାର ହିସାବ ଗୋଳମାଳ ହେଉଛି । ଭାବି ପାରୁଛ ?'

'ତା'ର କଷ୍ଟ ଅର୍ଜିତ ଟଙ୍କା । ଟଙ୍କାଟିଏ ବା ଛାଡ଼ିବ କାହିଁକି ?'– ସ୍ୱାତୀ ପାଟିରୁ ବାହାରିଗଲା ।

'ଛାଡ଼ିବାକୁ କିଏ କହୁଛି ? କିନ୍ତୁ ସବୁ ଥର ଆଠଣା ଟଙ୍କାଟିଏ ପାଇଁ ଅନ୍ୟକୁ ନାକେଦମ୍ କରିବା କ'ଣ ଠିକ୍ ? ... ଇରିଟେଟିଙ୍ଗ୍ !!'

ସ୍ୱାତୀ ହୁଏତ କହିଥାଆନ୍ତା ଯେ ଏଥିରେ ଲୋକଟିର ଦୋଷ ନାହିଁ । ଡିପୋଜିଟ୍ କରିବା ଆଗରୁ ପଇସା ଠିକ୍ ଭାବରେ ଗଣିବା ବ୍ୟାଙ୍କ୍ କର୍ମଚାରୀର କର୍ତ୍ତବ୍ୟ । ଆଠଣା ଟଙ୍କାଟିଏର ଫରକ ବା ହେବ କାହିଁକି ? ଆଉ ସେଥିପ୍ରତି ଯଦି ଲୋକଟି ଦୃଷ୍ଟି ଆକର୍ଷଣ କରେଇ ଦେଲା, ସେଥିରେ କ୍ଷତି କ'ଣ ଅଛି ? କିନ୍ତୁ ସେ କିଛି କହିବା ଆଗରୁ ସେମାନଙ୍କର ଆସିଷ୍ଟାଣ୍ଟ୍ ଲୋନ୍ ଅଫିସର୍ ସୁଦର୍ଶନ ଯୋଡିଥିଲା, 'ସୁରେଶ ରାଏ କଥା କହୁଛନ୍ତି କି ସୁଷମା ମ୍ୟାଡମ୍ ? ଆରେ, ସେ ତ ମହା ଛୋଟଲୋକ ।'

'ସତରେ ! ଆପଣଙ୍କୁ ବି ସେ ନଚେଇଛି କି ସୁଦର୍ଶନ ବାବୁ?' ନିଜ କଥାର ସମର୍ଥକ ପାଇ ସୁଷମା ଉତ୍‌ଫୁଲ୍ଲିତ ।

'ନଚେଇଛି ମାନେ ? ମୋ ରେକର୍ଡ ଖରାପ କରିଦେବା ଉପରେ ଥିଲା । ତାକୁ ତା'ର ନିଜ ଟ୍ୟାକ୍ସି ପାଇଁ ମୁଁ କିଛି ବର୍ଷ ତଳେ ଲୋନ୍ କରେଦେଇଥିଲି । କେତେ କଷ୍ଟରେ ପୁଣି । ତା'ର କାଗଜପତ୍ର, ସାର୍ଟିଫିକେଟ୍ କିଛି ଠିକ୍‌ରେ ନଥିଲା ।

ଅନ୍ୟ ବ୍ୟାଙ୍କମାନେ ଲୋନ୍ ଦେବା ପାଇଁ ମନା ବି କରିଦେଇଥିଲେ । ମୁଁ ନିଜେ ତାକୁ ବତାବତି କରି ବିଭିନ୍ନ ଜାଗାରୁ କାଗଜପତ୍ର ଯୋଗାଡ କରିବାର ବ୍ୟବସ୍ଥା କଲି । ହେଲେ ଲୋକଟା ଏଡେ ଅନ୍‌ଗ୍ରେଟ୍‌ଫୁଲ୍ !'

ଲୋନ୍ ପାଇ ମିଠା ଖୁଆଇ ନ ଥିଲା କି ? ସ୍ୱାତୀ ମନରେ ଉଠିଥିଲା କଥାଟି । ସୁଦର୍ଶନ ଦାସ୍‌ର ଏ ଅପବାଦ ଅଛି ।

କେଇ ଜଣ ଆଗ୍ରହୀ ଶ୍ରୋତା ପାଇ ସୁଦର୍ଶନ ମହାଉତ୍ସାହରେ କହି ଚାଲିଥିଲା, 'ପ୍ରଥମ ଲୋନ୍ ନେବା ବେଳେ କେତେ ଦାନ୍ତ ନିକୁଟା, କେତେ ହାତଯୋଡା । ଆଉ ଏବେ ପର ଗଳୁରିଲାରୁ ଧରାଛୁଆଁ ଦିଏ କିଏ ? ... ନିଜ ଅଫିସ୍ ଖୋଲିବ ବୋଲି ତିନି ତିନିଟା ମାରୁତି ଭ୍ୟାନ୍ କିଣିବାର କଥା ଉଠିଲା । ମୁଁ ଖୁସୀ ହୋଇଗଲି ଯେ ଏକା ଥରକେ ମାସକର ଟାର୍ଗେଟ୍ ପୂରା ହେଇଯିବ । ହେଲେ ଏମିତି ଦଗା ଦେଲା ମଣିଷଟା ... । କ'ଣ ନା, ଆଉ କୋଉ କୋଉ ବ୍ୟାଙ୍କ୍ ତାକୁ କ୍ୱାଟର୍ ପର୍ସେଣ୍ଟ କମ୍ ସୁଧରେ ଲୋନ୍ ଦେବା କଥା କହୁଛନ୍ତି । ଯଦି ମୁଁ ସେଇ ରେଟ୍‌ରେ ଲୋନ୍ କରେଇ ଦେଇପାରିବି, ତାହେଲେ ଜୁଆଡେ ଆମ ବ୍ୟାଙ୍କରୁ ଲୋନ୍ ନେବ । ... ମୁଁ ଟିକିଏ ପୁଅର ସ୍କୁଲ୍ ଆଡ୍‌ମିସନ୍ କାମରେ ବ୍ୟସ୍ତ ରହିଗଲି ସେତେବେଳେ । ଆଉ ଏ ବାବୁ ଚୁପ୍‌ଚାପ୍ ଅନ୍ୟ ବ୍ୟାଙ୍କରୁ ଲୋନ୍ ନେଇ ଗାଡି କିଣି ବସିଗଲେ । ... ତିନିଟା ଗାଡିର ଲୋନ୍ ହାତରୁ ଚାଲିଗଲା । ସେ ମାସର ଟାର୍ଗେଟ୍ ଆଉ ପୂରା କରିପାରିଲିନି ମୁଁ ।'

ଶ୍ରୋତା ସଂଖ୍ୟା ବଢିଛି । ପର ନିନ୍ଦା କରିବାର ଚାଟୁଳ ସୁଯୋଗ ପାଇ ଆଉ ଜଣେ ଦି'ଜଣ ଆସି ପହଞ୍ଚିଲେଣି ସେ ଆଡ୍ଡାରେ । ଏଇ ସମୟରେ ପାଖ ଚାହା ଦୋକାନର ପିଲାଟି ଆସି ସମସ୍ତଙ୍କୁ ଚାହା ଧରେଇ ଦେଇଯାଏ କାଚ ଗ୍ଲାସ୍‌ରେ । ଚାହାପିଆ ସାଙ୍ଗରେ ସୁରେଶ ରାଏର ଚରିତ୍ର ଶ୍ରାଦ୍ଧ– ଏ ତ ବଢିଆ କମ୍ବିନେସନ୍ ।

'କୋଉ ସୁରେଶ କଥା ପଡିଛି ? ସେଇ ଯିଏ ଟ୍ୟାକ୍‌ସି ଚଲାଏ ?' ନିଜର ବିଶାଳ ଶରୀରରୁ ଖସି ପଡୁଥିବା ଶାଢ଼ିକୁ ସମ୍ଭାଳି ସମ୍ଭାଳି ଆଲୋଚନାରେ ଯୋଗ ଦେଲା ଜାନକୀ । ଅବସର ନେବା ସମୟ ହେଇଆସିଲାଣି, କିନ୍ତୁ ଆଜିଯାଏଁ ଟେଲର୍ କ୍ୟାବିନ୍‌ରୁ ବାହାରି ପାରିଲା ନାହିଁ ସେ ।

'ହଁ ।'

'ତା' କଥା କାହିଁକି କହୁଛ ! ଶୁଣିଛି ବିରାଟ କୃପଣ, ରକ୍ତଚୋଷା ମଣିଷ ସେ ।'

'କୃପଣ ନିଶ୍ଚୟ । ନହେଲେ ଆଠଣା ଟଙ୍କାଟେ ପାଇଁ ଏତିକି ନାଟ କରନ୍ତା !

ହେଲେ ଲୋକଟା ରକ୍ତଚୋଷା ବୋଲି ଆପଣ କେମିତି ଜାଣିଲେ ଜାନକୀ ମ୍ୟାଡମ୍ ?'

'ତା' ବଡ ଭାଇଠୁଁ ଶୁଣିଛି ପରା ମୁଁ ।'

'ବଡ ଭାଇ !'

'ସୁରେଶ ରାଏ ତ ଲୋନ୍ ନେଇ ଆଉ ତିନିଟା ଟ୍ୟାକ୍ସି କିଣି ଏଠି ଅଫିସ୍ ଖୋଲିଲା । ସେତେବେଳେ ତା' ବଡ ଭାଇ ରମେଶ ରାଏ ଗୋଟିଏ ଟ୍ୟାକ୍ସି ଚଳେଇବାକୁ ମାଗିଲା । ରମେଶ ଜଣଙ୍କ ଘରେ ଡ୍ରାଇଭର୍ ଥିଲା । ଭାବିଲା, ସାନ ଭାଇର ଟ୍ୟାକ୍ସି ଚଳେଇଲେ, ନିଜ ଟ୍ୟାକ୍ସି ଚଳେଇବା ଭଳି କଥା ହେବ । କାମର ଅଯଥା ଚାପ ଆଉ ରହିବ ନାହିଁ । କିନ୍ତୁ କେଇଟା ଦିନରେ ସେ ଜାଣିଗଲା ଯେ ସୁରେଶ ରାଏ ସହଜ ଲୋକ ନୁହଁ । ଗାଡିତକ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରି ବସିଥିବ । ଆଉ ଗୋଟି ଗୋଟି ପଇସାର ହିସାବ ନେବ । ବଡ ଭାଇ ପାଇଁ ବି ମୁଠା କୋହଳ ନୁହଁ ।'

'ଏକଥା ଆପଣଙ୍କୁ କହିଛି ରମେଶ ??'

'ହଁ ପରା । ଆଉ ଗୋଟିଏ କଥା ଜାଣିଛ ...' ପାନ୍ ପରାଗ୍ ପ୍ୟାକେଟ୍‌ରୁ ଟିକିଏ ପାଟିରେ ପକେଇ ଜାନକୀ କହିଥିଲା, 'ରମେଶ କହୁଥିଲା ଯେ ସାନ ଭାଇ ମୁହଁ ଚାହିଁ ଦିନ ଆରମ୍ଭ କରିବା ମାନେ ଦିନଟା ଜାଣ ଗଲା ! ପ୍ରଥମ ଦିନ ଟ୍ୟାକ୍ସି ନେଇ ସେ ବାହାରୁ ବାହାରୁ ସାମ୍ନାରେ ଆସି ହାବୁଡିଥିଲା ସୁରେଶ । ଆଉ ସେଇ ଦିନ ଶୁଖିଲାରେ ତା'ର ଆକ୍ସିଡେଣ୍ଟ୍ । ପୁଣି କେଇଟା ଦିନ ପରେ ମ୍ୟାଟ୍ରିକ୍ ପରୀକ୍ଷା ଦେବାକୁ ଗଲା ବେଳେ ତା' ପୁଅ ସକାଳୁ ଉଠି କକେଇ ମୁହଁ ଆଗ ଦେଖିଲା । ବାସ୍ – ପରୀକ୍ଷାରେ ଗଡମ୍ । ... ଏ ସୁରେଶ ରାଏଟା ନିହାତି ଅମଙ୍ଗଳିଆଟାଏ ମ ।'

'ଠିକ୍ କହିଛନ୍ତି ...' ସୁଷମା ଆଖି ଛୋଟ ଛୋଟ କରି ଭାବିବା ଭଳି କହିଲା, 'ମୁଁ ଏବେ ଜାଣିଲି ଯୋଉ ଦିନ ସେ ବ୍ୟାଙ୍କ୍‌କୁ ଆସେ, ସେଦିନ ମୋର କିଛି ନା କିଛି ଗଣ୍ଡଗୋଳ ହୁଏ କାହିଁକି । ... ଆଉ ସବୁ କ'ଣ କହୁଥିଲା ତା' ବଡ ଭାଇ ?'

'କହୁଥିଲା ଅନେକ କଥା । କେମିତି ମଣିଷଟା ହୃଦୟହୀନ, କଠୋର । ... ପୁଣି ସାନ ଭାଇଟାର ଚରିତ୍ର ଫରିତ୍ର ନେଇ ବି ରମେଶ ମନରେ ସନ୍ଦେହ ଅଛି । ନିଜେ ମାଲିକ ହେଇ ସେ ଟ୍ୟାକ୍ସି ଚଲାଏ ମଝିରେ ମଝିରେ । ଆଉ ଟ୍ୟାକ୍ସି ନେଇ କୁଆଡେ ଯାଏ, କ'ଣ କରେ କେହି ଜାଣନ୍ତିନି । ... ଅସଲ କଥା ହେଲା, ସୁରେଶ ଲୋକଟା ହିଁ ମନ୍ଦ । ଦେଖିବ, ତା' ଟ୍ୟାକ୍ସି କମ୍ପାନୀଟା ବେଶୀ ଦିନ ତିଷ୍ଠିବନି । ଅମାନବିକ, ବ୍ୟଭିଚାରୀ ଲୋକ ପାଖରେ ଲକ୍ଷ୍ମୀ ରହିବେନି । ...

ରମେଶ ନିଜେ ସେଥିପାଇଁ ଲୋନ୍ ନେଇ ପ୍ରାଇଭେଟ୍ ଭାବରେ ଟ୍ୟାକ୍ସି ଚଳେଇବାକୁ ଚାହେଁ । ଆଚ୍ଛା, ସୁଦର୍ଶନ ବାବୁ, ଆପଣ ରମେଶ ରାଏର ଗାଡି ଲୋନ୍ କଥା ଟିକିଏ ବୁଝି ଦିଅନ୍ତେନି ?'

'ନିଶ୍ଚୟ । ଆପଣ ରମେଶକୁ କୁହନ୍ତୁ ମତେ ଦେଖା କରିବ ।'

ତା'ପରେ ଆଉ କ'ଣ କ'ଣ ସବୁ ଆଲୋଚନା ହେଇଥିଲା ସ୍ୱାତୀର ମନେ ନାହିଁ । ମନେ ପକାଇବାକୁ ଆଗ୍ରହ ବି ନାହିଁ । ଆଜି ତା' ନିଜ ସମସ୍ୟା ବଳି ପଡିଲାଣି । ମୋବାଇଲ୍ ଆଣିନି । ଏଣେ ରାସ୍ତାର ଭିଡ ଯେମିତି ଠିକ୍ ସମୟରେ ବ୍ୟାଙ୍କ୍‌ରେ ପହଞ୍ଚି ପାରିବାଟା ବେଳକୁ ବେଳ ଅସମ୍ଭବ ମନେ ହେଉଛି ।

'ମ୍ୟାଡମ୍, ଆପଣଙ୍କ ଜଣାଶୁଣା ଲୋକଙ୍କୁ କହିବେ ଆମ ଟ୍ୟାକ୍ସି ସର୍ଭିସ୍ କଥା ।' ହଠାତ୍ କହିଲା ସୁରେଶ ।

'କହିବି ।' ଅନ୍ୟମନସ୍କ ଭାବରେ ସ୍ୱାତୀ ଉତ୍ତର ଦେଲା ।

'ଆମର ରେଟ୍ ଅନ୍ୟ କମ୍ପାନୀମାନଙ୍କ ଗାଡିଠୁଁ କମ୍ । ଆଉ ଆଖପାଖ ଷ୍ଟେଟ୍‌କୁ ଯିବାର ପର୍‌ମିଟ୍ ବି ଅଛି ।'

'ଆଚ୍ଛା ।' ଅଳ୍ପକେ କଥା ଛିଣ୍ଡେଇ ଦେବାକୁ ବସିଲା ସ୍ୱାତୀ । ଆଜି ଭଳି ନିହାତି ଅସୁବିଧାରେ ନ ପଡିଲେ ଟ୍ୟାକ୍ସି ସାଙ୍ଗରେ ତା'ର କି କାମ ?

ହଠାତ୍ ଜୋର୍‌ରେ ଗାଡିର ବ୍ରେକ୍ ଦେଲା ସୁରେଶ । ସାମ୍ନାରେ ଅଟକି ରହିଛି ଗାଡିମାନ ।

କ'ଣ ହେଲା ? ଆତଙ୍କିତ ଭାବରେ ସ୍ୱାତୀ ମୁଣ୍ଡ ବଙ୍କେଇ ବାହାରକୁ ଚାହିଁଲା ।

'ଲାଗୁଛି, ଆକ୍‌ସିଡେଣ୍ଟ ହେଇଛି ।' ଗୁଣୁ ଗୁଣୁ ହେଇ କହିଲା ସୁରେଶ ।

ଆକ୍‌ସିଡେଣ୍ଟ ! ଗଲା ଯାଃ, ଆଜି ଆଉ ଠିକ୍ ସମୟରେ ପହଞ୍ଚିବାର କୌଣସି ଆଶା ନାହିଁ ।

ଅନ୍ୟ ପାଖରୁ ସାଇକେଲ୍ ଚଳାଇ ଆସୁଥିଲା ଜଣେ । ସୁରେଶର ଚିହ୍ନା ଲୋକ ବୋଧହୁଏ । ବାହାରକୁ ମୁଣ୍ଡ ଗଳେଇ ସେ ପଚାରିଲା, 'ଆରେ ଏ ବାପୁନା, କ'ଣ ହେଇଛି କିରେ ?'

'ଆକ୍‌ସିଡେଣ୍ଟ । ... ତୁମେ ବୁଲି ଚାଲିଯାଅ, ସୁରେଶ ଭାଇ । ଏ ଭିଡ୍ କମିବନି ଏବେ । ଜଗାର ଆକ୍‌ସିଡେଣ୍ଟ ହେଇଛି ।'

'ଜଗାର ?' ଗାଡି ବୁଲାଉ ବୁଲାଉ ପଚାରିଲା ସୁରେଶ ।

'ପିଲାଟାଏ ଗୁଡି ପଛରେ ଦୌଡୁ ଦୌଡୁ ରାସ୍ତାକୁ ଧାଇଁ ଆସିଲା । ଜଗା

ଟ୍ୟାକ୍‌ସିରେ ବାଜି ପଡ଼ିଗଲା । ବେଶୀ କିଛି ହୋଇନି । ହେଲେ ଲୋକେ ତ ରାଗିଗଲେ । ଜଗା କୌଣସି ମତେ ଖସି ପଳେଇ ଯାଇଛି । କିନ୍ତୁ ତା' ଗାଡ଼ି ଭାଙ୍ଗି ସାରିଲେଣି ସମସ୍ତେ ।'

ସୁରେଶର ମୁହଁ କଠିନ ହୋଇଗଲା ଟିକିଏ । ଚାଲି ଯାଉ ଯାଉ କହିଲା, 'ତୁ ଯଦି ଜଗାକୁ ଦେଖୁ ତାକୁ କହିବୁ ବ୍ୟସ୍ତ ହେବନି । ମୁଁ ମ୍ୟାଡମ୍‌କୁ ବ୍ୟାଙ୍କ୍‌ରେ ଛାଡ଼ି ଆସୁଛି ସାଙ୍ଗେ ସାଙ୍ଗେ । ଏକାଠି କରିବା ଯାହା କରିବା କଥା ।'

'ଆପଣଙ୍କ ଟ୍ୟାକ୍‌ସିର ଆକ୍‌ସିଡେଣ୍ଟ୍ ହୋଇଛି ?' ସ୍ୱାତୀ ନ ପଚାରି ରହି ପାରିଲା ନାହିଁ ।

'ନାଇଁ ମ୍ୟାଡମ୍ । ଆଉ ଜଣେ ଟ୍ୟାକ୍‌ସି ଡ୍ରାଇଭର୍ ଜଗାର । ତା'ର ନିଜ ଟ୍ୟାକ୍‌ସି ।'

ଅର୍ଥାତ୍ ପ୍ରତିଦ୍ୱନ୍ଦ୍ୱୀ ।

'ତା'ହେଲେ ଆପଣ କ'ଣ କରିବେ ?'

'ଏବେ ମ୍ୟାଡମ୍ କେତେ ଧନ୍ଦା ! ପୋଲିସ୍, ଇନ୍‌ସ୍ୟୁରାନ୍‌ସ୍ ! ସେ ଏକା ଏକା କେତେ କ'ଣ କରିବ ? ପୁଣି ବିଚରାର ଆୟ ବନ୍ଦ ରହିବ ଏବେ । ... ଦେଖେ, କ'ଣ କରାଯାଇପାରେ ! ପିଲାଛୁଆ ଅଛନ୍ତି । ଯଦି ଜଗା ଚାହିଁବ କିଛି ଦିନ ପାଇଁ ମୋ' ଟ୍ୟାକ୍‌ସିଟାଏ ବି ଚଲାଇ ପାରିବ ...'

ସ୍ୱାତୀ ଅବାକ୍ ହୋଇ ଶୁଣିଯାଉଥିଲା ସୁରେଶ କଥା । ଏଇ ଲୋକଟିକୁ ଜାନକୀ କହିଥିଲା ଅମାନବିକ !

'ବୁଝିଲେ ମ୍ୟାଡମ୍, ଆମ ଲାଇନ୍‌ରେ କିଛି ଭରସା ନାହିଁ । କେତେବେଳେ ଯେ କ'ଣ ହୋଇଯାଏ ... ।' ସୁରେଶ ପୁଣି ନିଜକୁ ଭରସା ଦେଲା ଯେମିତି, 'ସେମିତି ଦେଖିଲେ, ସବୁ ବ୍ୟବସାୟରେ କିଛି ନା କିଛି ରିସ୍କ୍ ଥାଏ । ନାହିଁ କି ମ୍ୟାଡମ୍ ?'

ସ୍ୱାତୀ ଚୁପ୍ ହୋଇ ଶୁଣିଲା ।

'ମୁଁ ସେଥିପାଇଁ ସବୁବେଳେ ଚେଷ୍ଟା କରୁଛି ଯଦି କୋଉ ଅନୁଷ୍ଠାନ ସାଙ୍ଗରେ ପକ୍କା କିଛି ବ୍ୟବସ୍ଥା କରି ନେବାକୁ । ... ଆଚ୍ଛା ମ୍ୟାଡମ୍,' ହଠାତ୍ ସୁରେଶ ଆଶା ନେଇ ପଚାରିଲା, 'ଆପଣଙ୍କ ବ୍ୟାଙ୍କ ତରଫରୁ ତ ବେଳେ ବେଳେ ଗାଡ଼ି ଭଡ଼ା ହେଉଥିବ ? ମୁଁ ଯଦି ଭଲ ରେଟ୍ ଦିଏ ତାହେଲେ ମୋ ଟ୍ୟାକ୍‌ସି ସାଙ୍ଗରେ ସେମିତି କିଛି ବ୍ୟବସ୍ଥା କରା ଯାଇ ପାରିବନି ?'

କାଲ ଆଗରେ କାହିଁକି ମୂଳା ଚୋବାଉଛ, ବାବୁ ? ମନେ ମନେ କହିଲା ସ୍ୱାତୀ । ବ୍ୟାଙ୍କର ବିରାଟ ଉଚ୍ଚା ପିରାମିଡ୍‌ରେ ତା'ର ସ୍ଥାନ ପ୍ରାୟ ଶେଷ ଆଡ଼କୁ ।

ସେ କ'ଣ କରିପାରିବ ?

ଉତ୍ତର ପାଇଁ ଅପେକ୍ଷା କରିଛି ସୁରେଶ ।

'ଏ ବିଷୟରେ ଆସିଷ୍ଟାଣ୍ଟ ମ୍ୟାନେଜର୍ ବା ମ୍ୟାନେଜର୍‌ଙ୍କ ସାଙ୍ଗରେ କଥା କହିବାକୁ ହେବ ।'

'ହଁ ଠିକ୍ କଥା ।' ସୁରେଶ ମୁଣ୍ଡ ଟୁଙ୍ଗାରିଲା ।

ଦୂରରେ ହାଇସ୍କୁଲ୍ ଦେଖାଯାଉଛି । ହାଇସ୍କୁଲ୍‌ର ପାଚିରି ପାଖରେ ବୁଲିଗଲେ ତା' ବ୍ୟାଙ୍କ୍ । ସ୍ୱସ୍ତିର ନିଶ୍ୱାସ ନେଲା ସ୍ୱାତୀ ।

ହଠାତ୍ ଡାହାଣ ହାତ ପଛକୁ ବଢେଇ ଦେଲା ସୁରେଶ । ହାତରେ ଭିଜିଟିଙ୍ଗ୍ କାର୍ଡଟିଏ । 'ମୋ' କାର୍ଡ ରଖି ଥାଆନ୍ତୁ, ମ୍ୟାଡମ୍ । ଏଥିରେ ମୋ ମୋବାଇଲ୍ ନମ୍ବର ବି ଅଛି । ସୁବିଧା ଅସୁବିଧାରେ ଯେତେବେଳେ ଫୋନ୍ କରିଦେବେ ମୁଁ ଚାଲି ଆସିବି ।'

'ଆଚ୍ଛା ।' ସ୍ୱାତୀ କାର୍ଡଟିକୁ ପର୍ସରେ ରଖିଲା ।

'ଓ ହଁ, ମଙ୍ଗଳବାର ଦିନ ଯଦି ଗାଡି ଦରକାର ହୁଏ, ତେବେ ଆଗରୁ କହିଦେବେ । ସେଦିନ ମୁଁ ଟିକିଏ ବ୍ୟସ୍ତ ରହେ, କିନ୍ତୁ ଆପଣଙ୍କ ପାଇଁ ଅନ୍ୟ ଟ୍ୟାକ୍ସିର ବ୍ୟବସ୍ଥା କରିଦେଇ ପାରିବି ।' ଏସବୁ କଥାରେ ସ୍ୱାତୀର କୌଣସି ଆଗ୍ରହ ନାହିଁ । ହେଲେ କେମିତି ବା ଲୋକଟିକୁ ଚୁପ୍ କରେଇ ଦେବ ସେ ?

ଅନାଗ୍ରହ ନେଇ ସେ କହିଲା, 'ମଙ୍ଗଳବାର କ'ଣ କୌଣସି କମ୍ପାନୀ ପାଇଁ ଗାଡି ଚଲାନ୍ତି ?'

ହଠାତ୍ ଚୁପ୍ ହେଇଗଲା ସୁରେଶ । ରହି ରହି କହିଲା, 'ନା । ସେଦିନ ନିଜ ପର୍ସନାଲ୍ କାମରେ ମୁଁ ପାଖ ସହରକୁ ଚାଲିଯାଏ ।'

'ଆଚ୍ଛା ଆଚ୍ଛା ।' ହଠାତ୍ ପୁଣି ସ୍ୱାତୀ ପାଟିରୁ ବାହାରିଗଲା, 'ସବୁ ମଙ୍ଗଳବାର ?'

'ଆଜ୍ଞା ...' କ'ଣ କହି ଆସୁ ଆସୁ ରହିଗଲା ସେ ।

ସୁରେଶର କଥା କହିବା ଭଙ୍ଗୀରେ ସ୍ୱାତୀର ସାମାନ୍ୟ କୌତୂହଳ ହେଲା । ଜାନକୀକୁ କ'ଣ କହିଥିଲା ରମେଶ ? ସାନ ଭାଇର ଚରିତ୍ର ନେଇ କଥା ଉଠେଇ ଥିଲା ନା ? ତାହେଲେ କ'ଣ ସୁରେଶ ରାଏର ମଙ୍ଗଳବାର ସାଙ୍ଗରେ ନାରୀଜନିତ କିଛି ଘଟଣା ମିଶିଛି କି ? କିଏ ଜାଣେ ? ହୁଏତ ଘରେ ସ୍ତ୍ରୀ ପିଲା । ଆଉ ପାଖ ସହରରେ ରହିଛି ବିଶେଷ କେହି । ନହେଲେ କି ଜଣେ ସବୁ ମଙ୍ଗଳବାର ବ୍ୟବସାୟ ବନ୍ଦ କରି ପାଖ ସହରକୁ ଦୌଡନ୍ତା ?

କ'ଣ କରନ୍ତି ମଙ୍ଗଳବାର ?' ହଠାତ୍ ପଚାରି ଦେଲା ସେ । ଦେଖାଯାଉ କଥାଟିକୁ କେମିତି ଆଡେଇ ଦେଇପାରୁଛି ସୁରେଶ ।

ସୁରେଶ ଚଟ୍ କରି ଆଗ ଭଳି କହିପକେଇଲା, 'ପର୍ସନାଲ୍ କାମ ...' ପୁଣି କ'ଣ ଭାବି ମୁଣ୍ଡ ବଙ୍କେଇ ନେଇ ନରମ ସ୍ୱରରେ ସେ ଯୋଡିଲା, 'ମ୍ୟାଡମ୍ – 'କରୁଣା ନିବାସ' ନାଁ ଶୁଣିଛନ୍ତି ?'

ଶୁଣିଛି ସ୍ୱାତୀ । କୋଉ ଗୋଟିଏ ଦାତବ୍ୟ ଅନୁଷ୍ଠାନ ପକ୍ଷରୁ ଚଳାଯାଉଥିବା ଜରାନିବାସ । ଖବରକାଗଜରେ ଥରେ ଏ ବିଷୟରେ ବାହାରିଥିଲା । ଯେଉଁ ବୁଢାବୁଢୀଙ୍କୁ ପରିବାରର ସଦସ୍ୟମାନେ ଘରୁ ବାହାର କରି ଦିଅନ୍ତି, ସେଇମାନଙ୍କ ପାଇଁ ଏ ଜରା ନିବାସ ।

'ମଙ୍ଗଳବାର ସେଠିକି ଯାଏ ମୁଁ ।'

କରୁଣା ନିବାସକୁ ସବୁ ମଙ୍ଗଳବାର ଯାଏ ସୁରେଶ !! ସ୍ୱାତୀ ଚମକିଗଲା ଟିକିଏ ଭିତରେ । ଛି ଛି । କି ଆଜେବାଜେ କଥା ସେ ଭାବି ନେଇଥିଲା ଲୋକଟି ସମ୍ପର୍କରେ ! କେହି ନିଜ ଲୋକ ଅଛନ୍ତି କି ସେଠି ? ବାପା କି ମା' ??

କିଏ ଜାଣେ ? ହୁଏତ ଯୋଉ ରମେଶ ସାନଭାଇର ଚରିତ୍ର ନେଇ ବାହାର-ଲୋକଙ୍କ ଆଗରେ ଆକ୍ଷେପ କରିଛି, ସେ ହିଁ ପରିବାରର ଅନ୍ୟ ସଦସ୍ୟମାନଙ୍କ ସାଙ୍ଗରେ ମିଶି ବାପା ମା'ଙ୍କୁ ଘରୁ ତଡିଛି । ଆଉ ଘରେ ଅଶାନ୍ତି ନ ବଢେଇବାକୁ ସୁରେଶ ଚୁପ୍ ରହିବାକୁ ବାଧ ହେଇଛି । କିନ୍ତୁ ମନ ନ ମାନିବାରୁ ବାପା କି ମା'ଙ୍କୁ ଦେଖିବାକୁ କରୁଣା ନିବାସ ଚାଲି ଯାଉଛି ସବୁ ମଙ୍ଗଳବାରକୁ ମଙ୍ଗଳବାର ।

'କିଏ ଅଛନ୍ତି କରୁଣା ନିବାସରେ ? କେହି ନିଜ ଲୋକ ?'

'ନାଇଁ ମ୍ୟାଡମ୍ । ମୋର ନିଜର କେହି ନାହାନ୍ତି ସେଠି ।' ସୁରେଶ କହିଲା ।

ତା'ହେଲେ ?

'ତିନିବର୍ଷ ତଳେ ଜଣଙ୍କ ଛାଡିବାକୁ ମୁଁ ଯାଇଥିଲି କରୁଣା ନିବାସ । ଆଚାର୍ଯ୍ୟ ବାବୁ, ମାନେ ସେଇ ବୁଢାଜଣଙ୍କ, ବୟସ ଥିବା ବେଳେ ଭଲ ଚାକିରି କରୁଥିଲେ, ନିଜ ଘର କରିଥିଲେ । କିନ୍ତୁ ବୟସ ହେବା ପରେ ବୋକାମି କରି ଘରଟିକୁ ପୁଅମାନଙ୍କ ନାଁରେ କରିଦେଲେ । ଆଉ ସେ ବାଳୁଙ୍ଗା ପୁଅମାନେ ବୁଢା ବାପକୁ ଘରୁ ତଡିଦେଲେ । ସାମାନ୍ୟ ପେନ୍‌ସନ୍ ଟଙ୍କାରେ ଆଚାର୍ଯ୍ୟ ବାବୁ କେମିତି ଅଲଗା ଘର ଭଡା ନେଇ ଚଳିଥାଆନ୍ତେ ? ସେ ଚାଲି ଆସିଲେ କରୁଣା ନିବାସ ।'

'ସେ କ'ଣ ଆପଣଙ୍କର କେହି ଚିହ୍ନା ଲୋକ ?' ପଚାରି ଦେଲା ସ୍ୱାତୀ ।

'ନା, ପ୍ରଥମ ଥର ଦେଖିଲି ତାଙ୍କୁ ସେଦିନ । ହେଲେ ବାପ ବୟସର ଲୋକଟି

ବାଟଯାକ ଆଖି ପୋଛି ପୋଛି ଯାଉଥିଲେ ଯେ ଜମା ଭଲ ଲାଗିଲାନି । ତାଙ୍କ ମନ ଭୁଲେଇବାକୁ ଟିକିଏ ଗପସପ କରିବା ଆରମ୍ଭ କଲି । କଥାରେ କଥାରେ ସେ କହିଲେ ଯେ ଘର ଛାଡି ଯିବା ଅପେକ୍ଷା ଆଉ ଗୋଟିଏ ଘଟଣା ତାଙ୍କୁ ବେଶୀ ବାଧୁଛି । ସେ ଭଜନ ପାଇଁ ସବୁ ସପ୍ତାହକୁ ଥରେ ଯାଉଥିଲେ ଗୋଟିଏ ଆଶ୍ରମକୁ । ଏବେ ସେଇଟା ବନ୍ଦ ହୋଇଗଲା । ... ମୁଁ ଗୋଟିଏ ହୋସ୍‌ରେ କହିଦେଲି – ବନ୍ଦ କାହିଁକି ହେବ ? ମୁଁ ଆସି ଆପଣଙ୍କୁ ନେଇଯିବି । ... ସେ କହିଲେ ଯେ ତାଙ୍କ ପାଖରେ ଟ୍ୟାକ୍‌ସି ଭଡ଼ା କରିବାର ସଙ୍ଗତି ନାହିଁ । ଏ ବୟସରେ ବସ୍ ଚଢିବାର ସାହସ ବି ନାହିଁ । ବୁଝିଲେ ମ୍ୟାଡମ୍, ସେଇ ଦିନ ମୁଁ ମନ ସ୍ଥିର କରି ନେଲି ।'

'ସବୁ ମଙ୍ଗଳବାର ତାହେଲେ ଭଡା ନ ନେଇ ଆଚାର୍ଯ୍ୟ ବାବୁଙ୍କୁ ଭଜନକୁ ନେଇଯାଆନ୍ତି ଆପଣ ?' ସ୍ୱାତୀ ପଚାରିଲା ।

'ତା' ତ ନିଏ । କିନ୍ତୁ କେବଳ ଆଚାର୍ଯ୍ୟ ବାବୁଙ୍କୁ ନୁହଁ ।'

'ମାନେ ?'

'କରୁଣା ନିବାସର ସବୁ ଅନ୍ତେବାସୀଙ୍କୁ ପାଳି କରି ମଙ୍ଗଳବାର ଦିନ ବାହାରକୁ ନେଇଯାଏ । ଗାଡିଭଡାର ପ୍ରଶ୍ନ ନାହିଁ ।'

'କୁଆଡେ ନେଇଯାଆନ୍ତି ?' ସ୍ୱାତୀ ଅବାକ୍ ।

'ସେମିତି କିଛି ଠିକ୍ ନାହିଁ, ମ୍ୟାଡମ୍ । ଯିଏ ଯୁଆଡେ ଯିବାକୁ ଚାହେଁ । ... ଆଚାର୍ଯ୍ୟ ବାବୁ ଯାଆନ୍ତି ଭଜନକୁ । ଆଉ କିଏ କିଏ ଯାଆନ୍ତି ମନ୍ଦିରକୁ କି ଗୀର୍ଜାକୁ । କିଏ ଯାଇ ପାର୍କ୍‌ରେ ବସି ରହେ କିଛି ସମୟ ପାଇଁ । ଆଉ ପୁଣି କେତେଜଣ ଦିନବେଳା ଗାଡିରେ ବସି ବସି ବୁଲି ଆସନ୍ତି ଟିକିଏ । ବାହାରେ ବୁଲି ଆସିଲେ ସେମାନଙ୍କର ମନ ଭଲ ରହେ ।'

ସ୍ୱାତୀ ପାଟିରୁ କଥା ହଜିଯାଇଥିଲା ।

'କିନ୍ତୁ ଆପଣ ଚିନ୍ତା କରିବେନି । ମଙ୍ଗଳବାର ଦିନ ଯଦି ଟ୍ୟାକ୍‌ସିର ଦରକାର ପଡେ, ତା'ହେଲେ ଆଗରୁ ଫୋନ୍ କରି ଦେବେ । ମୁଁ ଅନ୍ୟ ଟ୍ୟାକ୍‌ସି ବ୍ୟବସ୍ଥା କରିଦେବି ।' ଆଉ ଥରେ କହିଲା ସୁରେଶ ।

ବ୍ୟାଙ୍କ୍ ହୋଇ ଯାଇଥିଲା । ହେଲେ ଟ୍ୟାକ୍‌ସିରୁ ଓହ୍ଲେଇବା କଥା ସ୍ୱାତୀ ଯେମିତି ଭୁଲିଯାଇଥିଲା ।

✣

# ଶଙ୍କା

ଅଫିସ୍‌ରୁ ଫେରିବା କ୍ଷଣି ମୁଁ ବଡ ପାଟିରେ ଘରେ ସମସ୍ତଙ୍କୁ ଖବରଟା ଜଣେଇ ଦେଲି । ମୋ' ମନ ଆକାଶରେ ଉଡି ବୁଲୁଛି । ପାଦ ଦିଇଟା ଆଉ ସ୍ଥିର ରହୁନାହିଁ ।

'ଚାରି ମାସ ! ଚାରି ମାସ ପାଇଁ ବିଦେଶ ଯିବି । ... ଆଜି ମେଲ୍ ଆସିଛି ।'

ଏଭଳି ଗୋଟାଏ ବିଶେଷ ଘୋଷଣାର ଯେଭଳି ପ୍ରତିକ୍ରିୟା ମୁଁ ଆଶା କରୁଥିଲି, ତା' ମିଳିଲା ନାହିଁ । ସମସ୍ତେ ବସି ରହିଛନ୍ତି ଟେଲିଭିଜନ୍ ସାମ୍ନାରେ । ନନା ସଦ୍ୟ କଲେଜରୁ ଫେରିଛନ୍ତି । ହାତରେ ତାଙ୍କର ଚାହା କପ୍ । ଦିନ ଯାକ କ୍ଲାସ୍‌ରେ ବକବକ କରି କ୍ଲାନ୍ତ । ଅଦେଖା ଆଖି ଟେଲିଭିଜନ୍ ପର୍ଦ୍ଦାରେ । ବୋଉ ବି ନିଶ୍ଚୟ ଅଫିସ୍‌ରୁ ଫେରିଛି ଅଳ୍ପ ସମୟ ଆଗରୁ । ଏପର୍ଯ୍ୟନ୍ତ ଲୁଗା ବଦଳେଇନି । ହେଲେ ମୁହଁରେ ତା'ର କ୍ଲାନ୍ତି ନାହିଁ । ଏଇ ନୂଆ ସିରିଆଲ୍‌ଟା ତା'ର ବହୁତ ପ୍ରିୟ । ସେ ପଲକ ନ ପକେଇ ସେଇ ଓଡିଆ ସିରିଆଲ୍‌ଟାକୁ ପିଇ ଯାଉଛି । ଯେଉଁଠି ସ୍ତ୍ରୀ ସନ୍ଦେହ କରୁଛି ସ୍ୱାମୀକୁ । ଶାଶୂ ସନ୍ଦେହ କରୁଛି ବୋହୂକୁ । ଆଉ ସନ୍ଦେହ ନିଆଁରେ ଘିଅ ଢାଳୁଛନ୍ତି ଆତ୍ମୀୟ ସ୍ୱଜନ, ପାଖ ପଡୋଶୀ । ଅସହ୍ୟ !

ସାନ ଭାଇ ଅଜୁ ବି ବସିଛି ସେଇଠି । ପାଟିଟା ଚିଉଇଙ୍ଗ୍ ଗମ୍ ଚାକୁଳି କରି ଚାଲିଛି । ହାତରେ ତା'ର ନୂଆ ମିଳିଥିବା ମୋବାଇଲ୍ ଫୋନ୍ । କାହା କାହା ସାଙ୍ଗରେ ଏସ୍.ଏମ୍.ଏସ୍. ଦିଆନିଆ ଚାଲିଛି । ଆଖିରେ ଡିଜିଟାଲ୍ ଦ୍ୟୁତି । ଟେଲିଭିଜନ୍‌ରେ କ'ଣ ଚାଲିଛି ନ ଚାଲିଛି, ସେଥିକି ତା'ର ଲକ୍ଷ୍ୟ ନାହିଁ । ସେ ହିଁ ଆଗ ମୁଣ୍ଡ ଟେକିଲା । ଚିଉଇଙ୍ଗ୍ ଗମ୍‌ର ଚଟକା ମାରି ପଚାରିଲା, 'କି ମେଲ୍, ନାନୀ ?'

'ବିଦେଶ ଯିବି । ରୋମ୍ !'

'ରୋମୁଲସ୍‌ଙ୍କ ରୋମ୍ ?'

'ୟେସ୍, ରୋମୁଲସ୍‌ଙ୍କ ରୋମ୍ । ସେଠିକି ମୁଁ ଯିବି ଚାରି ମାସ ପାଇଁ ।'

ଏଥର ବାକୀ ଦୁଇ ଯୋଡା ଆଖି ଘୁରି ଆସିଲା ମୋ ଆଡକୁ ।

'କୁଆଡେ ଯିବା କଥା ? ରୋମ୍ ?'– ନନା ପଚାରିଲେ ।

'ଓହୋ, ମୁଁ କହୁ ନ ଥିଲି କିଛି ମାସ ତଳେ ଗୋଟାଏ ପ୍ରୋଜେକ୍ଟ ପାଇଁ ଆମର ଚେଷ୍ଟା ଚାଲିଛି ? ସେଇଟା କନ୍‌ଫର୍ମ୍ ହେଇଗଲା ।'

ନନା ବୋଉ ମୁହଁକୁ ଚାହିଁଲେ । ବୋଉ ବି କିଛି ସମୟ ପାଇଁ ଆଖି ଫେରାଇଛି ଟେଲିଭିଜନ୍‌ର ପର୍ଦ୍ଦା ଉପରୁ । ମାତ୍ର କେଇ ସେକେଣ୍ଡ ପାଇଁ ଅବଶ୍ୟ । ପୁଣି ତା' ଆଖି ଫେରିଗଲା ସନ୍ଦେହୀ ସିରିଆଲ୍‌କୁ । ଆଉ କିଛି ନାହିଁ । ଅକୁ ପାଟିରେ ପବନ ଫୁଙ୍କି ଫୁଙ୍କି ଚିଉଇଙ୍ଗ୍ ଗମ୍ ବବଲ୍ କରି ଚାଲିଛି । ଅର୍ଥାତ୍ ସେ ବି କିଛି ଆଉ ପଚାରି ପାରିବନି କି କହି ପାରିବନି ।

ମୋର ରାଗ ଯେତିକି ନ ହେଲା, ତା'ଠୁଁ ବେଶୀ ଅଭିମାନ । ଆମ ପରିବାରରେ କେହି କେବେ ଭାରତ ମାଟି ବାହାରେ ପାଦ ଦେଇ ନାହିଁ, ନେପାଳ ଭୁଟାନ୍ ନୁହଁ କି ଶ୍ରୀଲଙ୍କା ବାଙ୍ଗ୍ଲାଦେଶ ନୁହଁ । ସେଇ ପରିବାରର ଝିଅଟିଏ ମୁଁ, ଏତେ ବଡ଼ ସୁଯୋଗ ପାଇଛି, ଅଥଚ ଦେଖ, କାହାର ଖାତିର ନାହିଁ ।

ସିରିଆଲ୍ ମଝିର ବିଜ୍ଞାପନ ଆରମ୍ଭ ହେଇଗଲା । ବୋଉ ତରବର ହେଇ ଉଠିଗଲା । ବିଜ୍ଞାପନର କେଇ ମିନିଟ୍ ଭିତରେ ସେ ବିଜୁଳି ବେଗରେ ରୋଷେଇ ଘରର ଦି' ଚାରିଟା କାମ କରିଦେବ । ଆଉ ଠିକ୍ ସିରିଆଲ୍ ଆରମ୍ଭ ବେଳକୁ ଆସି ବସିଯିବ ନିଜ ଜାଗାରେ । ବେଶ୍ କିଛି ବର୍ଷ ଧରି ଏଇମିତି କରୁ କରୁ ତା' ମସ୍ତିଷ୍କଟା ସେକେଣ୍ଡ ମିନିଟ୍‌ର ହିସାବ ରଖୁଥିବା ଗୋଟାଏ ଘଡି ହେଇ ସାରିଛି । ହେଲେ ଆଜି ଯେ ନନା ବି ଚାଲିଲେଣି ବୋଉ ପଛେ ପଛେ । ସେ ପୁଣି କେବେଠୁଁ ବୋଉକୁ ରୋଷେଇ ଘରେ ସାହାଯ୍ୟ କରିବାକୁ ତତ୍ପର ହେଲେଣି ?

'କ'ଣ ହେଲା ? କୁଆଡେ ଚାଲି ଯାଉଛ ? ନୋ ରିଆକ୍‌ସନ୍ ?' ମୁଁ ସିଧାସଳଖ ପଚାରିଲି ।

'ତୁ ରହ ଟିକିଏ । ଅପେକ୍ଷା କର ।' ନନା ବାହାରି ଯାଉ ଯାଉ କହିଲେ ।

'କ'ଣ ପାଇଁ ଅପେକ୍ଷା କରିବି ?' ମୁଁ ବିରକ୍ତ ହେଇ ଅକୁ ପାଖରେ ବସିଗଲି ।

ବିରକ୍ତ ହେବାର ଯଥେଷ୍ଟ କାରଣ ରହିଛି । ଆମ ପରିବାରଟା ଅନ୍ୟରକମ । ମୋର ଆଉ ପାଞ୍ଚଟା ସାଙ୍ଗଙ୍କ ପରିବାର ଭଳି ଅନ୍ତତଃ ନୁହଁ । ମୋତେ, ଅର୍ଥାତ୍ ଘରର ଝିଅକୁ ଏଠି ରକ୍ଷଣଶୀଳ ପରିବେଶ ଭିତରେ କେହି ବାନ୍ଧି କରି ରଖିନାହାନ୍ତି । ଯଥେଷ୍ଟ ସ୍ୱାଧୀନତା ଦେଇଛନ୍ତି । ପାଶ୍ଚାତ୍ୟ ଜଗତ ତୁଳନାରେ ସୀମିତ ହେଇପାରେ, ତେବେ ସ୍ୱାଧୀନତା ତ । ଏବେ ବିଦେଶ ଯିବା କଥା ଶୁଣି ସେମାନେ ମୁହଁ ବୁଲାଇ ନେଉଛନ୍ତି କାହିଁକି ? ବେଶ୍ କିଛି ଦିନ ଆଗରୁ ତ ଜାଣିଥିଲେ ଏଇଭଳି ଗୋଟାଏ ସମ୍ଭାବନା କଥା । ସେଥିପାଇଁ ଜେଜେବାପା, ଜେଜେମା'ଙ୍କ ଉପଦେଶକୁ ବି ଉପେକ୍ଷା କରିଦେଇଥିଲେ । ଆଉ ଏବେ ଏଇମିତି !

ମୁଁ ଯେତେବେଳେ ରାଞ୍ଚି ଇଞ୍ଜିନିୟରିଙ୍ଗ୍ କଲେଜରେ ସିଟ୍ ପାଇଗଲି,

ସେତେବେଳେ ଉଭୟ ଜେଜେବାପା ଆଉ ଜେଜେମା' ଅସନ୍ତୁଷ୍ଟ ହେଉଥିଲେ । କିନ୍ତୁ ବେଶୀ କିଛି କହି ପାରି ନ ଥିଲେ । ବହୁତ ଝିଅ ଆଜିକାଲି ବାହାରକୁ ପଢିବାକୁ ଯାଉଛନ୍ତି । ଏଇ କଥାରେ ବିରୋଧ କଲେ ଲାଭ କିଛି ହେବନି । ସେମାନଙ୍କ ପୁଅ ବୋହୂ, ଅର୍ଥାତ୍ ନନା, ବୋଉ ସେମାନଙ୍କ କଥା ରଖିବେ ନାହିଁ । ମୁଁ ରାଞ୍ଚି ଗଲି । ଇଞ୍ଜିନିୟରିଙ୍ଗ୍ ପାସ୍ କରିବା ପରେ ଭାରତର ଯେ କୌଣସି ସହରକୁ ଯିବା ପାଇଁ ମଧ୍ୟ ପ୍ରସ୍ତୁତ ହେଇଗଲି । ହେଲେ ସବୁଠାରୁ ଆଶ୍ଚର୍ଯ୍ୟଜନକ କଥା, ମୋ' ପସନ୍ଦର ଚାକିରିଟିଏ ମୋତେ ଭୁବନେଶ୍ୱରରେ ହିଁ ମିଳିଗଲା । ଯାହି-ତାହି କମ୍ପାନୀ ନୁହଁ, ଦେଶର ନାଁ କରା କମ୍ପ୍ୟୁଟର୍ କମ୍ପାନୀ ।

ଚାକିରି ଆରମ୍ଭ କରିବାର ବର୍ଷେ ପରେ ମୁଁ ଜାଣିଗଲି ଯେ ସେଇ ବର୍ଷ ମୋତେ ବିଦେଶ ଯିବାର ସୁଯୋଗ ମିଳିଯିବ । ଘରେ ସେ ଖବର ସମସ୍ତେ ଶୁଣି କି ଖୁସୀ ! ଜେଜେମା' ସେତେବେଳେ କହିଥିଲେ, 'ଏଥର ଶୀଘ୍ର ବାହା କରେଇ ଦିଅ । ବିଦେଶ ଯିବା ଆଗରୁ ବାହାଘର ହେଇଯିବା ଉଚିତ ।'

ବୋଉ ବି ମୁଣ୍ଡ ଟୁଙ୍ଗାରିଥିଲା । ହଁ ଭଲ ହେବ ।

କିନ୍ତୁ ମୁଁ ଜିଦି ଧରି ବସିଗଲି । ଏବେ ବାହା ହେବିନି ।

'କାହିଁକି ?'

ଏ କାହିଁକିର ଉତ୍ତର ନ ଦେଇ ମୁଁ ଓଲଟ ପ୍ରଶ୍ନ କରିଥିଲି – 'ତୁମେ ଡରୁଛ କି ? ... ଭୟ ନାହିଁ । ଭୟ ନାହିଁ । କୋଉ ସାହେବକୁ ଧରି ଆଣିବାର ପ୍ଲାନ୍ ଅନ୍ତତଃ ମୋର ନାହିଁ । ଆଉ କିଛି ଦିନ ଯାଉ, ତା'ପରେ ବାହାଘର ।'

ନନା ବୋଉ ନିଜ ନିଜ ଭିତରେ ଆଲୋଚନା କରି ଜେଜେବାପା, ଜେଜେମାଙ୍କୁ କହି ଦେଇଥିଲେ ସେଇ ଏକା କଥା – ଯାଉ ଏବେ ବର୍ଷେ ।

ମୁଁ ଠିକ୍ ଲଜ୍ଜାଶୀଳା ଭାରତୀୟ ନାରୀ ନୁହଁ, ତଥାପି ସେତେବେଳେ ହେମନ୍ତ କଥା ମୁଁ ସେମାନଙ୍କୁ କହି ପାରି ନ ଥିଲି । ଏପର୍ଯ୍ୟନ୍ତ ବି କହିନି ।

ମୋ' ସାଙ୍ଗରେ ଇଞ୍ଜିନିୟରିଙ୍ଗ୍ ପଢୁଥିଲା ହେମନ୍ତ । ପାସ୍ କରି ଏବେ ଏମ୍.ବି.ଏ. କରୁଛି ବାଙ୍ଗାଲୋରରେ । ଏମ୍.ବି.ଏ. ଶେଷ କରି ସେ ଚାକିରି କଲେ ଆମେ ଆମ ସମ୍ପର୍କକୁ ଆଉ ପାଦେ ଉପରକୁ ନେଇଯିବୁ । ଏକାଠି ସଂସାର କରିବୁ । ଅନ୍ତତଃ ସେଇ ଇଚ୍ଛା ଆମର ଅଛି । ହେମନ୍ତର ପରିବାର ଆମ ଭଳି । ମଧ୍ୟବିତ୍ତ ଓଡିଆ । ଆମ ଦୁହିଁଙ୍କ କଥା ଜଣାଜଣି ହେଇଗଲେ, ସମସ୍ତେ ଖୁସି ହେବା ଉଚିତ୍ । ଅନ୍ତତଃ ଦୁଇ ପକ୍ଷରୁ ପାରିବାରିକ ଆପତ୍ତି ନ ରହିବା ଉଚିତ । ହେଲେ କାହିଁକି ଯେ ଘରେ କାହାକୁ କିଛି ମୁଁ କହି ପାରନି, ସେକଥା ଠିକ୍ ବୁଝେଇ ପାରିବିନି । ହେମନ୍ତ କହିଛି, ଦଶହରାରେ

ଭୁବନେଶ୍ୱର ଆସିଲେ, ନିଜେ ଆସି ନନା ବୋଉଙ୍କ ସାଙ୍ଗରେ କଥାବାର୍ତ୍ତା କରିବ । ତା' ବାପା ମା'ଙ୍କୁ ମୋ କଥା କହିବ ।

ସେଇଥିପାଇଁ ବାହାଘର କଥାରେ ମୁଁ 'ଏବେ ନାହିଁ'ର ଜିଦ୍ ଧରି ବସିଯାଇଥିଲି । କହିଥିଲି, 'ଟିକିଏ ସ୍ୱାଧୀନ ଭାବରେ ବିଦେଶ ବୁଲିଆସେ, ତା'ପରେ ବାହାଘର ।'

ଯେତେବେଳେ ଖାଲି ଶୁଖିଲା ଆଲୋଚନା ହେଉଥିଲା, କିଛି ସ୍ଥିର ହେଇ ନ ଥିଲା, ସେତେବେଳେ ସମସ୍ତଙ୍କର କେତେ ହସ । କେତେ ଆନନ୍ଦ । ଅଥଚ ଏବେ ସେଇ ବିଦେଶ ଯାତ୍ରାର ସମ୍ବାଦ, ଆଉ ସମସ୍ତେ ଚୁପ୍ !

ବୋଉ ରୋଷେଇଘରୁ ଫେରି ଆସିଲା । ତା' ପଛେ ପଛେ ନନା । ବିଜ୍ଞାପନ ପର୍ଯ୍ୟାୟ ଶେଷ । କିନ୍ତୁ ଆଶ୍ଚର୍ଯ୍ୟ, ବୋଉ ଟେଲିଭିଜନ୍ ସିରିଆଲ୍‌କୁ ଫେରି ଗଲା ନାହିଁ । ମୋତେ ଅବାକ୍ କରିଦେଇ ଟେଲିଭିଜନ୍‌ଟାକୁ ବନ୍ଦ କରିଦେଲା ।

'ତୁ ଅଫିସ୍‌ରେ ମନା କରିଦେ ।'

'ଯା' ମାନେ କ'ଣ ?' ମୁଁ ଅଣ୍ଟାରେ ହାତ ଦେଲି । ନନା ବୋଉଙ୍କର ତା'ହେଲେ ରୋଷେଇଘରେ ଗୋଟାଏ ଆଲୋଚନା ହେଇଯାଇଛି ।

'ତୁ ରୋମ୍ ଯାଇ ପାରିବୁ ନାହିଁ ।'

'କାହିଁକି ?'

'ତୋର କିଛି ଧାରଣା ଅଛି ରୋମ୍ ସହର କଥା ? ସେଠି ଏମିତି ଲୋକ ଘୂରି ବୁଲୁଥାଆନ୍ତି, ଯିଏ କି ତୋ ଆଖିର କଜ୍ଜଳ ଚୋରି କରିନେବେ ।'

ମୋ ପାଟିରୁ ବାହାରି ଆସୁଥିଲା, 'ତା'ହେଲେ ସେଇ କେତେ ମାସ ମୁଁ ଆଖିରେ କଜ୍ଜଳ ପିନ୍ଧିବା ଛାଡିଦେବି', କିନ୍ତୁ ନିଜକୁ ଅଟକେଇ ଦେଲି । ଏଇଟା ଥଟ୍ଟାର ସମୟ ନୁହଁ ।

'ଆଉ କୋଉଠିକି ଯିବାର ହେଇଥିଲେ ଅଲଗା କଥା । ହେଲେ ରୋମ୍ ...'

'ବୋଉ, ରୋମ୍ ଇଟାଲୀର ରାଜଧାନୀ । ଇଉରୋପ୍‌ର ଗୋଟାଏ ଉନ୍ନତ ଦେଶ ଇଟାଲୀ । ... ମୁଁ କ'ଣ କୋଉ ଅଜଣା ଗ୍ରହକୁ ଯିବା କଥା କହୁଛି ନା କ'ଣ ?'

ନନା ଏଥର ଗଳା ଝାଡିଲେ । 'ଉନ୍ନତ ଅନୁନ୍ନତ କଥା ଏଠି ପଡିନି, ରୋମ୍ ସହରର ଦୁର୍ନାମ ଅଛି । ଆମ ଭାଇସ୍ ପ୍ରିନ୍‌ସିପାଲ୍ ମିଶ୍ର ବାବୁଙ୍କ ପୁଅ ଯାଇଥିଲା ବର୍ଷେ ତଳେ, ଏଆର୍‌ପୋର୍ଟ୍ ଭିତରେ ତା' ଲ୍ୟାପ୍‌ଟପ୍ ବ୍ୟାଗ୍ ଚୋରି ହେଇଗଲା । ଆଉ ଜଣଙ୍କର କ୍ୟାମେରା ବ୍ୟାଗ୍ ବି ।'

'ଚୋରିକୁ ଡରୁଛ ? ମୁଁ ସୁନା ଚୁଡି, ହାର, କାନଫୁଲ ଏଇଠି ରଖିଦେଇ ଯିବି । କ୍ରେଡିଟ୍ କାର୍ଡ୍ ବ୍ୟବହାର କରିବି । ପାଖରେ ବେଶୀ ଟଙ୍କା ରଖିବିନି । ହେଲା ?'

'ଖାଲି କ'ଣ ଟଙ୍କା ସୁନା ଚୋରିକୁ ଭୟ ?' ନନାଙ୍କ ସ୍ୱର ଅନ୍ୟରକମ । ଛବିଶ ବର୍ଷର ଝିଅ ପାଇଁ ତାଙ୍କର ଦୁଶ୍ଚିନ୍ତା । ଖବରକାଗଜ ଖୋଲିଲେ, ଟେଲିଭିଜନ୍‌ର ସମ୍ବାଦ ଦେଖିଲେ, ଆଗ ଆଖିରେ କାନରେ ପଡ଼େ ମହିଳାଙ୍କ ଉପରେ ହେଉଥିବା ଅତ୍ୟାଚାର କଥା । ଆତଙ୍କ ତ ରହିବ ମନରେ । ମୁଁ କିନ୍ତୁ ବୁଝି ମଧ୍ୟ ବୁଝୁ ନ ଥିଲି । ଏତେ ବଡ ଗୋଟାଏ ସୁଯୋଗ ହାତଛଡ଼ା କରିଦେବି ?

ନନା ମୁଣ୍ଡ ହଲେଇଲେ । 'ନା, ହେବନି । ବୋଉ ଠିକ୍ କହିଛି, ତୁ ଅଫିସ୍‌ରେ ମନା କରିଦେ ।'

ମୁଁ ରାଗିଯାଇ କିଛି କହିବା ଆଗରୁ ହଠାତ୍ ଅଳ୍କୁ କଥାବାର୍ତ୍ତା ମଝିକୁ ଡେଇଁ ପଡିଲା । ଏପର୍ଯ୍ୟନ୍ତ ବବଲ୍‌ଗମ୍ ଓ ମୋବାଇଲ୍ ଫୋନ୍ ଦୟାରୁ ତା'ପାଟିରେ କୋଳପ ପଡିଥିଲା । ନନା ବୋଉଙ୍କ ସାଙ୍ଗରେ ମୋର ଯୁକ୍ତି ଚାଲିଥିବା ବେଳେ ସେ ଉଠି ଯାଇ ବବଲ୍‌ଗମ୍ ଫୋପାଡି ଦେଇ ଆସିଛି । ସେ ମୋ' ପାଖରେ ଆସି ଠିଆ ହେଲା ।

'କାହିଁକି ନାନୀ ଯାଇ ପାରିବନି ?'

'ସମସ୍ତେ କହନ୍ତି– ଚୋର ଖଣ୍ଡଙ୍କ ଜାଗା । ମିଶ୍ରବାବୁଙ୍କ ପୁଅର ବ୍ୟାଗ୍ ଚୋରି ବୃତ୍ତାନ୍ତ ଶୁଣିଲେ ତୁ ଥକ୍କା ମାରିଯିବୁ ।'

'ସେ ବୃତ୍ତାନ୍ତ ଶୁଣିବା ଦରକାର ନାହିଁ । ସେଭଳି ଚୋରି ତ ପୃଥିବୀର ଯେ କୌଣସି ସହରରେ ହେଇପାରେ ।'

'କିନ୍ତୁ ମୁଁ ଯାହା ଯାହା ଶୁଣିଛି, ପଢିଛି, ରୋମ୍‌ରେ ବେଶୀ ।'

'ରାଞ୍ଚିଠୁଁ ବେଶୀ ?? ନାନୀକୁ ଏକା ଏକା ଚାରି ବର୍ଷ ପାଇଁ ରାଞ୍ଚି ଛାଡିଦେଲ, ଏବେ ଚାରି ମାସ ପାଇଁ ରୋମ୍ ଛାଡିବାକୁ ଡରୁଛ !' ଅଳ୍କୁର ଯୁକ୍ତି ଅକାଟ୍ୟ । ନନା ବୋଉ କିଛି କହିପାରିଲେ ନାହିଁ । ସତ କଥା, ରାଞ୍ଚିର ବା କି ସୁନାମ ।

'ହୁଁ ।' ଘର ଭିତରେ କେଇ ସେକେଣ୍ଡର ନିରବତା । ତା'ପରେ ନନା ରହି ରହି କହିଲେ, 'ମୁଁ ଭାବି କରି ଦେଖେ ।' ବୋଉ ଟେଲିଭିଜନ୍ ରିମୋଟ୍ ଟିପି ସିରିଆଲ୍‌କୁ ଫେରିଗଲା ।

ମୋ ଓଠରେ ହସ ଖେଳିଲା । ନନାଙ୍କର 'ଭାବି କରି ଦେଖିବା'– ମାନେ ହଁ ।

ଅଳ୍କୁକୁ ବାହାରକୁ ଟାଣିନେଇ ଫିସ୍‌ଫିସ୍ କରି କହିଲି, 'ଥ୍ୟାଙ୍କ୍ ୟୁ । ଥ୍ୟାଙ୍କ୍ ୟୁ ।'

'ଶୁଖିଲା ଧନ୍ୟବାଦରେ କାମ ଚଳିବ ନାହିଁ । ମୋ ପାଇଁ ଇଟାଲିଆନ୍ ଡିଜାଇନର୍‌ର ଟି-ସାର୍ଟ୍‌ଟିଏ ଆଣିଦେବାକୁ ହେବ ।'

'ମାତ୍ର ଗୋଟାଏ ? ମୁଁ ଦି' ଦିଇଟା ଟି-ସାର୍ଟ ଆଣିଦେବି ତୋ' ପାଇଁ । ଆଉ କ'ଣ କ'ଣ ଦରକାର ଲିଷ୍ଟ କରିଦେ ।'

'ଜିଓ ମେରେ ବିଗ୍ ସିଷ୍ଟର୍ !' ପୁଣି ଗୋଟାଏ ବବଲ୍‌ଗମ୍ ପାଟିରେ ପୂରେଇ ଦେଲା ଅଙ୍କୁ । ବର୍ତ୍ତମାନ ବାର୍ତ୍ତାଳାପ ବନ୍ଦ ।

ରାତିରେ ଖାଇବା ବେଳେ ପୁଣି ରୋମ୍ କଥା ଉଠିଲା । ନନା ବୋଉଙ୍କର ଏହା ଭିତରେ ଅଧିକ ଆଲୋଚନା ହେଇଯାଇଛି ନିଶ୍ଚୟ । 'କେମିତି ଯିବୁ ଏକା ଏକା ?'

'ଏତେ ଝିଅ ଯାଉଛନ୍ତି, ଯାଇ କାହିଁକି ପାରିବିନି ? ... ହେଲେ ମୁଁ ତ ଏକା ଯାଉନି ।'

'ଆଉ କିଏ ଯାଉଛି ?'

'ମୋ ବସ୍ ଆଜି କହିଲେ ଯେ ସେଠିକି ଯିବା ପାଇଁ ଆମେ ଦୁଇଜଣ ବଛା-ହେଇଛୁ । ଏଠିକା ଅଫିସ୍‌ରୁ ମୁଁ ଆଉ ଦିଲ୍ଲୀ ହେଡ୍ ଅଫିସ୍‌ରୁ ସିମ୍‌ରାନ୍ ।'

'ଝିଅଟିଏ ?'

'ହଁ । ସିମ୍‌ରାନ୍ ଭାଟିଆ । ଦିଲ୍ଲୀର ପଞ୍ଜାବୀ ଝିଅ ।' ମୁଁ 'ପଞ୍ଜାବୀ' ଶବ୍ଦ ଉପରେ ଜୋର୍ ଦେଇ କହିଲି । ନନା ବୋଉଙ୍କର ଭୟ କମିବ । ନିର୍ଭୟ ବୋଲି ପଞ୍ଜାବୀମାନଙ୍କର ସୁନାମ ଅଛି ।

'ପଞ୍ଜାବୀ ?' ନନା ବୋଉ ଉଭୟଙ୍କ ମୁହଁ ଉପରୁ ଆଶଙ୍କାର ପର୍ଦ୍ଦାଟା କିଏ ଯେମିତି ଘୁଞ୍ଚେଇ ଦେଲା ।

'ହଁ ।'

'ତା' ପାଖେ ପାଖେ ରହିବୁ । ହେଲା ?'

ମୁଣ୍ଡ ଟୁଙ୍ଗାରି ମୋ ରୁମ୍‌କୁ ମୁଁ ଚାଲିଗଲି । ଓଠରେ ହସ । ରୋମ ଯିବାର ଆନନ୍ଦରେ ତ ନିଶ୍ଚୟ । କିନ୍ତୁ ବେଶୀଟା ସିମ୍‌ରାନ୍ ଭାଟିଆ ପାଖେ ପାଖେ ରହିବାର ଉପଦେଶ ଯୋଗୁଁ ।

ଆମ କମ୍ପାନୀର ହେଡ୍ ଅଫିସ୍ ଦିଲ୍ଲୀ । ମୋତେ ମଝିରେ ମଝିରେ ଦୁଇ ତିନି ମାସରେ ଥରେ ଯିବାକୁ ହୁଏ । ସେତିକିବେଳେ ଆମ ପ୍ରୋଜେକ୍ଟ ଟିମ୍‌ର ସିମ୍‌ରାନ୍‌କୁ ମୁଁ ଦେଖିଛି । ପତଳୀ ଝିଅଟିଏ । ଫୁଙ୍କି ଦେଲେ ଉଡିଯିବ । ତା' ଉଚ୍ଚତା ପୁଣି ମୋ' କାନ୍ଧଯାଏଁ । ବେଶୀ କଥା କହେ ନାହିଁ । ଲ୍ୟାପ୍‌ଟପ୍‌ରେ ମୁହଁ ମାଡି ବସି ରହେ ସବୁବେଳେ । ସେ ପୁଣି ମୋ ସୁରକ୍ଷାର ଦାୟିତ୍ୱ ନେବ !

ଥାଉ, ଏସବୁ ନନା ବୋଉଙ୍କୁ ଖୋଲି ନ କହିଲେ ଭଲ । ମୁଁ ତ ମିଛ ଆଉ କହିନି, ଟିକିଏ 'ନରେ ବା ଗୁଞ୍ଜରେ ବା...' ନୀତି ଆଡକୁ ଢଳିଯାଇଛି । ସେଇଟା କ'ଣ ଠିକ୍ ଦୋଷରେ ଗଣା ? ସେତିକି ନ କରିଥିଲେ ତ ରୋମ୍ ଯିବା ନେଇ ଟଣା-ଓଟରା ଲାଗି ଯାଇଥାଆନ୍ତା ।

ଯାହେଉ, ତା'ପରେ ଆଉ ଅସୁବିଧା କିଛି ହେଇନି । ଆମ ଟିକେଟ୍, ଭିସା ବ୍ୟବସ୍ଥା ହେଲା । ଅଫିସ୍‌ରୁ କିଛି ଇଉରୋ ଆଉ ନିୟମକାନୁନର ଲମ୍ବା ତାଲିକା ମିଳିଲା । ଶେଷରେ ରୋମ୍‌ରେ ପହଞ୍ଚିଲୁ ଆମେ ଦୁଇଜଣ । ସିମ୍‌ରାନ୍ ଆଉ ମୁଁ । ସିମ୍‌ରାନ୍‌ର ଏଇଟା ପ୍ରଥମ ବିଦେଶ ଯାତ୍ରା ନୁହଁ । ସେ ଆଗରୁ ଥରେ ଲଣ୍ଡନ ଯାଇଛି । ପୁଣି ତା' ଆଗରୁ ଆଉ ଥରେ ସିଙ୍ଗାପୁର । ହେଲେ ଏଠି ପହଞ୍ଚିବା ମାତ୍ରକେ ସବୁ ଦାୟିତ୍ୱ ମୋତେ ହିଁ ନେବାକୁ ହେଲା । ରୋମ୍‌ର ଲିଓନାର୍ଡୋ ଦା ଭିନ୍‌ଚି ଏୟାରପୋର୍ଟ୍‌ର କଷ୍ଟମ୍ କ୍ଲିଅରାନ୍‌ସ୍‌ଠାରୁ ଆରମ୍ଭ କରି ଟ୍ୟାକ୍‌ସି ନେଇ ଆପାର୍ଟ୍‌ମେଣ୍ଟ୍‌କୁ ଯିବା ପର୍ଯ୍ୟନ୍ତ – ସବୁ କିଛି ।

ଚାରିମାସ ପାଇଁ ରହିବା କଥା ହେଉଛି, ସେଥିପାଇଁ ହୋଟେଲ୍ ବ୍ୟବସ୍ଥା ନକରି ଅଫିସ୍ ଆପାର୍ଟ୍‌ମେଣ୍ଟ୍ ଭଡାନେଇ ଯାଇଛି । ଆପାର୍ଟ୍‌ମେଣ୍ଟ୍‌ରେ ଦୁଇଟା ରୁମ୍ । ସବୁଠାରୁ ବଡ଼ କଥା, ସୁନ୍ଦର ରୋଷେଇଘରଟିଏ ଅଛି । ମଝିରେ ମଝିରେ ଟିକିଏ ଖେଚେଡି କି ଡାଲିଭାତ ରାନ୍ଧି ଖାଇ ହେବ ।

ତିନି ଚାରିଦିନରେ ସବୁ ଅଭ୍ୟାସରେ ପଡିଗଲା । ସକାଳୁ ଉଠି ପାଉଁରୁଟି ଅଣ୍ଡା କି ସିରିଆଲ୍ ଖାଇ କ୍ଲାଏଣ୍ଟର ପ୍ରୋଜେକ୍ଟ ଅଫିସ୍‌କୁ ଯାଅ, ସାରା ଦିନ ସେଇଠି ରହି ପୁଣି ବସ୍‌ଧରି ଫେରି ଆସ ଆପାର୍ଟ୍‌ମେଣ୍ଟ୍‌କୁ । ଆପାର୍ଟମେଣ୍ଟ୍‌ରେ ଯାହା ଯେମିତି ଟିକିଏ ରାନ୍ଧି ନେଇ ଖାଇ ଶୋଇ ପଡ଼ । ପୁଣି ସକାଳୁ ଉଠି ଦୌଡ଼ ଅଫିସ୍ ।

ଅସୁବିଧା କେବଳ ଗୋଟିଏ । ସିମ୍‌ରାନ୍‌ଟି ପକ୍କା ନିରାମିଶାଷୀ । ତା' ସାଙ୍ଗରେ ଏକାଠି ରହି ଏକାଠି ରୋଷେଇ କରିବାରୁ ମୋତେ ବି ନିରାମିଶାଷୀ ହେଇ ଚଳିବାକୁ ହେଲା । ଅଫିସ୍ କ୍ୟାଣ୍ଟିନ୍‌ରୁ କିଣୁଥିବା ଦି'ପହରର ଚିକେନ୍ ସାଣ୍ଡୱିଚ୍‌ଟା କ'ଣ ଆଉ ଆମିଷରେ ଗଣା ? ବେଳେବେଳେ ମୁଁ ଭାବେ ଯେ ଅଫିସ୍‌ରୁ ଫେରିବା ବେଳେ ମାଛ କି ମାଂସ କିଣିନେବି । ଘର ତ ମୋର ବି । ମୋ ନିଜ ରୁଚିରେ କ'ଣ ମୁଁ ରାନ୍ଧି ପାରିବିନି ? ହେଲେ ନିଜକୁ ଅଟକେଇ ଦିଏ ମୁଁ । ବିଚାରୀ ସିମ୍‌ରାନ୍‌ର ଅସ୍ୱସ୍ତି ହେବ । କ'ଣ ଦରକାର ? ତା'ଛଡା ସତରେ କ'ଣ ମୋର ବେଶୀ ରନ୍ଧାବଢା କରିବାକୁ ଆଗ୍ରହ ଥିଲା ନା ସମୟ ଥିଲା ?

ପୁଣି କଟିଗଲା ଆଉ କେଇଟା ସପ୍ତାହ । ସୋମରୁ ଶୁକ୍ର ସେଇ ଆଠ ନଅ ଘଣ୍ଟାର ଖଟଣି । ଶନି ରବି ଘରେ ରହେ କିଏ ? ଇଟାଲୀ ଆସିବାର ସୁଯୋଗ ମିଳିଛି, ପ୍ରଥମରୁ ତ ତା'ର ସଦୁପଯୋଗ କରିବାକୁ ହେବ । ସିମ୍‌ରାନ୍ ଆଉ ମୁଁ ଆଗରୁ ସ୍ଥିର କରି ନେଇ ବୁଲିବାକୁ ଚାଲିଯାଉଥିଲୁ । କୋଉ ଶନିବାର ଭାଟିକାନ୍ ସିଟି ତ କୋଉ ରବିବାର କଲୋସିୟମ୍ । ଥରେ ତ ସାହସ କରି ଦୁଇଦିନ

ପାଇଁ ଆମେ ଫ୍ଲୋରେନ୍ସ୍ ବୁଲି ଆସିଲୁ । ତା'ରି ଭିତରେ ମୋର ଆମିଷ ଖାଇବାର ଇଚ୍ଛାଟା ବେଶ୍ କିଛି ମାତ୍ରାରେ ପୂରଣ ହେଇଯାଇଥିଲା, କିନ୍ତୁ ମନ ଭରି ନ ଥିଲା । ଆହା, ଆମ ଭାରତୀୟ ରନ୍ଧା ରାନ୍ଧି କେହି ଖୁଆନ୍ତା ନାହିଁ ?

ବସ୍‌ରେ ଗଲାବେଳେ ଆଖିରେ ବେଳେବେଳେ ଭାରତୀୟ ରେସ୍ତୋରାଁ ଆଖିରେ ପଡେ । 'ବମ୍ବେ ପ୍ୟାଲେସ୍', 'ଇଣ୍ଡିଆ ଜୁଏଲ୍', 'ଆକ୍‌ବର୍' । ନାଁ ଗୁଡିକ ମନକୁ ଛୁଇଁଗଲା ଭଳି । କିନ୍ତୁ ଯେତିକି ଆଖିରେ ପଡେ, ପସନ୍ଦ ହୁଏ ନାହିଁ । ସେଠିକି ଯିବାକୁ ଇଚ୍ଛା ହୁଏ ନାହିଁ । ଆମ ଅଫିସ୍‌ରେ କେତେ ଜଣଙ୍କଠୁଁ ଶୁଣିଲି ଯେ ବହୁତ ଭଲ ଭଲ ଭାରତୀୟ ରେସ୍ତୋରାଁ ଅଛି, କିନ୍ତୁ ସେଭଳି ଜାଗାକୁ ଯିବା ପାଇଁ ଆମେ ସାହସ କରି ପାରିଲୁ ନାହିଁ । କ'ଣ ଦରକାର ଏତେ ଏତେ ଇଉରୋ ଖର୍ଚ୍ଚ କରିଦେବା ? ଭାରତୀୟ ଖାଇବା ଖାଇବାର ସୁଯୋଗ ମିଳିବନି କି ଆଉ ?

ମିଳି ବି ଗଲା ଦିନେ ।

ଆମ ପ୍ରୋଜେକ୍ଟ ଶେଷ ହେଇ ଆସୁଥିଲା । ଆଉ ମାତ୍ର ସପ୍ତାହକର ରହଣି ସେଠି । ହଠାତ୍ ଆମ ଡିପାର୍ଟ୍‌ମେଣ୍ଟର ଜଣେ ଭାଇସ୍ ପ୍ରେସିଡେଣ୍ଟ ଘୋଷଣା କଲେ ଯେ ସିମ୍ରାନ୍ ଆଉ ମୋତେ ଧନ୍ୟବାଦ ଜଣେଇବାକୁ ସେ ପରଦିନ ଗୋଟାଏ ଡିନାର୍‌ର ଆୟୋଜନ କରିଛନ୍ତି । ରୋମ୍‌ର ସବୁଠାରୁ ଭଲ ଭାରତୀୟ ରେସ୍ତୋରାଁରେ । ଆମର କିଛି ଅସୁବିଧା ନାହିଁ ତ ?

'ମଲୁ ଖୋଜୁଥିଲା କାକର ପାଣି, ବଇଦ କହିଲା ଦେ ତୋରାଣି ।' ଆମର ପୁଣି ଅସୁବିଧା !

'ମୁଁ ସାଲ୍‌ୱାର୍ କମିଜ୍ ପିନ୍ଧି ଯିବି ଡିନାର୍‌କୁ ।' ସିମ୍ରାନ୍ ସେଦିନ ଘରକୁ ଫେରିବା ବେଳେ କହିଲା ।

'ମୁଁ ଶାଢି ପିନ୍ଧିଲେ କେମିତି ହେବ ?' ମୁଁ ବି ତା'ଭଳି ଉତ୍ସାହିତ ହେଇ ପଡିଲି ।

'ମଜା ଆ ଯାଏଗା ।'

ଜିନିଷ ସଜାଡି ଆସିବା ବେଳେ ସ୍କାର୍ଟ୍, ବ୍ଲାଉଜ୍, ଜ୍ୟାକେଟ୍, ପ୍ୟାଣ୍ଟ ସାଙ୍ଗରେ ମୁଁ ଖଣ୍ଡିଏ ଶାଢି ବି ସୁଟ୍‌କେଶ୍‌ରେ ରଖି ଦେଇଥିଲି । ଯଦି ଦରକାର ହୁଏ । ଏବେ ସେଇଟା ' କାମରେ ଲଗେଇବାକୁ ହେବ ।

'ହେଲେ ଶାଢି, ସାଲ୍‌ୱାର୍ କମିଜ୍ ପିନ୍ଧି ବସ୍‌ରେ ?? ସମସ୍ତେ ବଲ ବଲ କରି ଚାହିଁବେ ।'

'ଟ୍ୟାକ୍ସିରେ ଯିବା ।' ମୁଁ ଆଗେ ସାଙ୍ଗେ ନିଷ୍ପତ୍ତି ନେଇଗଲି ।

'ସେଇ ଭଲ ।'

ଆପାର୍ଟମେଣ୍ଟରେ ଥିବା ଟେଲିଫୋନ୍ ଡାଏରେକ୍ଟରି ଦେଖି ମୁଁ ଟ୍ୟାକ୍ସିଟିଏ ଡକେଇ ଦେଲି ଏବଂ ଆମେ ବାହାରି ପଡ଼ିଲୁ । ଭାରତୀୟ ରେଷ୍ଟୋରାଁଟି ସହରର ଆଭିଜାତ୍ୟ ପଡ଼ାରେ, ମୁଁ କାଗଜରେ ଲେଖି ନେଇଥିବା ଠିକଣା ଦେଖି ଟ୍ୟାକ୍ସି ଡ୍ରାଇଭରଟି ନିଜର ଭଙ୍ଗା ଇଂରାଜୀରେ ଆମକୁ ଜଣେଇଲା । ଆମ ଆପାର୍ଟମେଣ୍ଟଠୁଁ ବେଶ୍ ଦୂର, କିନ୍ତୁ ପାଇବାକୁ ଜମା ଅସୁବିଧା ହେବ ନାହିଁ । ସତରେ ଅସୁବିଧା ହେଲା ନାହିଁ । ହେଲେ ପର୍ସ ଖୋଲି ଟ୍ୟାକ୍ସି ଭଡ଼ା ଗଣିବା ବେଳେ ମୋର ମନେ ହେଲା ମୋ' ଦେହରୁ କିଏ ଯେମିତି ପଞ୍ଚେ ରକ୍ତ ନେଇଗଲା । ଏତେ ବେଶୀ ! ଏତିକିରେ ତ ଅନ୍ତୁ ପାଇଁ ଗୋଟାଏ ଭଲ ଜ୍ୟାକେଟ୍ ହେଇଯାଇଥାଆନ୍ତା !

'ଆଉ ଟ୍ୟାକ୍ସି ନୁହଁ । ଫେରିବା ବେଳେ ବସ୍‌ରେ ଯିବା । ବସ୍‌ର ଲୋକମାନେ ହାଁ କରି ଆମକୁ ଦେଖିଲେ ଦେଖନ୍ତୁ ।' ରେଷ୍ଟୋରାଁ ଭିତରେ ପାଦ ଦେବା ବେଳେ ମୁଁ ଫିସ୍ ଫିସ୍ କରି କହିଲି । ଆଉ ମୋ କଥାରେ ମୁଣ୍ଡ ଟୁଙ୍ଗାରିଲା ସିମ୍‌ରାନ୍ । ସେ ବି ଟ୍ୟାକ୍ସି ଭଡ଼ା ଦେଖି ସ୍ତବ୍ଧ ।

ଆମର ଏଗାର ଜଣିଆ ପ୍ରୋଜେକ୍ଟ ଗ୍ରୁପ୍ । ଭାଇସ୍ ପ୍ରେସିଡେଣ୍ଟଙ୍କୁ ମିଶେଇ ବାର ଜଣ । ସମସ୍ତେ ଠିକ୍ ଆଠଟା ସୁଦ୍ଧା ପହଞ୍ଚିଗଲେ । ତା'ପରେ ଖିଆ ପିଆ ।

ସିମ୍‌ରାନ୍ ଆଉ ମୁଁ ତ ଅବାକ୍ ହେଇଗଲୁ । ଖିଆ ତ ଖିଆ, ପିଆର ଯେମିତି ଅନ୍ତ ନାହିଁ ଏଠି । ଶେଷରେ ରସମଲାଇ ଆଉ ରାବିଡ଼ି ଖାଇ ଯେତେବେଳେ ଆମେମାନେ ଉଠିଲୁ, ସେତେବେଳେ ରାତି ଏଗାରଟା ଉପରେ ।

'ଯିବ କେମିତି ?' ଆମ ପ୍ରୋଜେକ୍ଟ ଗ୍ରୁପ୍‌ର ମାଇକେଲ୍ ଆମକୁ ପଚାରିଲା ।

'ଚାଲିଯିବୁ । କିଛି ଅସୁବିଧା ନାହିଁ ।' ମୁଁ ହସି ଦେଇ କହିଲି ।

'ତୁମେମାନେ ତ ଟ୍ୟାକ୍ସିରେ ଏଠିକି ଆସିଲ । ନୁହଁ କି ?'

ସିମ୍‌ରାନ୍ ମୁଣ୍ଡ ଟୁଙ୍ଗାରିଲା ।

'ମୁଁ ଫୋନ୍ କରି ଟ୍ୟାକ୍ସିଟିଏ ଡକେଇଦେବି ?'

'ଥ୍ୟାଙ୍କସ୍, କିନ୍ତୁ ଦରକାର ହେବନି । ଏବେ ବି ଏଠି ଏତେ ଲୋକ, ଏତେ ଗାଡ଼ି । ଆମକୁ ରାସ୍ତାରେ ଟ୍ୟାକ୍ସି ମିଳିଯିବ ।'

'ତା' ଠିକ୍ । ଆଜି ଶନିବାର । ସେପାଖର ପ୍ରଧାନ ରାସ୍ତାକୁ ଚାଲିଯାଅ । ସହଜରେ ଟ୍ୟାକ୍ସି ପାଇଯିବ ।' ସାମାନ୍ୟ ଟଳମଟଳ ପାଦରେ ମାଇକେଲ୍ ତା' ଗାଡ଼ି ଆଡ଼କୁ ଚାଲିଗଲା । ଆଜି ରାତିରେ ଆଉ ପୋଲିସ୍ ନ ଧରୁ ତାକୁ ।

ଆମେ ଅନ୍ୟମାନଙ୍କୁ 'ଗୁଡ୍ ନାଇଟ୍' ଜଣେଇ ବାହାରିଗଲୁ । ସେମାନଙ୍କର

ଏବେ ବି ଆଲୋଚନା ଚାଲିଛି । କୋଉ ଗୋଟାଏ ପବ୍‌କୁ ଯିବାର ଯୋଜନା । ବାବ୍ରାଃରେ, ଜୀବନକୁ ଉପଭୋଗ କରି ଜାଣନ୍ତି ସେମାନେ ।

'ସତରେ ଟ୍ୟାକ୍ସି ନେବା ?' ନିଜ ଓଢଣି ସମ୍ଭାଳି ଚାଲୁ ଚାଲୁ ସିମ୍‌ରାନ୍ ପଚାରିଲା ।

'ମୁଣ୍ଡ ଖରାପ ? ଆଉ ପୁଣି ଟ୍ୟାକ୍ସି ! ବସ୍ ମିଳିଯିବ ଯେ ।'

ନାଇଟ୍ ବସ୍ ମିଳିବାରେ ଅସୁବିଧା ହେବନି । ଯେ କୌଣସି ବସ୍ ଧରି ପ୍ରଧାନ ବସ୍ ଷ୍ଟାଣ୍ଡକୁ ଚାଲିଗଲେ ହେଲା । ଆମ ଆପାର୍ଟମେଣ୍ଟ ପାଖକୁ ଯାଉଥିବା ବସ୍ ନମ୍ବରତକ ଏହା ଭିତରେ ଆମର ମୁଖସ୍ଥ । କିନ୍ତୁ ବସ୍ ଷ୍ଟପ୍‌ଟା କୋଉଠି ? ରାସ୍ତା କଡରେ ଠିଆହେଇ କୌଣସି ବିଷୟରେ ଗଭୀର ଆଲୋଚନା କରୁଥିବା ଚାରିଜଣ ବୟସ୍କ ଲୋକଙ୍କୁ ମୁଁ ପଚାରିଲି । ଆମ ଆଡେ ଭଲ କରି ନ ଚାହିଁ ଜଣେ ଆଙ୍ଗୁଠି ଦେଖାଇ ଦେଲା ବାଁ କଡ଼କୁ ଚାଲି ଯାଇଥିବା ରାସ୍ତା ଆଡ଼େ ।

ମୋତେ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ବସ୍ ଷ୍ଟପ୍‌ଟା ପ୍ରଧାନ ରାସ୍ତାରେ ନ ହେଇ ସେପାଖର ଗଳି ରାସ୍ତାରେ ? କିଏ ଜାଣେ, ହେଇଥିବ । ଏ ଆଭିଜାତ୍ୟ ଅଞ୍ଚଳର ଲୋକମାନଙ୍କ ପାଇଁ ହୁଏତ ବସ୍‌ର ବିଶେଷ ଆବଶ୍ୟକତା ନାହିଁ ବୋଲି ଏପଟେ ବସ୍ ଷ୍ଟପ୍ ହିଁ ନାହିଁ ।

ସିମ୍‌ରାନ୍ ଆଉ ମୁଁ ଚାଲିଲୁ । ଏ ପାଖରେ ପ୍ରଧାନ ରାସ୍ତାର ଭିଡ଼ ନାହିଁ । ଦୋକାନ ବଜାର, ହୋଟେଲ୍ କିଛି ବି ନାହିଁ । ରାସ୍ତାର ଗୋଟାଏ ପାଖରେ ବିରାଟ ଅନ୍ଧାରିଆ ପାର୍କ୍ । ଗେଟ୍‌ରେ ତାଲା ଝୁଲୁଛି । ସନ୍ଧ୍ୟା ପରେ ବୋଧହୁଏ ଖୋଲା ରହିବାର ନିୟମ ନାହିଁ । ଅନ୍ୟ ପଟେ ସ୍କୁଲଟିଏ । ସ୍କୁଲ୍ ପାଖରେ କେଇଟା ସରକାରୀ ଅଫିସ୍ । ସେସବୁ ବି ବନ୍ଦ । ଗେଟ୍ ଉପରେ କମ୍ ପାୱାରର ଆଲୁଅ ଜଳୁଛି ଯାହା । ବସ୍ ଷ୍ଟପ୍ କାହିଁ ?

ମୋର ଟିକିଏ ଅସ୍ୱସ୍ତି ହେଲା । କିନ୍ତୁ ମୁଁ ଯଦି ନିଜର ଅସ୍ୱସ୍ତି କଥା ଏବେ ସିମ୍‌ରାନ୍‌କୁ କହେ, ବିଚାରୀ ବୋଧହୁଏ ଭୟରେ ଅଜ୍ଞାନ ହେଇଯିବ । ମୁଁ ଆଗ ଭଳି 'ହୁଁ', 'ହାଁ' ମାରି ତା' କଥା ଶୁଣିଗଲି । ସିମ୍‌ରାନ୍ କହି ଚାଲିଛି ତା' ଭଉଣୀର ରିସର୍ଚ୍ଚ କଥା । କାନ୍‌ପୁର୍ ଆଇ.ଆଇ.ଟି.ରୁ ପାସ୍ କରିବା ପରେ ଆମେରିକା ଚାଲିଯାଇଛି ସେ । ଏବେ କ୍ୟାଲ୍‌ଟେକ୍‌ରେ ପିଓର୍ ଫିଜିକ୍‌ସ୍‌ରେ ପିଏଚ୍‌ଡ଼ି କରୁଛି । 'ବଡ଼ ଇଣ୍ଟେରେଷ୍ଟିଙ୍ଗ୍ ତା' ସବ୍‌ଜେକ୍ଟ୍ ...' ଉତ୍ସାହିତ ଭାବରେ କହିଚାଲିଥିଲା ସିମ୍‌ରାନ । ଯାହା ଜଣାପଡୁଛି, ବିଜ୍ଞାନ-ପାଗଳ ପରିବାରଟା । ମୁଁ ତା' କଥାରେ ମନ ଦେଲି ।

ଦୁଇଜଣଯାକ ଗପୁ ଗପୁ ବେଶ୍ କିଛି ବାଟ ଚାଲିଗଲୁ । ହଠାତ୍ ମୁଁ ସମ୍ବିତ

ଫେରି ପାଇଲି । ବସ୍ ଷ୍ଟପ୍ କାହିଁ ? ମୁଁ ପଛକୁ ଫେରି ଚାହିଁଲି । ପ୍ରଧାନ ରାସ୍ତାଟି ରହିଗଲାଣି କାହିଁ ପଛରେ । ସେଠିକାର ଶବ୍ଦ ଆଉ ଆମକୁ ଶୁଣାଯାଉନି କିମ୍ବା ରାସ୍ତାର ଆଲୁଅ ମଧ୍ୟ ଆଖିରେ ପଡୁନି । ଏ କି ନିର୍ଜନ ଜାଗାରେ ଆସି ପହଞ୍ଚିଗଲୁ ଆମେ ଦୁହେଁ ? ଏଠି ତ ବସ୍ ଷ୍ଟପ୍‌ର ଚିହ୍ନ ବର୍ଣ୍ଣ ନାହିଁ । ସେ ବୟସ୍କ ଲୋକଜଣକ ତା'ହେଲେ କାହିଁକି ଏଇ ରାସ୍ତା ଆଡେ ଆଙ୍ଗୁଠି ଦେଖାଇ ଦେଲେ ? ମୋ ପ୍ରଶ୍ନ କ'ଣ ସେ ବୁଝି ପାରିଲେ ନାହିଁ ?

ମୋର ଅସ୍ୱସ୍ତି ବଢିଲା । ମୋ ପ୍ରଶ୍ନ ବୁଝି ନ ପାରିବାଟା ଅସମ୍ଭବ ନୁହଁ । ଏଠି ତ ଅଧିକାଂଶ ଲୋକ କେବଳ ଇଟାଲିଆନ୍ କହନ୍ତି, ବୁଝନ୍ତି । ଇଂରାଜୀର ବ୍ୟବହାର ବହୁତ କମ୍ ।

ମୋ' ଅସ୍ୱସ୍ତି ବୋଧହୁଏ ସିମ୍‌ରାନ୍ ଆଖିରେ ପଡିଗଲା । କଥା ମଝିରେ ଚୁପ୍ ହେଇଗଲା ସେ । ରହି ରହି ପଚାରିଲା, 'ୟେ ହମ୍ ଲୋଗ୍ କହାଁ ଆ ଗୟେ, ୟାର୍ ? ୟହାଁ ତୋ କୁଛ୍ ଭି ନହିଁ ।'

ମିଛ ନୁହଁ, ଆଉ ଏପାଖରେ କିଛି ନାହିଁ । ସରକାରୀ ଅଫିସ୍ ପରେ ବଡ଼ ଗୋଟାଏ ପଡିଆ ଆଖିରେ ପଡିଥିଲା । ତା'ପରେ ଗୋଟାଏ ଭାଷା ମିଉଜିଅମ୍ କି ସେଇଭଳି କିଛି । ଆଉ ଏବେ କେବଳ ଦି' କଡ଼ରେ ଜଙ୍ଗଲିଆ ବୁଦା ।

'ଆଉ ଟିକିଏ ବାଟ ଚାଲି କରି ଦେଖିବା । ନହେଲେ ଫେରିଯିବା । ମେନ୍ ରୋଡ୍‌ରୁ ଟ୍ୟାକ୍ସି ନିଶ୍ଚୟ ମିଳିଯିବ ।' ମୁଁ ସାହସ ଦେଖାଇଲି । ଶାଢି ସାଙ୍ଗରେ ପିନ୍ଧିଥିବା ହିଲ୍ କଷ୍ଟ ଦେଲାଣି । ପୁଣି ଏତେଟା ବାଟ ଚାଲି ଚାଲି ଫେରିବା କଥା ଭାବିଦେଲେ ପ୍ରାଣ ଶୁଖିଯାଉଛି ।

'ଆରେ, ଦେଖୋ ଦେଖୋ !' ହଠାତ୍ ପିଲାଙ୍କ ଭଳି ପାଟି କରି ଉଠିଲା ସିମ୍‌ରାନ୍ । ଅଳ୍ପ ଦୂରରେ କଂକ୍ରିଟ୍‌ର ଛାତ । ଚାରି ପଟ ଖୋଲା । ଆଉ ସେଇଠି ରହିଛି ଚାରିଟା ବସ୍ ।

ବସ୍ ! ବସ୍ ଷ୍ଟପ୍ ଆସିଗଲା ତା'ହେଲେ ?

ଆମେ ବଡ଼ ବଡ଼ ପାଦ ପକେଇ ସେଠି ପହଞ୍ଚିଗଲୁ । ହେଲେ କି ଆଶ୍ଚର୍ଯ୍ୟ, ଏଠି ବସ୍‌ର ନମ୍ବର ଲେଖା କୌଣସି ବୋର୍ଡ ନାହିଁ । ଏ କିଭଳି ବସ୍ ଷ୍ଟପ୍ ? 'କାହାକୁ ଟିକିଏ ପଚାରିଲେ ହୁଅନ୍ତା ନାହିଁ ?' ସିମ୍‌ରାନ୍ କହିଲା ।

କାହାକୁ ଆମେ ପଚାରିବୁ ? ଏଠି ତ ଗୋଟାଏ ବି ମଣିଷ ନାହିଁ । ମୁଁ ଚାରିଆଡେ ଆଖି ବୁଲେଇଲି ।

'ହେଇ, ସେଇଠି ...' ସିମ୍‌ରାନ୍ ଆଙ୍ଗୁଠି ଦେଖାଇଲା । ଅଳ୍ପ ଦୂରରେ

ଗୋଟାଏ ବନ୍ଦ ଦୋକାନ ସାମ୍ନାର ଅଧା ଅନ୍ଧାରରେ ରହିଛି ସ୍କୁଟର୍‌ଟିଏ । ତା'ରି ଉପରେ ଉବୁଙ୍କି ପଡି ଆମକୁ ପଛ କରି ଠିଆ ହେଉଛନ୍ତି ଦୁଇଜଣ । କଳା ଜିନ୍‌ପିନ୍ଧା ଝିଅ । ଅଣ୍ଟା ପର୍ଯ୍ୟନ୍ତ ଲମ୍ବା ବାଳ ରବରବ୍ୟାଣ୍ଡରେ ବନ୍ଧା । ନିବିଷ୍ଟ ଭାବରେ ନିଜ ନିଜ ଭିତରେ ସେମାନେ କ'ଣ କଥାବାର୍ତ୍ତା କରୁଛନ୍ତି । କଥା ଶୁଣା ଯାଉ ନାହିଁ । କଣ୍ଠ ସ୍ୱର ଆମ ପର୍ଯ୍ୟନ୍ତ ଆସି ପାରୁ ନାହିଁ ।

ଆମେ ଦୁଇ ପାଦ ଆଗେଇ ଗଲୁ ।

'ଏକ୍‌ସକ୍ୟୁଜ୍ ମି ।'

ଆମକୁ ପଛ କରି ଠିଆ ହେଇଥିବା ଦୁଇ ଜଣ ଦେହ ସଳଖି ଠିଆ ହେଇ ମୁହଁ ବୁଲାଇଲେ ।

'ଓ ମାଇଁ ଗଡ୍ !' ଖପ୍ କରି ମୋ ବାଁ ହାତର କଚଟିକୁ ଚାପି ଧରିଲା ସିମ୍‌ରାନ୍ । ମୋ' ଛାତିଟା ବି ଚାଉଁ କରି ହେଇଗଲା । ଏ ଦୁଇ ଜଣ ତ ଝିଅ ନୁହନ୍ତି, ଅଠେଇଶ ତିରିଶ ବର୍ଷର ଦୁଇ ଜଣ ଯୁବକ । ଲମ୍ବା କଲି, ଅଣ୍ଟା ପର୍ଯ୍ୟନ୍ତ ଲମ୍ବା ବାଳ । ପଛ ପଟୁ ଦେଖି ମନେ ହେଇଥିଲା ଝିଅ, ହେଲେ ଏବେ ସେମାନଙ୍କ ମୁହଁରେ ରାସ୍ତାର ଆଲୁଅ ପଡିଛି । ମୁଁ ପରିଷ୍କାର ଦେଖି ପାରୁଛି ସେମାନଙ୍କର ଲାଲ୍ ଲାଲ୍ ଆଖି, ଦାଢି କଟା ହେଇ ନ ଥିବା ରୁକ୍ଷ ଚେହେରା ।

ଏବେ ଏ ଦୁର୍ଯୋଗର ଆମେ କିଭଳି ସାମ୍ନା କରିବୁ ? ମୋ' ମୁଣ୍ଡ ଭିତର ଧପ୍ ଧପ୍ ହେବା ଆରମ୍ଭ ହେଇଗଲା । ନିର୍ଜନ ରାସ୍ତା ବରଂ ଭଲ ଥିଲା । ଏଠି ଏଭଳି ଦୁଇ ଜଣଙ୍କର ଆବିର୍ଭାବ ଯେ ଭୟଙ୍କର । ଯଦି ଥରେ ମୁଁ ଜାଣିଥାଆନ୍ତି ଯେ ଏ ଦୁଇ ଜଣ ଝିଅ ନୁହନ୍ତି, ତା'ହେଲେ ମୁଁ କେବେହେଲେ ସେମାନଙ୍କର ଦୃଷ୍ଟି ଆକର୍ଷଣ କରି ନ ଥାଆନ୍ତି । ମୋ ପାଟିରୁ ଅନ୍ତତଃ ବାହାରି ନ ଥାଆନ୍ତା 'ଏକ୍‌ସ୍‌କ୍ୟୁଜ୍ ମି ...'

ଏବେ କ'ଣ ହେବ ?

ଗୁଣ୍ଡା ଚେହେରାର ଦୁଇ ଜଣ ନିଜ ନିଜ ଭିତରେ ପୁଣି କ'ଣ ଟିକିଏ କଥାବାର୍ତ୍ତ କଲେ । କ'ଣ ? ଆମକୁ ଆକ୍ରମଣ କରିବାର ପ୍ଲାନ୍‌ଟା ଟିକିଏ ସଜାଡି ନେଲେ କି ? ନନା, ବୋଉ ଠିକ୍ କହିଥିଲେ । ଏମିତି ଡଗ ଡଗ ହେଇ ରୋମ୍ ଚାଲି ଆସିବାଟା ମୋର ଜମା ଉଚିତ୍ ହେଇନି । ଏବେ କ'ଣ ହେବ ?

ସେମାନେ ବଡ଼ ବଡ଼ ପାଦ ପକାଇ ଆମ ସାମ୍ନାରେ ପହଞ୍ଚିଗଲେ । ନିଜ ଭାଷାରେ କ'ଣ ପଚାରିଲେ, ଆମେ ବୁଝିଲୁ ନାହିଁ । ସେତିକିବେଳେ ବୋଧହୁଏ ସେମାନଙ୍କ ଆଖିରେ ପଡିଲା ଆମର ପୋଷାକ । ସିମ୍‌ରାନ୍‌ର ସାଲ୍‌ଓ୍ୱାର୍ କମିଜ୍, ମୋର ଶାଢି । ଏଥର ଆମ ଦୁହିଁଙ୍କୁ ମୁଣ୍ଡଠୁଁ ଗୋଡ ଯାଏଁ ଭଲରେ ଦେଖିନେଲେ

ସେମାନେ । ଓଠରେ ଅଦ୍ଭୁତ ହସ ଖଣ୍ଡିଏ ଖଣ୍ଡିଏ ଖେଳିଲା ।

କଡ଼ା ମଦର ଗନ୍ଧ ଚାରିଆଡ଼େ ଖେଳାଇ ଜଣେ ଇଂରାଜୀରେ କହିଲା, 'ୟେସ୍ ? ଟେଲ୍ ମି । କୁହ ।'

'ଆ... ଆମେ ବସ୍ ଷ୍ଟପ୍ ଖୋ... ଖୋଜୁଛୁ ।'

'ବସ୍ ଷ୍ଟପ୍ ?'

'ହଁ । ଜଣେ କହିଲା ଯେ ଏଇ ରାସ୍ତାରେ ... । ହେଲେ ଏଠି ବସ୍ ଅଛି, ଡ୍ରାଇଭର୍ ନାହିଁ ।'

'ଏଇଟା ତ ବସ୍ ଷ୍ଟପ୍ ନୁହଁ, ଛୋଟ ବସ୍ ଡିପୋ । ରାତିରେ କେଇଟା ବସ୍ ରହେ ସକାଳ ପର୍ଯ୍ୟନ୍ତ । ... ଆମ ସାଙ୍ଗରେ ଚାଲ, ବସ୍ ଷ୍ଟପ୍ ଦେଖାଇଦେବୁ ।' ସେଜଣକ ଅନ୍ୟ ଜଣକୁ ପୁଣି ଇଟାଲିଆନ୍ ଭାଷାରେ କିଛି କହିଲା । ଆଉ ମଣିଷଟି ମୁଣ୍ଡ ତଳକୁ ଟୁଙ୍ଗାରି ଟୁଙ୍ଗାରି କହିଲା, 'ୟେସ୍ କମ୍ । କମ୍ ।'

ପ୍ରଭୁ ହେ, ଏ କି ଭୟଙ୍କର ଅବସ୍ଥା ! କୁଆଡେ ଡାକି ନେଉଛନ୍ତି ଆମକୁ ସେମାନେ ? ଏବେ ଆମେ କ'ଣ କରିବୁ ? ସାଙ୍ଗରେ ଗଲେ ମଲୁ । ନ ଗଲେ ଛୁରି, ବନ୍ଧୁକ ଯେ ନ ବାହାରି ଆସିବ, ତା' କିଏ ଜାଣେ ? ମୋ ହାତ ଉପରେ ସିମ୍ରାନ୍‌ର ମୁଠା ଜୋର୍ ହେଉଥିଲା ।

'କ'ଣ ହେଲା, ଆସ ।' ଇଂରାଜୀ କହୁଥିବା ଜଣକ ପୁଣି କହିଲା, 'ନାଓ ଫଲୋ ଅସ୍ ।' ତା' ସ୍ୱରରେ ବ୍ୟସ୍ତତା । କାହିଁକି ?

ଏବେ ବୁଲି ପଡି ପଛକୁ ଧାଇଁଲେ କେମିତି ହୁଅନ୍ତା ?

ଉଭଟ ଚିନ୍ତା । ଶାଢ଼ି, ସାଲ୍‌ୱାର୍ କମିଜ୍, ହିଲ୍ ପିନ୍ଧି ଆମେ ଆଉ କେତେ ଦୂର ଧାଇଁ ପାରିବୁ ? ଗୋଟାଏ ଡିଆଁରେ ମାଡି ବସିବେ ସେମାନେ । ଆଉ ଏଠି ପାଟି କରି ବି କାହାକୁ ଡାକି ହେବନାହିଁ । ଏ ଖଣ୍ଡମଣ୍ଡଳରେ କେହି କୁଆଡ଼େ ନାହାନ୍ତି ।

'ହରି ଅପ୍ ।' ସ୍ୱର ରୁକ୍ଷ ।

ଠିକ୍ ଅଛି, ଯାହା ହେବ ଦେଖାଯିବ । ଏବେ ଅନ୍ତତଃ ପ୍ରାଣ ବଞ୍ଚୁ । ମୁଁ ଚାଲିଲି ସେମାନଙ୍କ ପଛେ ପଛେ । ଆଉ ମୋ ସାଙ୍ଗରେ ଟାଣି ହେଇ ସିମ୍ରାନ୍ । ସେମାନେ କିଛି ପଚାରୁ ନାହାନ୍ତି କି ଆମେ କିଛି କହି ପାରୁନୁ । କିଛି ବାଟ ଯାଇ ଡାହାଣକୁ ବଙ୍କିଗଲେ ସେମାନେ । କଣେଇ ଥରେ ଦେଖିନେଲେ ଆମେ ଆସୁଛୁ କି ନାହିଁ ।

ଅଳ୍ପ ବାଟ । ତା'ପରେ ... ତା'ପରେ ...

ଆମ ସାମ୍ନାରେ ଛୋଟ ବସ୍‌ଷ୍ଟପ୍‌ଟିଏ । ସେଇଟା ବି ନିର୍ଜନ ।

ଦୂରରେ ଦିଇଟା ଲାଇଟ୍ ଆଗେଇ ଆସୁଥିଲା । ଇଂରାଜୀ କହୁଥିବା ଯୁବକଟି

ଏଥର କହିଲା, 'ଏଇ ତ, ବସ୍ ଆସିଗଲା । ଏତେ ଧୀରେ ଧୀରେ ଚାଲୁଥିଲ ତୁମେମାନେ, ମୋର ଭୟ ହେଇଯାଇଥିଲା । ଜାଣିଛ, ଏଇ ବସ୍‌ଟା ଧରି ନ ପାରିଥିଲେ ତୁମେମାନେ ବହୁତ ହଇରାଣ ହେଇଯାଇଥାଆନ୍ତ । ଏଇଟା ଆଜିର ଶେଷ ବସ୍ ।'

ମୁଁ କଥା କହିବା ଭୁଲିଯାଇଥିଲି ।

'ଏ ବସ୍ ତୁମକୁ ଷ୍ଟେସନ୍ ସାମ୍ନାର ବଡ ବସ୍ ଷ୍ଟାଣ୍ଡକୁ ନେଇଯିବ । ସେଠି ଆଉ ଅସୁବିଧା ହେବନି । ତୁମକୁ ତୁମ ବସ୍ ମିଳିଯିବ ।' ବୋଲି ପଡି ଦୁଇ ଜଣଯାକ ଚାଲିଗଲେ ।

ବସ୍ ପହଞ୍ଚିଲା । ଆଠ ଦଶ ଜଣ ଲୋକ ଭିତରେ । ଆମେ ଦୁଇଟିକିଆ ସିଟ୍‌ରେ ବସିଗଲୁ । ଝର୍କା ପାଖ ସିଟ୍‌ରେ ବସି ମୁଁ ବାହାରକୁ ଚାହିଁ ରହିଥିଲି । ଗୁଣ୍ଡା ଭଳି ଦିଶୁଥିବା ମଣିଷ ଦୁଇଜଣ ଧୀରେ ଧୀରେ ହଜିଯାଉଛନ୍ତି । ମୁଁ ମୁହଁ ତଳକୁ କଲି । ବାଁ ହାତର ମଣିବନ୍ଧ ଆଉ କହୁଣି ମଝିଆଁମଝି ଜାଗାଟା ଲାଲ୍ ହେଇଯାଇଛି । ଅନ୍ୟମନସ୍କ ଭାବରେ ମୁଁ ସେଇ ଜାଗାଟି ଆଉଁଶିବାକୁ ଲାଗିଲି ।

'ସରି ୟାର୍, ବହୁତ ଜୋରରେ ତୋ' ହାତ ଚାପିଦେଲି । ଡରି ଯାଇଥିଲି ।...'

ମୁଁ ମୁଣ୍ଡ ଉପରକୁ ଉଠେଇଲି । ମୋ' ଆଖିର ଭାବ କ'ଣ ସିମ୍‌ରାନ୍ ପଢି ପାରୁଛି ?

'ବହୁତ କାଟୁଛି, ନା ?' ସେ ଆଉ ଥରେ ପଚାରିଲା ।

ମୁଁ ଧୀରେ ଧୀରେ ମୁଣ୍ଡ ହଲାଇଲି । 'ନା, କାଟୁନି । ହେଲେ ସିମ୍‌ରାନ୍, ବହୁତ ବଡ ଭୁଲ୍ ହେଇଗଲା ।'

'ଭୁଲ୍ ! କି ଭୁଲ୍ ?' ସିମ୍‌ରାନ୍ ଆଶ୍ଚର୍ଯ୍ୟରେ ପଚାରିଲା । ବାଘ ମୁହଁରୁ ବର୍ତ୍ତିଯାଇଥିବାର ସ୍ୱସ୍ତି ତା' ମୁହଁରେ ।

ମୁଁ ଝର୍କା ବାହାରକୁ ଚାହିଁଲି । ଦୂରରେ ସେଣ୍ଟ୍ରାଲ୍ ଷ୍ଟେସନ୍ ସାମ୍ନାର ବସ୍ ଷ୍ଟପ୍ । ଶହ ଶହ ଲୋକଙ୍କ ଆତଯାତ । ଏଠି ଆଉ ଭୟ ନାହିଁ ।

ରହି ରହି ମୁଁ କହିଲି, 'ସେ ଦୁଇଜଣଙ୍କୁ ସାମାନ୍ୟ ଧନ୍ୟବାଦ ଜଣେଇବା କଥାଟା ଆମ ମନକୁ କେମିତି ଥରେ ଆସିଲା ନାହିଁ, କହିଲୁ ।'



# ନିଜ, ପର

ମା', ବାପାଙ୍କର ଏକମାତ୍ର ସନ୍ତାନ, ପୁଣି ବହି ଗଦା ଭିତରେ ବଢିଛି, ରହିଛି । ସେଇଥିପାଇଁ ହେଉ କି ଅନ୍ୟ ଯେ କୌଣସି କାରଣରୁ ହେଉ ନମିତା ଚଟ୍ କରି କାହା ସାଙ୍ଗରେ ମିଶି ଯାଇପାରେ ନାହିଁ । ସମସ୍ତଙ୍କ ସାଙ୍ଗରେ ଭଲ ପଡ଼େ, କିନ୍ତୁ କେବଳ ସେତିକି । ଦୂରର ଭଦ୍ର ସମ୍ପର୍କ ସମସ୍ତଙ୍କ ସାଙ୍ଗରେ । ଅଥଚ ସେଇ ନମିତାର କେମିତି ଯେ ବିଦେଶିନୀ କ୍ଲାରା ସାଙ୍ଗରେ ଗଭୀର ବନ୍ଧୁତ୍ୱ ହେଇଗଲା, ସେକଥା ଭାବି ନିଜେ ନମିତା ଅବାକ୍ ହୁଏ ।

ଏମିତିରେ ଦେଖିଲେ ଫରକ୍ ଅନେକ । ବୟସରେ, ବେଶ ପୋଷାକରେ, କଥାବାର୍ତ୍ତାରେ । କିନ୍ତୁ ବିଜ୍ଞାନର ସୂକ୍ଷ୍ମ ବନ୍ଧନଟିଏ ଦୁଇଜଣଙ୍କ ମଧ୍ୟରେ ରହିଛି । ନମିତା ବାଙ୍ଗାଲୋରର ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସ୍‌ରେ ଗବେଷଣା କରେ । କ୍ଲାରାର କାମ ଜର୍ମାନୀର ଫ୍ରାଙ୍କଫର୍ଟ ସହରରେ । ଦୁଇଜଣଙ୍କର ଗବେଷଣା ବିଷୟ ଏକ ନୁହଁ, କିନ୍ତୁ ପରସ୍ପର ସହିତ ଯୋଡ଼ା । ସେଇଥିପାଇଁ ପ୍ରତି ଚାରି ପାଞ୍ଚ ମାସରେ ଥରେ କ୍ଲାରାକୁ ବାଙ୍ଗାଲୋର ଆସିବାକୁ ହୁଏ ।

ବାଙ୍ଗାଲୋର ଆସିଲେ କ୍ଲାରା ରହେ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସ୍‌ର ଗେଷ୍ଟ୍ ହାଉସ୍‌ରେ । କିନ୍ତୁ ପ୍ରାୟ ସବୁ ସନ୍ଧ୍ୟାରେ ତାକୁ ନିଜ ଘରକୁ ନେଇଯାଏ ନମିତା । ଖିଆପିଆ ଗପସପ– ସବୁ ସେଇଠି । ପରେ ତାକୁ ପୁଣି ଗେଷ୍ଟ୍ ହାଉସ୍‌ରେ ଛାଡି ଦେଇ ଆସନ୍ତି ନମିତା ଆଉ ତା' ସ୍ୱାମୀ ପ୍ରଣବ । ଆଉ ଓହ୍ଲେଇବା ବେଳେ ସେଇ ଏକା ପ୍ରଶ୍ନ ସବୁ ଥର ପଚାରେ କ୍ଲାରା । 'ଫ୍ରାଙ୍କ୍‌ଫର୍ଟ କେବେ ଆସିବ, ନମିତା ?'

'ଆସିବି । ସୁବିଧା ମିଳିଲେ ନିଶ୍ଚୟ ଚାଲି ଆସିବି ।'

ଦିନେ ସେ ସୁଯୋଗ ମିଳିଲା । କ୍ଲାରାର ଇନ୍‌ଷ୍ଟିଚ୍ୟୁଟ୍‌ରେ ତିନିଦିନିଆ କନ୍‌ଫରେନ୍‌ସ୍ । ଆଉ ଏତେ ବାଟ ଯାଉଛି ଯେତେବେଳେ ଗବେଷଣା ନେଇ କିଛି କାମ ଆଗେଇ ନେଲେ ଭଲ ।

କ୍ଲାରାର ସେ କି ଆନନ୍ଦ ! ଇମେଲ୍‌ରେ ଧରି ରଖି ପାରୁନି ନିଜକୁ । 'କନ୍‌ଫରେନ୍‌ସ୍‌ର ତିନିଦିନ ଛାଡି ଦେଲେ ବାକି ଦିନତକ ତୁମେ ମୋ' ସାଙ୍ଗରେ କଟେଇବ ।'

'ନିଶ୍ଚୟ ।'

'ମୁଁ ଆସିବି ଏଆର୍‌ପୋର୍ଟ ତୁମକୁ ନେବା ପାଇଁ ।'

'କାହିଁକି ଅଯଥା ଏତେ କଷ୍ଟ କରିବ, କ୍ଲାରା ? ତୁମ ଘର ପରା ଏଆର୍‌ପୋର୍ଟରୁ ଦେଢ ଘଣ୍ଟା ବାଟ । ମୋ' ଫ୍ଲାଇଟ୍ ପହଞ୍ଚିବ ସାତଟା କୋଡିଏରେ । ତୁମକୁ ତ ଅନ୍ଧାର ଥାଉ ଥାଉ ଘର ଛାଡିବାକୁ ହେବ । କାହିଁକି ରବିବାର ସକାଳଟାରେ ଏତେ କଷ୍ଟ କରିବ ?'

'କଷ୍ଟ ପୁଣି କ'ଣ ?' କ୍ଲାରାର ଗୋଟିଏ ପ୍ରଶ୍ନରେ ନମିତାର ସବୁ ଆପତ୍ତି ଖାରଜ ହେଇଗଲା ।

ଆଉ ରବିବାର ସକାଳେ ସେ ଇମିଗ୍ରେସନ୍ ଶେଷ କରି ନିଜର ଛୋଟ ସୁଟ୍‌କେଶ୍ ଧରି ଯେତେବେଳେ ଫ୍ରାଙ୍କ୍‌ଫର୍ଟ୍ ଏଆର୍‌ପୋର୍ଟରୁ ବାହାରିଲା, ସେତେବେଳେ କବାଟ ଆର ପାଖରେ ଠିଆ ହେଇଥିଲା କ୍ଲାରା । ହାତରେ ଗୋଛାଏ ଗୋଲାପ ଫୁଲ । ଓଠରେ ହସ ।

'ୱେଲ୍‌କମ୍ ଟୁ ଜର୍ମାନୀ, ନମିତା ।' ନମିତାକୁ ଦୁଇ ହାତରେ ଜଡେଇ ଧରି ସେ କହିଥିଲା ।

'ଥ୍ୟାଙ୍କ୍ ୟୁ । କେତେ କଷ୍ଟ କଲ ମୋ ପାଇଁ, କ୍ଲାରା । କହି ଦେଇଥିଲେ, ତୁମ ଇନ୍‌ଷ୍ଟିଚ୍ୟୁଟ୍ ଗାଡି ଆସି ତ ମୋତେ ନେଇ ଯାଇ ପାରି ଥାଆନ୍ତା ।'

'କାଇଁ, ମୋ ମର୍ସିଡିଜ୍ ତୁମର ପସନ୍ଦ ହେଉନି ?' ଜର୍ମାନୀର ଅଟୋବାନ୍‌ରେ ଶହେ ଚାଳିଶ କିଲୋମିଟର୍ ସ୍ପିଡ୍‌ରେ ଗାଡି ଚଲେଇ ଯାଉ ଯାଉ ଆଡ ଆଖିରେ ତାକୁ ଚାହିଁ କ୍ଲାରା କହିଥିଲା ।

ହସିଥିଲା ନମିତା ।

'ମୁଁ ବାଙ୍ଗାଲୋର ଗଲେ କେତେ କର ତୁମେ ମୋ' ପାଇଁ ! ମୋତେ ତା'ର କାଣିଚାଏ କରିବାକୁ ଦିଅ ।'

କ୍ଲାରାର 'କାଣିଚାଏ' କିନ୍ତୁ ନମିତାକୁ ଅଭିଭୂତ କରି ଦେଲା । ଏଇ କେଇଟା ଦିନରେ ତା'ର ଏଇ ଭାରତୀୟ ବନ୍ଧୁଟିକୁ ସେ ଯେମିତି ଜର୍ମାନୀର ସବୁ କିଛି ବୁଲେଇ ଦେଖାଇ ଦେବ । ସମୟ ପାଇବା କ୍ଷଣି ସେ ତାକୁ ନେଇ ଯାଉଥିଲା ମୋସେଲ୍ ନଈ ଦେଖାଇବାକୁ । ନହେଲେ ରାଇନ୍ ନଈରେ ବୋଟିଙ୍ଗ୍ କରେଇବାକୁ । ଆଖପାଖର ପୁରୁଣା ପ୍ରାସାଦ, ଅଙ୍ଗୁର ବଗିଚା, ମ୍ୟୁଜିୟମ୍ – କିଛି ଯେମିତି ବାକୀ ରହିଲା ନାହିଁ । କ୍ଲାରାର ନିଜ ଘର ଛାଡି ଦେଲେ ଯାହା ସବୁ ଦେଖିବା କଥା ସବୁ ଦେଖି ନେଲା ନମିତା । ଆସନ୍ତା ରବିବାର ସେ ବାଙ୍ଗାଲୋର ଫେରିଯିବ ।

'କାଲି ରାତିରେ ଆମ ଘରେ ଡିନାର୍ ।' ଶୁକ୍ରବାର ସନ୍ଧ୍ୟାବେଳେ ନମିତାକୁ ଫ୍ରାଙ୍କଫର୍ଟ୍ ସହରର ବଜାରଘାଟ ବୁଲେଇ ଗେଷ୍ଟ ହାଉସ୍ ଫେରିବା ବାଟରେ କ୍ଲାରା କହିଲା ।

'ନିଶ୍ଚୟ । ... ହେଲେ କାଲି ତ ଇନ୍‌ଷ୍ଟିଚ୍ୟୁଟ୍‌ରୁ ଫେରୁ ଫେରୁ ଆମର ଡେରି ହେଇଯାଇ ପାରେ । ପାଞ୍ଚଟା ବେଳେ ଡକ୍ଟର୍ ହିରୋନିମସ୍‌ଙ୍କ ସାଙ୍ଗରେ ମିଟିଙ୍ଗ୍ ।'

'ମୁଁ ଜାଣିଛି । ହେଲେ, ନୋ ୱରିଜ୍ । କାଲି ଶନିବାର । ମୋ' ସ୍ୱାମୀ ଆଲ୍‌ବର୍ଟଙ୍କର ଛୁଟି । ସେ କହିଛନ୍ତି ଯେ ସେ ରାତିରେ ରାନ୍ଧିବେ । ଆଉ କେକ୍ ନେଇ ଆସିବେ ପ୍ୟାଟ୍ରିସିଆ । ଚକୋଲେଟ୍ କେକ୍ । ବାସ୍ ହେଇଗଲା ।'

ନମିତା ଆଶ୍ଚର୍ଯ୍ୟରେ କ୍ଲାରା ମୁହଁକୁ ଚାହିଁଲା । ପ୍ୟାଟ୍ରିସିଆ କିଏ ? କାଲି ରାତିର ଡିନାର୍ ପାଇଁ ଆଉ କାହା କାହାକୁ ଡାକିଛ କି ?

'ବାହାର ଲୋକ କେହି ନାହିଁ । ମୋ ବାପା ଆସିବେ । ଆଉ ପ୍ୟାଟ୍ରିସିଆ । ...ପ୍ୟାଟ୍ରିସିଆ ମୋ ବାପାଙ୍କ ସ୍ତ୍ରୀ ।'

ବାପାଙ୍କ ସ୍ତ୍ରୀ ? କଥାଟା କେମିତି ଅଖାଡୁଆ ଲାଗିଲା ନମିତା କାନକୁ । ସେ କ'ଣ ପଚାରି ଆସୁଥିଲା, କିନ୍ତୁ ହଠାତ୍ ତା'ର ମନେ ପଡିଗଲା ଯେ କିଛି ମାସ ତଳେ କ୍ଲାରା କଥାରେ କଥାରେ କହିଥିଲା ତା' ବାପା ମା'ଙ୍କର ବେଶ୍ କିଛି ବର୍ଷ ଆଗରୁ ଡିଭୋର୍ସ୍ ହେଇଯାଇଛି । ଓହୋ, ତା'ହେଲେ ତା' ବାପା ଆଉ ଥରେ ବାହା ହେଇଛନ୍ତି ! ଆଉ କ୍ଲାରାର ସେଇ ସାବତ ମା'ଟି ବି କାଲି ସନ୍ଧ୍ୟାବେଳେ ଥିବେ ତା' ଘରେ ? ନମିତା ମନରେ ସାମାନ୍ୟ କୌତୂହଳ, ହେଲେ ସେ ଅଧିକ କିଛି ପଚାରିଲା ନାହିଁ ।

କ୍ଲାରା ମଧ୍ୟ ଚୁପ୍ । ଆଜି ଅଟୋବାନ୍‌ରେ କୌଣସି କାରଣରୁ ବହୁତ ଭିଡ । ଗାଡି ଚଳେଇବା ବେଳେ ଅମନଯୋଗୀ ହେଲେ ଚଳିବ ନାହିଁ ।

ପରଦିନ ଶନିବାର । ଏମିତିରେ ଇନ୍‌ଷ୍ଟିଚ୍ୟୁଟ୍ ଛୁଟି । କିନ୍ତୁ ନମିତା, କ୍ଲାରାଙ୍କର ଗୋଟାଏ ପରେ ଗୋଟାଏ ମିଟିଙ୍ଗ୍ । କେମିତି ଯେ ଦିନଟା କଟିଗଲା, ଜଣା ପଡିଲା ନାହିଁ । ଯାହେଉ, ପାଞ୍ଚଟା ବେଳର ମିଟିଙ୍ଗ୍ ଯେଉଁ ଲମ୍ବିବ ବୋଲି ଭୟ ଥିଲା, ସେମିତି କିଛି ହେଲା ନାହିଁ । 'ତୁମ ଘରକୁ ଗଲା ବେଳେ ଟିକିଏ ଗେଷ୍ଟ ହାଉସ୍ ହେଇ ଯିବା, କ୍ଲାରା ?'– ନମିତା କ୍ଲାରାକୁ ଅନୁରୋଧ କଲା । ଯେତେ ଏଆର କଣ୍ଡିସନର୍ ଥିବା କୋଠରୀ ଭିତରେ ବସିଲେ ବି ସକାଳଠୁଁ ପିନ୍ଧିଥିବା ଲୁଗାପଟା ମନେ ହେଉଛି ଝାଲୁଆ । ମୁହଁର ଅବସ୍ଥାଟା ବି ଦେଖ ! ଏମିତି କ'ଣ ଜଣଙ୍କ ଘରକୁ ରାତି ଖାଇବା ପାଇଁ ଯାଇ ହୁଏ ?

'ସିଓର୍ ।'

ଗେଷ୍ଟ ହାଉସ୍‌ରେ ପହଞ୍ଚି ଚଟ୍ କରି ଗାଧୋଇ ପଡି କଳା ନାଲିର କ୍ରେପ୍ ଶାଢି ଖଣ୍ଡେ ପିନ୍ଧି ନେଲା ନମିତା । ବାଙ୍ଗାଲୋରରୁ ନେଇ ଆସିଥିବା ଚନ୍ଦନ କାଠର ଛୋଟ ହାତୀଟିଏ ବ୍ୟାଗ୍‌ରେ ରଖି ସେ ବାହାରି ପଡିଲା ।

'ୱାଓ, ଶାରି ! ଭେରି ନାଇସ୍ ।'

'ଥ୍ୟାଙ୍କ୍ ୟୁ ।'

'ମୁଁ ସିନା ବାରମ୍ବାର ଇଣ୍ଡିଆ ଯାଏଁ ବୋଲି ଶାରି ଦେଖିଦେଖି ଅଭ୍ୟସ୍ତ । ହେଲେ ଦେଖିବ, ତୁମକୁ ଦେଖି, ତୁମ ଶାରି ଦେଖି ମୋ' ସ୍ୱାମୀ, ମୋ' ବାପା କେତିକି ଖୁସି ହେବେ । ... ପ୍ୟାଟ୍ରିସିଆ ବି ।'

'ଆଚ୍ଛା, ମୁଁ ସେମାନଙ୍କ ସାଙ୍ଗରେ ଇଂଲିଶ୍‌ରେ କଥା କହି ପାରିବି ତ ?' ନମିତା ହଠାତ୍ ପଚାରିଲା । ଏଇ କେତେଟା ଦିନ ଭିତରେ ସେ ବୁଝିଯାଇଛି । ଜର୍ମାନୀର ଅଧିକାଂଶ ଲୋକ ଇଂରାଜୀ ଭାଷାରେ ସହଜ ନୁହନ୍ତି । ଇନ୍‌ଷ୍ଟିଚ୍ୟୁଟ୍‌ରେ ବି ବେଶ୍ କେତେଜଣ ବୈଜ୍ଞାନିକ ତା' ସାଙ୍ଗରେ କଥା କହିବାବେଳେ ରହିରହି ଭାବିଭାବି କଥା କହନ୍ତି । ସତେ ଯେମିତି ପ୍ରତିଟି ବାକ୍ୟକୁ ମନେ ମନେ ଜର୍ମାନ୍ ଭାଷାରୁ ଇଂରାଜୀରେ ଅନୁବାଦ କରୁଛନ୍ତି ।

କ୍ଲାରା ହସିଲା । 'ଆଲ୍‌ବର୍ଟ୍, ମାନେ ମୋ' ସ୍ୱାମୀଙ୍କର ଇଂରାଜୀ ଭଲ ନୁହଁ । ନିହାତି କାମଚଳା । ଏଠିକାର ଗୋଟାଏ ଅଟୋ ଇଣ୍ଡଷ୍ଟ୍ରିରେ ସେ କାମ କରନ୍ତି । ସେଠି ଇଂରାଜୀରେ କଥାବାର୍ତ୍ତା କରିବାର ଆବଶ୍ୟକତା ପଡେ ନାହିଁ । ସେଥିପାଇଁ ଅଭ୍ୟାସ ନାହିଁ । ହେଲେ ମୋ' ବାପା ଆଉ ପ୍ୟାଟ୍ରିସିଆ ପରିଷ୍କାର ଇଂରାଜୀ କହନ୍ତି । ବାପା ଏବେ ସିନା ରିଟାୟାର୍ କରି ସାରିଛନ୍ତି, କିନ୍ତୁ ଲଣ୍ଡନରେ ବହୁତ ଦିନ ଥିଲେ । ତାଙ୍କର ବ୍ୟବସାୟ ଥିଲା ସେଇଠି । ଆଉ ପ୍ୟାଟ୍ରିସିଆ ବି ଲଣ୍ଡନରେ ଚାକିରି କରୁଥିଲେ...' କ୍ଲାରା ଅନ୍ୟମନସ୍କ ଭାବରେ ଝର୍କା ବାହାରକୁ ଚାହିଁଲା ।

ବାହାରେ ଅନ୍ଧାର । ଫ୍ରାଙ୍କ୍‌ଫର୍ଟ ସହରକୁ ପଛରେ ପକେଇ ସେମାନେ ଚାଲି ଆସି ସାରିଛନ୍ତି । ଗାଡି ଚାଲିଥିଲା ଛୋଟ ପାହାଡ଼ିଆ ରାସ୍ତାଟିଏ ଉପରେ । ସେ ରାସ୍ତାରେ କୌଣସି ଆଲୁଅ ନାହିଁ ।

'ଏଇ ଯେଉଁ ଆଗରେ ଗଳି ଦେଖୁଛ, ସେଇଠି ଆମ ଘର ।' ଘର ପାଖାପାଖି ପହଞ୍ଚି ଉତ୍‌ଫୁଲ୍ଲ ହୋଇ ଉଠିଲା କ୍ଲାରା । 'ଆଲ୍‌ବର୍ଟ ଆଉ ମୁଁ ସବୁବେଳେ ଚାହିଁଥିଲୁ ସହରଠୁଁ ଦୂରରେ ପାହାଡ଼ ଉପରେ ଘରଟିଏ କିଣିବାକୁ । ଏତେ ବର୍ଷ ପରେ ଆମ ସ୍ୱପ୍ନ ସାକାର ହେଲା । ଗତ ବର୍ଷ ଏଇଠି ଘର କିଣି ପାରିଲୁ ।

ହେଲେ ମୋ' ଝିଅ ଦୁଇ ଜଣ ବଡ଼ ଅସନ୍ତୁଷ୍ଟ । ସେମାନଙ୍କର ସହର ପସନ୍ଦ । କହନ୍ତି – ଏମିତି ଜଙ୍ଗଲିଆ ଜାଗାରେ କେବଳ ବାଘ ଭାଲୁ ସାପ ରହନ୍ତି । ଆମେ କ'ଣ ଜନ୍ତୁ ଜାନୱାର ? ସୁବିଧା ପାଇଲେ ସେମାନେ ସେଥିପାଇଁ ମୋ' ବାପାଙ୍କ ପାଖକୁ ଚାଲି ଯାଆନ୍ତି ।'

ନମିତା ଆଗରୁ ଜାଣିଥିଲା ଯେ କ୍ଲାରାର ଦୁଇ ଯାଆଁଳା ଝିଅ । ବୟସ ବେଶୀ ନୁହଁ । ବୋଧହୁଏ ଏଗାର କି ବାର ହେବ । କ୍ଲାରାର ବାପାଙ୍କ ପାଖରେ ରହିଲେ ଖବର କିଏ ବୁଝେ ସେମାନଙ୍କର ? କ୍ଲାରାର ବାପା ପାରନ୍ତି ? ସେ ପଚାରି ଦେଲା ।

'ବାପା ! ସେ ତ ସ୍ୱପ୍ନ ରାଜ୍ୟରେ ରହନ୍ତି ସବୁବେଳେ । ଯିଏ ନିଜ ଖବର ନିଜେ ବୁଝି ପାରେ ନାହିଁ, ସେ ଆଉ କାହାର ଖବର କ'ଣ ବୁଝିବ ? ପିଲାଙ୍କ ଖବର ବୁଝନ୍ତି ପ୍ୟାଟ୍ରିସିଆ ।'

'କ୍ଲାରାର ସାବତ ମା' ।

'ମୋ ଦୁଇ ଝିଅଙ୍କ ସାଙ୍ଗରେ ବହୁତ ଭଲ ପଡ଼େ ତାଙ୍କର ।'

'ଦ୍ୟାଟ୍‌ସ୍ ନାଇସ୍ । ଆଚ୍ଛା, ତୁମ ଝିଅମାନଙ୍କ ସାଙ୍ଗରେ ଆଜି ଦେଖା ହେବ ତ ?' ନମିତା ପଚାରି ଦେଲା ।

'ଅଫ୍ କୋର୍ସ୍ । ସେମାନେ ତ ଅପେକ୍ଷା କରି ବସିଛନ୍ତି ତୁମ ସାଙ୍ଗରେ କଥାବାର୍ତ୍ତା କରିବାକୁ । ତାଜମହଲ କଥା କୋଉଠି ଜାଣ ପଢିଛନ୍ତି, ସେଇ ବିଷୟରେ ଅଧିକ ଜାଣିବାକୁ ସେମାନଙ୍କର ବହୁତ ଇଚ୍ଛା । ବାଏ ଦ ୱେ, ସେମାନେ ଗୋଟାଏ ଆମେରିକାନ୍ ସ୍କୁଲ୍‌ରେ ପାଠ ପଢ଼ନ୍ତି । ସେଥିପାଇଁ ମୋଠୁଁ ବି ଭଲ ଇଂରାଜୀ କହନ୍ତି ।'

ଇସ୍, ବଡ ଭୁଲ୍ ହେଇଗଲା । ଗାଡିରୁ ଓହ୍ଲାଉ ଓହ୍ଲାଉ ନମିତା ମନ ଦବିଗଲା । ପିଲା ଦିଇଟାଙ୍କ ପାଇଁ କେମିତି କିଛି ଧରି ସେ ଆସିଲା ନାହିଁ ? ଛିଃ, ଏଡ଼ିକି ଭୋଳା ମନ ତା'ର । ନା, ବାଙ୍ଗାଲୋର ଫେରିବା ପରେ ତାଜମହଲ ଉପରେ ବହିଟିଏ ଖୋଜି ଦୁଇ ଝିଅଙ୍କ ପାଇଁ ପଠେଇ ଦେବାକୁ ହେବ ।

କବାଟ ଖୋଲିଗଲା । 'ମାମା ମାମା ମାମା !'– ଦୁଇ ଜଣ ଝିଅ ଧାଇଁ ଆସି କ୍ଲାରାକୁ ଜାବୁଡି ଧରିଲେ । କ୍ଲାରା ସେମାନଙ୍କୁ ଗେହ୍ଲା ଟିକିଏ କରି ଦେଇ ନମିତାକୁ କହିଲା, 'ଦେଖୁଛ, କେତେ ରକମର ଢଙ୍ଗ ! କ'ଣ ପାଇଁ ସ୍କୁଲ୍ ଛୁଟି ଥିଲା ବୋଲି ଗତ ତିନି ଦିନ ଧରି ସେମାନେ ଫ୍ରାଙ୍କ୍‌ଫର୍ଟ ଚାଲି ଯାଇଥିଲେ ମୋ ବାପାଙ୍କ ପାଖକୁ, ଆଉ ଏବେ ବାହାରୁଛି ମାତୃ ପ୍ରେମ !'

ଭିତରେ ସମସ୍ତେ ଅପେକ୍ଷା କରିଥିଲେ ସେମାନଙ୍କ [illegible] । କ୍ଲାରା ସ୍ୱାମୀ ଆଲ୍‌ବର୍ଟର ଓଠରେ ମୃଦୁ ସ୍ପର୍ଶ ଦେଇ ଧାଇଁଗଲା ତା' ବାପାଙ୍କ ପାଖକୁ । ଦୁଇ

ହାତରେ ଜଡେଇ ଧରିଲା ତାକୁ । ତା'ପରେ ପ୍ୟାଟ୍ରିସିଆକୁ ।

'ଦିସ୍ ଇଜ୍ ନମିତା । ମାଇଁ ଡିଅର୍ ଡିଅର୍ ଫ୍ରେଣ୍ଡ ।' – ନମିତା ସାଙ୍ଗରେ ସମସ୍ତଙ୍କୁ ଚିହ୍ନେଇ ଦେଲା ସେ ।

କେତେ ଶୀଘ୍ର ସମସ୍ତେ ତାକୁ ଆପଣାର କରିନେଲେ ! ବହୁତ ଭଲ ଲାଗୁଥିଲା ନମିତାକୁ ସେମାନଙ୍କର ଆନ୍ତରିକତା । ଆଉ ତା'ଠୁଁ ବି ଭଲ ଲାଗୁଥିଲା ପରିବାରର ଅନ୍ତରଙ୍ଗତା ।

ଆଲ୍‌ବର୍ଟ ରେଡ୍ ୱାଇନ୍‌ର ବୋତଲ ଖୋଲିଲା ପ୍ୟାଟ୍ରିସିଆ ଓ କ୍ଲାରା ପାଇଁ । ଶ୍ୱଶୁରଙ୍କୁ ଦେଲା ସିଙ୍ଗଲ୍ ମଲ୍‌ଟ୍ ହ୍ୱିସ୍‌କି । ଜୋର୍ କରି ଜର୍ମାନ୍ ରିଜଲିଙ୍ଗ୍ ଧରାଇଲା ନମିତା ହାତରେ । ନିଜ ପାଇଁ ବିଅର୍ । ଝିଅ ଦୁଇ ଜଣ ନିଜ ନିଜର କୋକାକୋଲା ଫ୍ରିଜ୍‌ରୁ ନେଇ ଆସିଲେ ।

'ନାଓ ୟୁ ହାଭ୍ ଟୁ ଏକ୍‌ସ୍‌କ୍ୟୁଇଜ୍ କ୍ଲାରା ଆଣ୍ଡ ମି ଫର୍ ଟ୍ୱେଣ୍ଟି ମିନିଟ୍‌ସ୍ । କୋଡିଏ ମିନିଟ୍‌ରେ ରାତି ଖାଇବା ଟେବୁଲ୍ ଉପରକୁ ଆସିଯିବ ।' ସ୍ତ୍ରୀ ହାତ ଧରି ଟାଣିଲା ଆଲ୍‌ବର୍ଟ ।

'ମୁଁ କିଛି ସାହାଯ୍ୟ କରି ପାରିବି କି ?' ନମିତା ଭଦ୍ରାମି ଖାତିରରେ ପଚାରିଲା ।

'ନୋ ୱେ । ଆଦୌ ନୁହଁ । ମୋତେ କିଛିଟା ସମୟ ମୋ' ଡିଅର୍ ହଜ୍‌ବ୍ୟାଣ୍ଡଙ୍କ ସାଙ୍ଗରେ ଏକା କଟେଇବାକୁ ଦିଅ ।' କ୍ଲାରା ନାଚି ନାଚି ରୋଷେଇ ଘର ଆଡ଼େ ଚାଲିଗଲା ।

'ନାଟକ କରିବାରେ ମୋ ଝିଅର ତୁଳନା ନାହିଁ ।' କ୍ଲାରାର ବାପା ଫ୍ରେଡେରିକ୍ ମୁଣ୍ଡ ହଲେଇ ହଲେଇ କହିଲେ ।

'ସେମିତି କାହିଁକି କହୁଛ ? ସତରେ କେତେ ସମୟ ସେମାନେ ଏକାଠି ପାଆନ୍ତି କଟେଇବାକୁ ? ଦୁଇଜଣ ନିଜ ନିଜ କାମରେ ଏତେ ବ୍ୟସ୍ତ, ବାକୀଟା ସମୟ ପିଲାଙ୍କ ପାଇଁ ଯାଏ– କେତେ ଦିନ ଏକାଠି ରୋଷେଇ କରି ପାରନ୍ତି ? ଦିଜ୍ ଆର୍ ସ୍ମଲ୍ ପ୍ଲେଜରସ୍ ଅଫ୍ ଲାଇଫ୍ ।' ପ୍ୟାଟ୍ରିସିଆ କ୍ଲାରାର ତରଫଦାରି କଲେ ।

'ୟୁ ଆର୍ ଆବସଲ୍ୟୁଟ୍‌ଲି ରାଇଟ୍, ହନି ।' ଫ୍ରେଡେରିକ୍ ମୁଣ୍ଡ ଟୁଙ୍ଗାରିଲେ । 'ନମିତା, ମୁଁ ଚାଳିଶ ବର୍ଷ ତଳେ ଥରେ ଦିଲ୍ଲୀ ଯାଇଥିଲି । ରେଡ୍ ଫୋର୍ଟ ଦେଖି ମୁଗ୍ଧ ହେଇଯାଇଥିଲି । କିନ୍ତୁ ଅନ୍ୟ କୁଆଡ଼େ ଯିବାର ସୁଯୋଗ ଆଉ ହେଲା ନାହିଁ । ଭାବିଥିଲି ଥରେ ଟୁରିଷ୍ଟ ଭାବରେ ଆସିବି । ପୂରା ଭାରତ ବୁଲି ବୁଲି ଦେଖିବି । ହେଲା ନାହିଁ ।'

'ଗ୍ରାଣ୍ଡ ପା, ତୁମେ ତାଜ୍ ମହଲ୍ କେମିତି ଗଲନି ? କେମିତି ଏତେ ବଡ଼ ସୁଯୋଗ ହାତରୁ ଛାଡିଦେଇ ?' କ୍ଲାରାର ଝିଅ ଆରାବେଲା ଗୋଡ଼ କଚାଡ଼ି କହିଲା ।

ତା' ଭଉଣୀ କ୍ରିଷ୍ଟିନା ଗେହ୍ଲେଇ ଗେହ୍ଲେଇ କହିଲା, 'ସ୍କୁଲ୍‌ରେ ମୋ ବେଷ୍ଟ୍ ଫ୍ରେଣ୍ଡ ଇଣ୍ଡିଆନ୍ । ଈଶା । ସେ କହିଛି ମୋତେ ଥରେ ଇଣ୍ଡିଆ ନେଇଯିବ । ତାଜ୍ ଦେଖାଇବ । ଆଚ୍ଛା ନମିତା, ତାଜ୍ ମହଲ୍ କ'ଣ ବାଙ୍ଗାଲୋର ପାଖରେ ?'

'ନା । ତାଜ୍ ମହଲ୍ ଭାରତର ଉତ୍ତରରେ । ବାଙ୍ଗାଲୋର ଦକ୍ଷିଣରେ ।'

'ଓହୋ, ସେଇଥିପାଇଁ ମାମା ବି ତାଜ୍ ମହଲ୍ ଆଜି ଯାଏଁ ଦେଖି ନାହାନ୍ତି ।'

'କିନ୍ତୁ ଆସନ୍ତା ମାସ କ୍ଲାରା ଯେତେବେଳେ ବାଙ୍ଗାଲୋର ଆସିବେ, ସେତେବେଳେ ଆମେ ସମସ୍ତେ ଏକାଠି ଉତ୍ତର ଭାରତ ବୁଲିବାକୁ ଯିବୁ ବୋଲି ଭାବିଛୁ । କେବଳ ତାଜ୍ ନୁହଁ, ଆଗ୍ରା ଫୋର୍ଟ୍‌କୁ ବି ଯିବୁ । ଜୟପୁରର ପ୍ୟାଲେସ୍‌ମାନ ଦେଖିବୁ । ... ତୁମେମାନେ ସେତିକିବେଳେ ଚାଲି ଆସ । ଏକାଠି ସମସ୍ତେ ଯିବା ।' ନମିତା ପ୍ରସ୍ତାବ ଦେଲା ।

'ଆସନ୍ତା ମାସରେ ତ ପରୀକ୍ଷା ସମୟ । ଯିବୁ କେମିତି ?' ମୁହଁ ଫୁଲାଇଲା ଆରାବେଲା ।

'ଆସନ୍ତା ମାସରେ ନହେଲେ ନାହିଁ । ପରେ କେବେ ମୁଁ ନେଇଯିବି ।' ପ୍ୟାଟ୍ରିସିଆ ତା' ମୁଣ୍ଡ ଆଉଁଷି ଆଉଁଷି କହିଲେ, 'ଯେମିତି ତୁମମାନଙ୍କୁ ପ୍ୟାରିସ୍ ବୁଲେଇବାକୁ ନେଇଥିଲି, ଠିକ୍ ସେଇମିତି ଦିନେ ଇଣ୍ଡିଆ ନେଇଯିବି ।'

'ଥ୍ୟାଙ୍କ ୟୁ, ପ୍ୟାଟ୍ରିସିଆ ।' ପ୍ୟାଟ୍ରିସିଆଙ୍କ ଗଳା ଧରି ଦୁଇ ଝିଅ ଝୁଲି ପଡିଲେ ।

'ପ୍ୟାଟ୍ରିସିଆ ! ତୁମେ ନାଁ ଧରି ଡାକ ତାଙ୍କୁ !' ନମିତା ପାଟିରୁ ବାହାରିଗଲା । ବର୍ଷ ବର୍ଷର ସଂସ୍କାର ଯିବ କୁଆଡେ ?

ପିଲା ଦୁଇଜଣ ପରସ୍ପରର ମୁହଁକୁ ଚାହିଁ ଚୁପ୍ ରହିଗଲେ । ପ୍ୟାଟ୍ରିସିଆ ମଧ କ'ଣ କହିବେ କହିବେ ହେଇ କିଛି କହିଲେ ନାହିଁ । ଚୁପ୍ କରିଗଲେ ।

ନିଜ ଉପରେ ବିଗିଡିଗଲା ନମିତା । କ'ଣ ଦରକାର ଥିଲା ଏଇ ଭଳି ଗୋଟାଏ ନିହାତି ବ୍ୟକ୍ତିଗତ ପ୍ରଶ୍ନ ପଚାରି ଦେବା ? ଭାରତୀୟ, ପୁଣି ଓଡିଆଣୀ, ଯିବ କୁଆଡ଼େ ! ଏତେ ବର୍ଷ ଧରି ଭିନ୍ନ ସଂସ୍କୃତିର ଲୋକଙ୍କୁ ଦେଖି ଆସୁଛି, ସେମାନଙ୍କ ସାଙ୍ଗରେ ମିଶି ଆସୁଛି, ଅଥଚ ଏମିତି ଗୋଟାଏ ପ୍ରଶ୍ନ ସେ ପଚାରିଦେଲା ? ସେ ନିଜେ ଗୋଟାଏ ଢିଙ୍କି । ସ୍ୱର୍ଗକୁ ଗଲେ ବି ଧାନ କୁଟିବ । ସେ ତ ନିଜେ ଆମେରିକାରେ ଦେଖିଛି ଯେ ବୋହୂଟିଏ ଶାଶୂ ଶ୍ୱଶୁରଙ୍କୁ ନାଁ ଧରି ଡାକୁଛି, ଛାତ୍ର

ଛାତ୍ରୀମାନେ କଲେଜର ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ନାଁ ଧରି ଡାକୁଛନ୍ତି, ଆଉ ଏ ପିଲା ଦିଇଟା ଯଦି ଅଜାଙ୍କର ଦ୍ୱିତୀୟ ସ୍ତ୍ରୀକୁ ନାଁ ଧରି ଡାକିଲେ, କ'ଣ ଏମିତି ମହାଭାରତ ଅଶୁଦ୍ଧ ହେଇଗଲା ?

ପରିସ୍ଥିତି ସମ୍ଭାଳିବାକୁ ନମିତା କ'ଣ କହି ଆସୁଥିଲା, ହଠାତ୍ ହୋ ହୋ ହେଇ ହସିବା ଆରମ୍ଭ କରିଦେଲେ ଫ୍ରେଡେରିକ୍ – କ୍ଲାରାର ବାପା ।

'ଗୁଡ୍ କ୍ୱେଶ୍ଚିନ୍, ନମିତା । ଏକଦମ୍ ଠିକଣା ପ୍ରଶ୍ନଟିଏ ପଚାରିଲ । ଯିଏ କେହି ବି ପଚାରିବ । ହେଲେ ଏଠି ଗୋଟାଏ ବଡ ସମସ୍ୟା ରହିଯାଉଛି । ଆରାବେଲା ଆଉ କ୍ରିଷ୍ଟିନାଙ୍କର ଏମିତିରେ ଦୁଇ ଜଣ ଗ୍ରାଣ୍ଡ୍ ମଦର୍ ରହିଛନ୍ତି । କ୍ଲାରାର ମା' । ଆଉ ଆଲ୍‌ବର୍ଟ୍‌ର ମା' । ଏ କ୍ଷେତ୍ରରେ ପ୍ୟାଟ୍ରିସିଆକୁ ଗ୍ରାଣ୍ଡ୍ ମା' ବୋଲି ଡାକିଲେ, ଅଯଥା ଗୋଳମାଳ । ମୁଁ ସେଥିପାଇଁ ଥରେ ପ୍ରସ୍ତାବ ଦେଇଥିଲି ତାଙ୍କୁ 'ପ୍ୟାଟ୍ ଗ୍ରାଣ୍ଡ୍ ମା' ବୋଲି ଡାକିବାକୁ । ହେଲେ ମୋ ଝିଅ ପ୍ରସ୍ତାବଟାକୁ କାଟିଦେଲା ।' ବୁଢା ପୁଣି ହସିବାକୁ ଲାଗିଲେ ।

'ବାଜେ ପ୍ରସ୍ତାବ, ସେଥିପାଇଁ ନାକଚ କରିଦେଲି ।' କ୍ଲାରା ଯେ ଏହାରି ଭିତରେ କବାଟ ପାଖକୁ ଚାଲି ଆସିଛି, ସେକଥା କେହି ଜାଣି ପାରି ନ ଥିଲେ ।

କ୍ଲାରା ଆପ୍ରନ୍‌ରେ ହାତ ପୋଛୁ ପୋଛୁ ହାଲୁକା ଭାବରେ କହିଲା, 'ପ୍ୟାଟ୍ରିସିଆଙ୍କୁ ପ୍ୟାଟ୍ରିସିଆ ବୋଲି ଡାକିଲେ କ୍ଷତି କ'ଣ ? ଏତେ ସୁନ୍ଦର ନାଁ ! ... ଚାଲ ଚାଲ ସମସ୍ତେ । ଡିନାର୍ ଇଜ୍ ରେଡି ।'

ପୂର୍ବର ଅନ୍ତରଙ୍ଗ ବାତାବରଣ ଫେରି ଆସିଲା । ଖାଇବା ଟେବୁଲ୍‌ରେ ଆଗ ଭଳି ସମସ୍ତେ ସହଜ । ପରିବାରରେ ଆଲ୍‌ବର୍ଟଙ୍କର ହାତ ରନ୍ଧାର ସୁନାମ ଅଛି, କ୍ଲାରାଠୁଁ ଶୁଣିଥିଲା ନମିତା । ଆଜି ନିଜେ ଦେଖିଲା ।

ନମିତା ନିରାମିଷ ଖାଏ, ଦେଶ ବାହାରକୁ ଗଲେ କିଛିଟା ଅସୁବିଧା ହୁଏ । କେଇଜଣ ତ ପଚାରି ଦିଅନ୍ତି – 'ତୁମେ ମାଛ, ମାଂସ ଖାଅନି ? ଭେଜିଟାରିଆନ୍ ? ଓ ମାଇଁ ଗଡ୍ ! ଚଳ କେମିତି ?'

ହେଲେ କ୍ଲାରା ଘରେ କୌଣସି ଅସୁବିଧା ନାହିଁ । ତା' ସ୍ୱାମୀକୁ ସେ ଆଗରୁ କହି ଦେଇଥିଲା । ଆଉ ଆଲବର୍ଟ ରାନ୍ଧିଥିଲା ଚିଜ୍ ପାସ୍ତା, ଏଗ୍‌ପ୍ଲାଣ୍ଟ୍ ପାର୍ମେସାନ୍, ବେକ୍‌ଡ୍ ପଟାଟୋ ଆଉ ମଶ୍ରୁମ୍ ସାଲାଡ୍ । ନମିତା ଖାତିରରେ ଟେବୁଲ୍ ଉପରେ ଅନ୍ୟ କୌଣସି ଆମିଷ ନାହିଁ ।

ଗୋଟାଏ ଚାମଚ୍ ପାସ୍ତା ପାଟିରେ ଦେଇ ନମିତା ରହିଗଲା । 'କି ବଢିଆ ହେଇଛି । ଆମେଜିଙ୍ଗ୍ !'

'ପସନ୍ଦ ହେଲା ?' ଆଲ୍‌ବର୍ଟ ମୁହଁ ଖୁସିରେ ଚକ୍‌ଚକ୍ କରୁଛି । 'ବେକ୍‌ଡ୍ ପଟାଟୋକୁ ଛାଡିଦେଲେ ସବୁ କିଛି ଅବଶ୍ୟ ଇଟାଲିଆନ୍ । ଜର୍ମାନ୍‌ମାନଙ୍କର ବଦନାମ ଅଛି ଯେ ସେମାନେ କେବଳ ମାଂସ ଆଉ ଆଳୁ ପସନ୍ଦ କରନ୍ତି । କଥାଟା ଠିକ୍ ମିଛ ନୁହଁ । ହେଲେ ଆଜିକାଲି ସମସ୍ତେ ସ୍ୱାସ୍ଥ୍ୟ ନେଇ ସାବଧାନ । ତେଣୁ ସାଲାଡ୍, ପରିବାପତ୍ର ପ୍ରାୟ ଅଧିକାଂଶ ପସନ୍ଦ କରୁଛନ୍ତି । ତା'ରି ଭିତରେ ବ୍ୟତିକ୍ରମ ଅଛନ୍ତି ଅନେକ । ... ଏଇଠି ଆମ ଖାଇବା ଟେବୁଲ୍‌ରେ ତୁମେ ଦେଖିପାରୁଥିବ, ନମିତା । ଏଇଠି ଜଣେ ବ୍ୟତିକ୍ରମ ମହନ୍ତୁଦ୍ ଅଛନ୍ତି ।' ଫ୍ରେଡେରିକ୍ ମୁହଁକୁ ଚାହିଁ ଆଲବର୍ଟ ଆଖି ଠାରିଲା । କ୍ଲାରାର ବାପା କଣ୍ଟା ଚାମଚ ଧରି ନିଜ ଖାଦ୍ୟକୁ ଘାଣ୍ଟୁଛନ୍ତି ବେଶୀ, ଖାଉଛନ୍ତି କମ୍ ।

'ଆଇ ଆମ୍ ସରି, ପିଲାଦିନରୁ ସବୁବେଳେ ସବୁ ବେଳାରେ ମାଂସ ଖାଇ ଖାଇ ଏମିତି ବଦଭ୍ୟାସ, ଅନ୍ୟ କିଛି ଖାଇବାକୁ ମିଳିଲେ ମନେ ହୁଏ ଶାସ୍ତି ।' ଫ୍ରେଡେରିକ୍ କହିଲେ ।

'ହନି !' ପ୍ୟାଟ୍ରିସିଆ ଲଜ୍ଜିତ । 'ଏତେ ଯତ୍ନରେ ରାନ୍ଧିଲା ଆଲ୍‌ବର୍ଟ । କ୍ଲାରା ତାକୁ ସାହାଯ୍ୟ କଲା । ଅଥଚ ତୁମେ ତୁମର ନିୟମିତ ସମାଲୋଚନା ଆରମ୍ଭ କରିଦେଲ ! ଦ୍ୟାଟ୍‌ସ ନଟ୍ ନାଇସ୍ । ତା' ପୁଣି ଜଣେ ବିଦେଶୀ ଅତିଥିଙ୍କ ସାମ୍ନାରେ !'

'କିଛି ମନେ କରିବନି, ନମିତା । ମୁଁ ସିଧା କଥା କହେ । ସବୁ କାମ ସିଧାସଳଖ କରେ । ମୋର ମନେ ହୁଏ, ଖାଦ୍ୟ-ରୁଚି ବିଷୟଟି ନିହାତି ବ୍ୟକ୍ତିଗତ । ମୁଁ ଯେ ନିରାମିଷ ଖାଇ ପାରେ ନାହିଁ, ସେଇଟା କ'ଣ ସମାଲୋଚନା ?'

ନମିତା ହସିଲା । 'ଆଦୌ ନୁହଁ । ମୋ ବାପାଙ୍କର ଜଣେ ପିଉସୀ ଥିଲେ ଯିଏ କି ମାଛ ନହେଲେ ନିଜ ଖାଇବା ଛୁଇଁ ପାରୁନଥିଲେ । ତାଙ୍କର ବୟସ ଯେତେବେଳେ ସତୁରୀ, ସେତେବେଳେ ତାଙ୍କର ସ୍ୱାମୀ ମରିଗଲେ । ତାଙ୍କର ପରିବାରଟି ରକ୍ଷଣଶୀଳ, ତାଠୁଁ ଅଧିକ ରକ୍ଷଣଶୀଳ ତାଙ୍କ ଗାଁ । ସେ ଗାଁର ସଂସ୍କାର ଭିନ୍ନ । ଜଣେ ବିଧବା ପାଇଁ ମାଛ ମାଂସ ତ ଦୂରକଥା, ପିଆଜ ରସୁଣ ବି ମନା ।'

'ପିଆଜ ରସୁଣ ?? ହ୍ୱାଏ ?'

ନମିତା କେମିତି ବୁଝେଇବ ସାତ୍ତ୍ୱିକ, ତାମସିକ ଖାଦ୍ୟର ତଫାତ୍ ? ସେ ସରଳ ଭାଷାରେ କହିଲା, 'ଆମର ସେବେକାର ସଂସ୍କୃତିରେ ପିଆଜ ରସୁଣକୁ ଆମିଷ ପର୍ଯ୍ୟାୟରେ ଗଣା ହେଉଥିଲା । ଏବେ ଅବଶ୍ୟ ବହୁତ ବଦଳିଗଲାଣି । ନିରାମିଷାଶୀମାନେ ପିଆଜ ରସୁଣ ଖାଇଲେଣି । କିନ୍ତୁ ତଥାପି ବି ବହୁ ଜାଗାରେ ଏ ବାଧା ନିଷେଧ ରହିଛି ।'

'ରିଏଲି ? ... ଆଚ୍ଛା କୁହନା, କ'ଣ କଲେ ତୁମ ବାପାଙ୍କ ପିଉସୀ ?'

'ସେ କ'ଣ କରିବେ ? ସବୁଦିନେ ଖାଇବା ବେଳେ ଆଖିରୁ ଲୁହ ଗଡେଇଲେ ।'

'ତା'ପରେ ?'

'ତାଙ୍କର ଜଣେ ନାତି ଥିଲା । ଅଜୁ । ମୋଠୁଁ ବର୍ଷେ ସାନ । ଅଜୁର ବୟସ ସେତେବେଳେ ତେର । ସେ କ'ଣ କରୁଥିଲା ଜାଣନ୍ତି, ନିଜେ ଖାଇବ ବୋଲି କହି ରୋଷେଇ ଘରୁ ମାଛ ଭଜା ନେଇ ଆସୁଥିଲା । ଆଉ ବିରାଟ ବଗିଚାର ଗୋଟାଏ କଣରେ, ଯେଉଁଠି ଲୋକବାକଙ୍କ ଚଳପ୍ରଚଳ ନ ଥିଲା, ସେଇଠି ବସି ତା' ଜେଜେ ମା'କୁ ମାଛ ଭଜା ଖୁଆଉଥିଲା ।'

'ହାଓ ସୁଇଟ୍ ! ହାଓ ଟଚିଙ୍ଗ୍ !'

କଥାରେ କଥାରେ ଖାଇବା ଶେଷ ହେଇଗଲା ।

'ଚାଲ, ନମିତା, ଡାଣ୍ଡଘରେ ବସିବା ।'

ସମସ୍ତେ ଉଠିଲେ । ଆଉ ଅଳ୍ପ ସମୟ ପରେ ଆଲ୍‌ବର୍ଟ କଫି ନେଇ ଆସିଲା । କଫି ସାଙ୍ଗରେ ଗୋଟାଏ ବଡ କେକ୍ ।

ଦୁଇଝିଅ ତାଳିମାରି ଡେଇଁବା ଆରମ୍ଭ କରିଦେଲେ । 'ପ୍ୟାଟ୍ରିସିଆଜ୍ କେକ୍ ! ପ୍ୟାଟ୍ରିସିଆଜ୍ କେକ୍ !'

କଥା କ'ଣ ?

କ୍ଲାରା ହସହସ ସ୍ୱରରେ କହିଲା, 'ପ୍ୟାଟ୍ରିସିଆଙ୍କ ଭଳି ଚକୋଲେଟ୍ କେକ୍ ପୂରା ଜର୍ମାନୀରେ କେହି କରି ପାରନ୍ତି ନାହିଁ ।'

'କମ୍ ଅନ୍ କ୍ଲାରା । ଏତେ ପ୍ରଶଂସା କଲେ ଚଳିବନି ।' ପ୍ୟାଟ୍ରିସିଆଙ୍କ ମୁହଁ କିନ୍ତୁ ଆନନ୍ଦରେ ଝଲମଲ ।

କ୍ଲାରା ପ୍ୟାଟ୍ରିସିଆଙ୍କୁ ଦୁଇ ହାତରେ ଧରି କହିଲା, 'ମୁଁ ତ ଟେକାଟେକି କରି କହୁନି । ଯାହା ସତ, ତା' ହିଁ କହୁଛି । ... ନମିତା, ତୁମେ ଖାଇ କରି କୁହ ।'

ନମିତା କେକ୍‌ରୁ ଟିକିଏ ଭାଙ୍ଗି ପାଟିରେ ଦେଲା । ମିଛ କହିନି କ୍ଲାରା । ଏତେ ଭଲ ଚକୋଲେଟ୍ କେକ୍ ସେ ଆଗରୁ କେବେ ଖାଇନି । 'ଆମେଜିଙ୍ଗ୍ ! ମୁଁ କ୍ଲାରା ସହିତ ଏକମତ । ପୃଥିବୀର ସର୍ବ ଶ୍ରେଷ୍ଠ ଚକୋଲେଟ୍ କେକ୍ ଏଇଟା ।'

'କ'ଣ କହିଥିଲି ? କ'ଣ କହିଥିଲି ?' କ୍ଲାରା ମାତି ବସିଲା । 'ଆଲ୍‌ବର୍ଟ, ପୂରା କେକ୍‌ଟା ଆମେ ଶେଷ କରିବା ଆଗରୁ ଦୁଇ ଖଣ୍ଡ ଅଲଗା କରି ଗୋଟାଏ ଡବାରେ ରଖିଦିଅ । ନମିତା କାଲି ସକାଳେ ଗେଷ୍ଟ ହାଉସ୍‌ରେ ଖାଇ ଏଆର୍‌ପୋର୍ଟ ବାହାରି ଯିବେ । କାଲି ରବିବାର । ଗେଷ୍ଟ ହାଉସ୍‌ର କ୍ୟାଫେଟେରିଆ ଡେରିରେ ଖୋଲିବ ।'

'ତୁମେ କାଲି ଭୋର୍‌ରୁ ଫେରିଯିବ ?' ପ୍ୟାଟ୍ରିସିଆ ପଚାରିଲେ ।

'ଭୋର୍ ଠିକ୍ ନୁହଁ । ଏଗାରଟାରେ ଫ୍ଲାଇଟ୍ । କିନ୍ତୁ ନଅଟା ଆଗରୁ ଏଆରପୋର୍ଟ୍ ରେ ପହଞ୍ଚିବାକୁ ହେବ ।'

'ଯିବ କେମିତି ?'

'ଟ୍ୟାକ୍‌ସିରେ ।'

'ଟ୍ୟାକ୍‌ସିରେ ?' ପ୍ୟାଟ୍ରିସିଆ କ୍ଲାରା ମୁହଁକୁ ଚାହିଁଲେ ।

ସେମାନେ କେହି କିଛି କହିବା ଆଗରୁ ନମିତା ମାଡି ବସି କହିଲା, 'କନ୍‌ଫରେନ୍‌ସ୍‌କୁ ଆସିଥିବା ଆଉ ଜଣେ ଡଚ୍ ସାଇଣ୍ଟିଷ୍ଟ ବି ସେତିକିବେଳେ ଯିବେ ଏଆରପୋର୍ଟ୍ । ସେଥିପାଇଁ ମୁଁ ଟ୍ୟାକ୍ସିକୁ ସାଢ଼େ ସାତଟାରେ ଆସିବାକୁ କହି-ଦେଇଛି । ଆମେ ଦୁଇଜଣ ଏକାଠି ଚାଲିଯିବୁ । କୌଣସି ଅସୁବିଧା ନାହିଁ ।'

କଥା କହୁ କହୁ ସମୟ ଦେଖିଲା ସେ । ସାଢ଼େ ଏଗାରଟା ! ଏହା ଭିତରେ କେମିତି କଟିଗଲା ପାଞ୍ଚ ଘଣ୍ଟା ? 'ମୋତେ ଏଥର ଉଠିବାକୁ ହେବ । ହଜାର ଜିନିଷ ଖେଳା ହେଇ ପଡିଛି ରୁମ୍‌ରେ । ସୁଟ୍‌କେଶ୍ ସଜାଡିବାକୁ ହେବ ।'

'ଆମେ ବି ଫେରିବୁ । ଗୁଡାଏ ବାଟ ଆମକୁ ବି ଗାଡି ଚଳେଇ ଯିବାକୁ ହେବ ।' ଫ୍ରେଡେରିକ୍ ଉଠି ଠିଆ ହେଲେ । 'ତୁମ ସାଙ୍ଗରେ ଦେଖା ହୋଇ ବହୁତ ଭଲ ଲାଗିଲା, ନମିତା ।'

'ମୋତେ ବି ।'

'ଆର ଥର ଆସିଲେ ଆଉ ଟିକିଏ ଅଧିକ ସମୟ ହାତରେ ରଖି ଆସିବ । ଫ୍ରେଡେରିକ୍ ଆଉ ମୁଁ ତୁମକୁ ଫ୍ରାଙ୍କ୍‌ଫର୍ଟର ଏମିତି ସବୁ ଜାଗାକୁ ନେଇଯିବୁ, ତା' କୌଣସି ଟୁରିଷ୍ଟ ଗାଇଡ୍ କେବେହେଲେ ଦେଖାଇ ପାରିବନି । କ୍ଲାରା ଯେତେବେଳେ ବାଙ୍ଗାଲୋର ଯାଏ, ମୁଁ ଶୁଣିଛି ତୁମେ ବହୁତ କର ତା'ପାଇଁ ଆମକୁ ମଧ ତୁମପାଇଁ କିଛି କରିବାକୁ ସୁଯୋଗ ଦିଅ ।' ପ୍ୟାଟ୍ରିସିଆଙ୍କ କଥାରେ ଆବିଳତା ନଥିଲା ।

ନମିତାକୁ ଭାରି ଭଲ ଲାଗିଲା । ସମସ୍ତଙ୍କ ସାଙ୍ଗରେ ହାତ ମିଳେଇ, ଝିଅ ଦୁଇଜଣଙ୍କୁ ଗେହ୍ଲା କରି ଦେଇ ସେ କ୍ଲାରାର ଗାଡିରେ ବସିଲା । 'ଏତେ ରାତିରେ ତୁମେ ଏତେଟା ବାଟ ଗାଡି ଚଳେଇ ଯିବ, ପୁଣି ଏକା ଏକା ଫେରିବ, ମୋତେ ଭଲ ଲାଗୁନି । ଟ୍ୟାକ୍‌ସି ଡାକି ଦେଇଥିଲେ ହେଇ ନ ଥାଆନ୍ତା ?'

'ପ୍ୟାଟ୍ରିସିଆ କ'ଣ କହିଲେ ଶୁଣିଲନି ? ବାଙ୍ଗାଲୋର ଗଲେ ତୁମେ ମୋ' ପାଇଁ ଏତେ କର, ମୁଁ ଏଇ ଟିକିଏ ଗାଡି ଚଳେଇଲି ତ କ'ଣ ଏମିତି ଅସୁବିଧା ହେଇଗଲା ? ମୁଁ ତ ତୁମକୁ କାଲି ଏଆର୍‌ପୋର୍ଟରେ ଛାଡିବି ବୋଲି ଭାବି

ରଖିଥିଲି । ତୁମେ ଏକଦମ୍ ଜିଦି ଧରି ବସିଗଲ ଯେ ଟ୍ୟାକସି ନେଇଯିବ । ଏଇ ବିଷୟ ନେଇ କାଲି ପ୍ୟାଟ୍ରିସିଆଙ୍କଠୁଁ ମୋତେ ବହୁତ କଥା ଶୁଣିବାକୁ ହେବ ।'

'ଶୁଣିଦେବ ଟିକିଏ ମୋ ଖାତିରରେ' ନମିତା ହସି ଦେଇ କହିଲା । 'ହେଲେ, ବହୁତ ଭଲ ସେ ।'

'ସତ କଥା । ସ୍ନେହୀ ମଣିଷ । ବହୁତ ପରୋପକାରୀ । ସେ ମୋ ପିଲା ଦୁଇଜଣଙ୍କର ଯେମିତି ଯତ୍ନ ନିଅନ୍ତି, ନ ଦେଖିଲେ ଜଣେ ବିଶ୍ୱାସ କରିବ ନାହିଁ ।'

'ଆଜି ସନ୍ଧ୍ୟାରେ ଦେଖିକରି ଜାଣିପାରିଲି । ଆଦୌ ଉପରଠାଉରିଆ ନୁହଁ ।'

'ଠିକ । ଠିକ୍ ।' କହିଲା କ୍ଲାରା ।

'ଗୋଟାଏ କଥା ପଚାରିବି ?' ନମିତା ମନରେ କେତେବେଳଠୁଁ ଖେଳୁଛି କଥାଟିଏ । ନିଜ ଭିତରେ ଚାପି ନ ରଖି ପଚାରି ଦେଲେ ଭଲ ।

'ପଚାର ।'

'ଏତେ ଭଲ ମଣିଷ ପ୍ୟାଟ୍ରିସିଆ । ତୁମ ଦୁଇ ଝିଅ ତ ତାଙ୍କୁ ଗ୍ରାଣ୍ଡ୍ ମା' ବା ସେଇ ଭଳି କିଛି ଡାକି ପାରନ୍ତେ ।'

'ହ୍ୱାଏ ? ଆବଶ୍ୟକତା କ'ଣ ?' କ୍ଲାରା ସ୍ୱରରେ ସାମାନ୍ୟ ବିରକ୍ତି । 'ତୁମେ ତ ଶୁଣିଲ ମୋ ବାପା କ'ଣ କହିଲେ । ଦୁଇ ଦୁଇ ଜଣ ଗ୍ରାଣ୍ଡ୍ ମଦର୍ ଅଛନ୍ତି ସେମାନଙ୍କର ।'

'ହେଲା ଏବେ ତିନି ଜଣ ହେଇଯିବେ ।' ନମିତା ଆଗ ଭଳି ହସ ହସ ସ୍ୱରରେ କହିଲା, 'ତୁମେ ବି ତାଙ୍କୁ ପ୍ୟାଟ୍ରିସିଆ ବଦଳରେ ମା' ଡାକିପାରିବ । ଏମିତିରେ ଦେଖିଲେ, ସାବତ ମା' କ'ଣ ମା' ନୁହଁ ?...'

ନମିତାର କଥା ଶେଷ ହେବାକୁ ଦେଲା ନାହିଁ କ୍ଲାରା । କଠିନ ସ୍ୱରରେ କହିଲା, 'ନୋ । ନେଭର୍ । ନେଭର୍ ନେଭର୍ ନେଭର୍ । କେବେ ନୁହଁ ।' ଫଁ କରି ନିଶ୍ୱାସ ନେଲା ସେ । କହିଲା, 'ଯେତେ ଭଲ ହୁଅନ୍ତୁ, ଯେତେ ସ୍ନେହୀ ହୁଅନ୍ତୁ, ପ୍ୟାଟ୍ରିସିଆ କେବଳ ପ୍ୟାଟ୍ରିସିଆ । ମୋ' ବାପାଙ୍କ ସ୍ତ୍ରୀ । ସେ କେବେହେଲେ ମୋ ମା' ହେଇପାରିବେ ନାହିଁ । କେବେହେଲେ ନୁହଁ ।' କ୍ଲାରାର କଥାରେ ସ୍ୱରରେ ଏଥର ଗରଳ । ଆଖିରୁ ଯେମିତି ନିଆଁଝୁଲ ଝରି ଯାଉଛି ।

ଏତେ କାହିଁକି ରାଗ ?

ନିଜକୁ ସମ୍ଭରଣ କଲା କ୍ଲାରା । ରହି ରହି କହିଲା, 'ସରି, ନମିତା । ଏଇସବୁ କଥା ପଡିଲେ ମୋ ଭିତରେ କ'ଣ ଯେମିତି ଗୋଳମାଳ ହେଇଯାଏ । କାରଣ କ'ଣ ଜାଣିଛ ? ଏଇ ପ୍ୟାଟ୍ରିସିଆ ହିଁ ମୋ ମା' ବାପାଙ୍କର ଡିଭୋର୍ସ୍‌ର ଏକମାତ୍ର

କାରଣ । କେବଳ ତାଙ୍କରି ପାଇଁ ବାହାଘରର ବାଇଶ ବର୍ଷ ପରେ ବାପା ମୋ ମା'ଙ୍କୁ ଛାଡପତ୍ର ଦେଇଦେଲେ ।'

ତାଳି କ'ଣ କେବଳ ଗୋଟାଏ ହାତରେ ବାଜେ ? କିଛି ନ କହି ନମିତା କ୍ଲାରା ମୁହଁକୁ ଚାହିଁଲା ।

'ମୁଁ ଜାଣେ ତୁମେ କ'ଣ ଭାବୁଛ । ଭାବୁଛ, ଏ ଘଟଣା ପାଇଁ ମୋ ବାପା ମଧ୍ୟ ସମପରିମାଣରେ ଦାୟୀ । ମନାକରୁନି ସେକଥା । ... ଲଣ୍ଡନରେ ଥିବା ବେଳେ ବାପା ହିଁ ପ୍ୟାଟ୍ରିସିଆ ସାଙ୍ଗରେ ସମ୍ପର୍କ ରଖିବା ଆରମ୍ଭ କରିଥିଲେ । ବାପାଙ୍କ ବ୍ୟବସାୟ ଯେଉଁ ସଂସ୍ଥା ଉପରେ ନିର୍ଭର କରି ଠିଆ ହେଇଥିଲା, ତା'ରି ଦାୟିତ୍ୱ ସେତେବେଳେ ଏଇ ପ୍ୟାଟ୍ରିସିଆଙ୍କ ଉପରେ । ଦୁଇ ବର୍ଷ ପରେ ପ୍ୟାଟ୍ରିସିଆ ବାହାଘର ପାଇଁ ଚାପ ପକେଇଲେ । ମୁଁ ଶୁଣିଛି, ବାପା ସେତେବେଳେ ସମ୍ପର୍କ ଭାଙ୍ଗି-ଦେବାକୁ ଚାହିଁଥିଲେ । କିନ୍ତୁ ପ୍ୟାଟ୍ରିସିଆ କୁଆଡ଼େ ବାପାଙ୍କୁ ପରିଷ୍କାର ଜଣେଇ ଦେଇଥିଲେ ଯେ ଯଦି ସେ ନିଜ ପତ୍ନୀକୁ ଛାଡପତ୍ର ଦେଇ ତାଙ୍କୁ ବାହା ନ ହୁଅନ୍ତି, ତା'ହେଲେ ବାପା ତାଙ୍କ ସଂସ୍ଥା ସହିତ ବ୍ୟବସାୟ କରିପାରିବେ ନାହିଁ । ... ତା'ମାନେ ପୂରାପୂରି ବୁଡି ଯାଇଥାଆନ୍ତା ବାପାଙ୍କ ବ୍ୟବସାୟ ।'

ବିଶ୍ୱାସ କରି ପାରୁ ନ ଥିଲା ନମିତା । ଯେଉଁ ସ୍ନେହୀ ମଣିଷକୁ ସେ ଦେଖି ଆସିଲା, ସେ କ'ଣ କେବେ ଏମିତି ହେଇପାରନ୍ତି ?

'ବାପାଙ୍କ ପାଇଁ ପ୍ୟାଟ୍ରିସିଆ ପଟଟି ଓଜନିଆ ହେଲା । ସେ ମୋ ମା'ଙ୍କୁ ଛାଡପତ୍ର ଦେଇଦେଲେ । ମା'ଙ୍କର ଡିଭୋର୍ସ ନେଇ ଆପତ୍ତି ଥିଲା, ସେଥିପାଇଁ କୋର୍ଟରେ ତାଙ୍କୁ ଅପମାନିତ କରି ବାପା ଛାଡପତ୍ର ଦେଇଥିଲେ । ତୁମେ କୁହ, ମୁଁ ଭୁଲି ପାରିବି ସେ ଘଟଣା ? ମୁଁ ତ ସେତେବେଳେ ନିହାତି ଛୋଟ ନୁହଁ, କଲେଜରେ ପଢ଼େ ।' ଜୋର୍‌ରେ ନିଶ୍ୱାସ ନେଲା କ୍ଲାରା । 'ବାପା ମା'ଙ୍କ ଡିଭୋର୍ସ ପରେ ମୁଁ ବାପାଙ୍କ ସାଙ୍ଗରେ ସବୁ ସମ୍ପର୍କ କାଟି ଦେଇଥିଲି । କିନ୍ତୁ ନିଜ ବାପା ତ ଯେତେ ଯାହା ହେଲେ । ମୋ ବାହାଘର ପରେ ପରେ ପୁଣି ଦେଖା ସାକ୍ଷାତ୍ ଆରମ୍ଭ ହେଇଗଲା । ଧୀରେ ଧୀରେ ପୁଣି ପ୍ୟାଟ୍ରିସିଆଙ୍କ ସାଙ୍ଗରେ ବି । ମୁଁ ବୁଝି-ପାରିଥିଲି ଯେ ଏ ଆଉ ସେଇ ପ୍ୟାଟ୍ରିସିଆ ନୁହନ୍ତି । ସେ ବହୁତ ବଦଳି ଯାଇଛନ୍ତି । ନିଜ ତରଫରୁ ଚେଷ୍ଟା କରି କେବଳ ମୋ ସାଙ୍ଗରେ କି ମୋ ଭାଇ ସାଙ୍ଗରେ ସେ ଭଲ ସମ୍ପର୍କ ରଖି ନାହାନ୍ତି, ମୋ ମା'ଙ୍କ ସାଙ୍ଗରେ ବି ସମ୍ପର୍କ କିଛିଟା ସହଜ କରିପାରିଛନ୍ତି । ହେଲେ ... ହେଲେ କେମିତି ମୁଁ ଭୁଲିଯିବି ଯେ ପ୍ୟାଟ୍ରିସିଆ ଷ୍ଟୋଲ୍ ମାଇଁ ଫାଦର୍ !'

ଗେଷ୍ଟ ହାଉସ୍ ହେଇ ଯାଇଥିଲା । ଗାଡି ଅଟକାଇଲା କ୍ଲାରା । ଆଖି ଛଳଛଳ କରୁଛି । ଆଖି ଥରେ ପୋଛି ନେଇ ସେ କହିଲା, 'ମୁଁ ବହୁତ ଚେଷ୍ଟା କରେ ସହଜ ହେବା ପାଇଁ । ପିଲାଙ୍କୁ ନିୟମିତ ଭାବରେ ଛାଡିଦିଏ ତାଙ୍କ ପାଖରେ ରହିବାକୁ । ସାତ ଦଶ ଦିନରେ ଥରେ ତାଙ୍କ ସାଙ୍ଗରେ ଡିନାର୍ ଖାଏ । ହେଲେ ଜାଣିନି କାହିଁକି ନମିତା, ମୋ ଭିତରେ ଏବେ ବି ଚାପି ହେଇ ରହିଛି କଷ୍ଟ ଆଉ ଅଭିମାନ । ରାଗ ବି । ମୁଁ କିଛି ଭୁଲି ପାରୁନି ।'

'ତାଙ୍କୁ କ୍ଷମା କରି ଦିଅ, କ୍ଲାରା । ନହେଲେ ଏଇମିତି ଖାଲି କଷ୍ଟ ପାଇବ ।' କ୍ଲାରା ହାତରେ ସାମାନ୍ୟ ଚାପ ଦେଇ ନମିତା କହିଲା ।

'ମୁଁ ଜାଣେ । ହେଲେ କ୍ଷମା ଯେ କରି ପାରୁନି । ... ଏତେ ବର୍ଷ ପରେ ଯେ ମୁଁ ପ୍ୟାଟ୍ରିସିଆଙ୍କୁ ସହି ପାରୁଛି, ଏବେ ସେତିକି ଯଥେଷ୍ଟ । କିନ୍ତୁ ତାଙ୍କୁ ମା' ବୋଲି ଡାକି ମୁଁ କେବେହେଲେ ମୋ ନିଜ ମା'ଙ୍କୁ ଅପମାନିତ କରି ପାରିବି ନାହିଁ । ମୋ ପାଇଁ ସେ କେବଳ ପ୍ୟାଟ୍ରିସିଆ । ମୋ ବାପାଙ୍କ ସ୍ତ୍ରୀ ।'



## ସୁସ୍ମିତା ବାଗ୍‌ଚୀଙ୍କର ଅନ୍ୟାନ୍ୟ ପୁସ୍ତକ –

### ଉପନ୍ୟାସ

୧. ପ୍ରବାସର ପକ୍ଷୀ
୨. ସ୍ରୋତପର୍ଣ୍ଣା
୩. ସ୍ୱପ୍ନ ନୀହାରିକା
୪. ଦେବଶିଶୁ
୫. ପ୍ରାଚୀ ପ୍ରତୀଚୀ
୬. ସାତତାଳ ପାଣି
୭. ଏକା ପଥ, ଏକା ପଥିକ
୮. ଆସ, ଫେରିଯିବା

### କ୍ଷୁଦ୍ରଗଳ୍ପ ସଂକଳନ

୧. ଆକାଶ ଯେଉଁଠି କଥା କହେ
୨. ଛାଇ ସେପାଖ ମଣିଷ
୩. ନୈବେଦ୍ୟ
୪. ବସୁଧାର ପ୍ରଶ୍ନ
୫. ଭିନ୍ନ କୂଳ ଅନ୍ୟ ଢେଉ
୬. ନୀଳ ଆକାଶ ଧଳା ମେଘ
୭. ବିମଳା ଦର୍ଶନ

### ଭ୍ରମଣ କାହାଣୀ

୧. ମୋ ଝର୍କାରୁ ପୃଥିବୀ



୧୯୮୦ ମସିହାରୁ ସାହିତ୍ୟ ସାଧନା କରି ଆସୁଛନ୍ତି। ଏହି ପୁସ୍ତକ ସମେତ ଏହା ଭିତରେ ତାଙ୍କର ଆଠଟି ଉପନ୍ୟାସ, ସାତଟି କ୍ଷୁଦ୍ରଗଳ୍ପ ସଙ୍କଳନ ଏବଂ ଗୋଟିଏ ଭ୍ରମଣ କାହାଣୀ ପ୍ରକାଶ ପାଇଛି। ତାଙ୍କର କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ଇଂରାଜୀ, ହିନ୍ଦୀ, କନ୍ନଡ଼, ମାଲାୟଲମ୍, ତେଲୁଗୁ ଓ ମରାଠୀ ଭାଷାରେ ଅନୁବାଦିତ ହୋଇ ଆଦୃତ ହୋଇଛି।

ସୁସ୍ମିତାଙ୍କର ଜନ୍ମ ୧୯୬୦ ମସିହାରେ। ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ପାସ୍ କରିବା ପରେ ସେ ସେହିଠାରେ ଅଧ୍ୟାପିକା ଭାବରେ କର୍ମ ଜୀବନ ଆରମ୍ଭ କରିଥିଲେ ଏବଂ ପରେ ସାହିତ୍ୟ ପତ୍ରିକା 'ସୁରଚିତା'ର ସହଯୋଗୀ ସମ୍ପାଦିକା ରୂପେ ସେ କାମ କରିଥିଲେ।

ନିଜର ସାହିତ୍ୟକୃତି ପାଇଁ ସୁସ୍ମିତା ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର, ଉତ୍କଳ ସମ୍ମାନ, ବିଷୁବ ପୁରସ୍କାର, ଗଙ୍ଗାଧର ରଥ ଫାଉଣ୍ଡେସନ୍ ସମ୍ମାନ ପାଇବା ସଙ୍ଗେ ସଙ୍ଗେ ବହୁ ସାହିତ୍ୟିକ ଅନୁଷ୍ଠାନ ଦ୍ୱାରା ବିଭିନ୍ନ ସମୟରେ ସମ୍ମାନିତା ହୋଇଛନ୍ତି।

ସୁସ୍ମିତା ତାଙ୍କ ସ୍ୱାମୀ ସୁବ୍ରତଙ୍କ ସହିତ ବାଙ୍ଗାଲୋରରେ ରୁହନ୍ତି। ସେମାନଙ୍କର ଦୁଇ କନ୍ୟା- ନେହା ଓ ନୀତି।

ଫୋନ୍ - ୦୯୮୮୦୦ ୩୩୩୨୨
ଇ-ମେଲ୍ - susmitabagchi@hotmail.com

